# 'ମୁଁ କୁନ୍ତୀ କହୁଛି'
# MU KUNTI KAHUCHHI


| | |
|---|---|
| ଲେଖକ:- | *Writer :-* |
| ଶ୍ରୀ କାଶୀନାଥ ନାୟକ | Sri Kasinath Nayak |
| | *At./Po.:-* Gobindapur |
| | *Via :-* Pipli, Dist Puri . |
| ପ୍ରକାଶକ:- | *Publisher :* |
| ଶ୍ରୀ ଜିତେନ୍ଦ୍ରିୟ ପଟ୍ଟନାୟକ | Sri Jitendriya Pattanayak |
| ପଟ୍ଟନାୟକ ଗାରେଜ୍, କଟକରୋଡ୍ | Pattanayak Garage, Cuttack Rd. |
| ଭୁବନେଶ୍ୱର-୭୫୧୦୦୨ | Bhubaneswar - 751002. |
| ପ୍ରଚ୍ଛଦପଟ ଅଙ୍କନ:- | *Cover Design :-* |
| ମୁଦ୍ରଣ ସହଯୋଗିତା :- | *Printing Assistance :-* |
| ଶ୍ରୀ ଭରତ ଚନ୍ଦ୍ର କାମିଲା | Bharat Ch. Kamila |
| ଶ୍ରୀ ରାମଚନ୍ଦ୍ର ନାୟକ | Ramachandra Nayak |
| ଲେଖା ଆରମ୍ଭ :- | *Beginning :-* |
| ୧୯୮୮ ମସିହା ଡ଼ିସେମ୍ବର | 15. 1. 88 |
| ଲେଖା ଶେଷ :- | *End :-* |
| ୧୯୯୦ ମସିହା ମାର୍ଚ୍ଚ | 20. 6. 90 |
| ମୁଦ୍ରଣ :- | *Printed at :-* |
| ଉଦ୍ୟୋଗ ପ୍ରିଣ୍ଟର୍ସ | **Udyog Printers** |
| ୬୦୦, ସତ୍ୟନଗର , | 600, Satya Nagar, |
| ଭୁବନେଶ୍ୱର-୭୫୧୦୦୭ | BBSR-751007 |
| ଦୂରଭାଷ:- ୫୦୨୦୬୬ (କା) | Ph.: 502066(O) |
| ୪୦୦୭୯୮ (ନି) | 400798 (R) |
| ପ୍ରଥମ ମୁଦ୍ରଣ :- | *1st Edition :-* |
| ୨୦୦୦ ମସିହା - ଜାନୁଆରୀ | -- January, 2000 |
| ମୂଲ୍ୟ:- | *Price :* |
| ୭୦ ଟଙ୍କା ମାତ୍ର | Rs. 70 / - Only |




ମୋର ଅଧିକାଂଶ ଜୀବନକାଳ ଅର୍ଥାତ୍ ଦୀର୍ଘ ୪୫ବର୍ଷ ଛୋଟ ଛୋଟ ପିଲାମାନଙ୍କ ଗହଣରେ ଅତିବାହିତ ହୋଇଛି । ତେଣୁ ମୁଁ କୋମଳ-ମତି ଶିଶୁମାନଙ୍କ ପଠନୋପଯୋଗୀ କେତେଗୁଡ଼ିଏ ଶିଶୁ-ସାହିତ୍ୟ ପୁସ୍ତକ ରଚନା କରିଛି ଓ ସେଥି ମଧ୍ୟରୁ ଅନେକ ପ୍ରକାଶିତ ହୋଇ ପିଲାମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇଛି ।

ଏହି ପୁସ୍ତକଟିର (ମୁଁ କୁନ୍ତୀ କହୁଛି) ପାଣ୍ଡୁଲିପି ୧୯୮୮ ମସିହାରେ ଅର୍ଥାତ୍ ଆଜିକୁ ବାରବର୍ଷ ତଳେ ଲିଖିତ ହୋଇଥିଲେ ମଧ୍ୟ କେତେକ ଅସୁବିଧା ଯୋଗୁ ତାହା ମୁଦ୍ରିତ ହୋଇ ପାରିନଥିଲା । ପୁସ୍ତକଟି କେବଳ ବୟସ୍କ ବ୍ୟକ୍ତିମାନଙ୍କ ପାଇଁ ଉଦ୍ଦିଷ୍ଟ ଅଟେ ।

ଏକଥା ନିତାନ୍ତ ସତ୍ୟଯେ, ମଣିଷ ଇଚ୍ଛାର କିଛି ମୂଲ୍ୟନଥାଏ । ଯେତେବେଳେ ମା' ଜଗଜ୍ଜନନୀ ମଣିଷର ଇଚ୍ଛାକୁ ସ୍ୱୀକୃତି ଦିଅନ୍ତି ସେତିକିବେଳେ ତାହା ଅପ୍ରତ୍ୟାଶିତ ଭାବରେ ସମାହିତ ହୋଇଥାଏ ।

ପରିଣତ ବୟସ ଅର୍ଥାତ୍ ବୟାଅଶୀ ବର୍ଷରେ ମୋତେ ମା'ଙ୍କର ସ୍ୱୀକୃତି ମିଳିଲା । ବିଳମ୍ବ ହେଲେ ମଧ୍ୟ ମୁଁ ଅତ୍ୟନ୍ତ ଖୁସି । ସେଥିପାଇଁ ସେଇ ସର୍ବଶକ୍ତିମୟୀଙ୍କ ପବିତ୍ର ଚରଣରେ ଭକ୍ତିପୂତ ପ୍ରଣତି ନିବେଦନ କରୁଛି ।

ପୁସ୍ତକଟିର ନିନ୍ଦା ବା ପ୍ରଶଂସା ଉଭୟ ମୋ ପକ୍ଷରେ ସମାନ ଭାବରେ ଆଦରଣୀୟ ।

ବିନୀତ
**କାଶୀନାଥ ନାୟକ**




ଅଧ୍ୟାପକ ଶ୍ରୀଯୁକ୍ତ ରାମଚନ୍ଦ୍ର ତ୍ରିପାଠୀଙ୍କ ସହିତ ମୋର ଆଦୌ ପରିଚୟ ନାହିଁ । କିମ୍ବା ସେ ମହାଶୟଙ୍କ ସହିତ ସାକ୍ଷାତ ଆଲୋଚନାର ସୁଯୋଗ ମଧ୍ୟ ନାହିଁ । କିନ୍ତୁ ତାଙ୍କ ରଚିତ କେତୋଟି ଅତ୍ୟନ୍ତ ଉପାଦେୟ ପ୍ରବନ୍ଧ ପାଠକରି ମୁଁ ଏ ପୁସ୍ତକଟି ରଚନା କରିବାରେ ଯଥେଷ୍ଟ ପ୍ରେରଣା ଓ ସାହାଯ୍ୟ ଲାଭ କରିଥିବାରୁ ସର୍ବ ପ୍ରଥମେ ତାଙ୍କ ନିକଟରେ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ଅଧ୍ୟାପକ ମହୋଦୟ କୁନ୍ତୀଙ୍କୁ ଯେଉଁ ଦୃଷ୍ଟିରେ ଦେଖିଛନ୍ତି ମୁଁ ତାଙ୍କୁ (କୁନ୍ତୀଙ୍କୁ) ଭିନ୍ନ ଦୃଷ୍ଟିରେ ଦେଖି ଥିବାରୁ କ୍ଷମା ଚାହେଁ ।

ଦ୍ୱିତୀୟରେ ଭୁବନେଶ୍ୱରସ୍ଥ ପରିବାର ନିୟୋଜନ ପ୍ରତିଷ୍ଠାନର ଅଫସେଟ୍ ୟୁନିଟ୍‌ର ସୁପରିନ୍‌ଟେଣ୍ଡେଣ୍ଟ୍ ଶ୍ରୀଯୁକ୍ତ ଭରତ ଚନ୍ଦ୍ର କାମିଲା ଏହି ପୁସ୍ତକଟିର ମୁଦ୍ରଣ ଦିଗରେ ଅକୃତ୍ରିମ ଆନ୍ତରିକତା ତଥା ଉତ୍ସାହ ପ୍ରଦାନ କରିଥିବାରୁ ତାଙ୍କ ନିକଟରେ ସବୁଦିନ ପାଇଁ ମୁଁ କୃତଜ୍ଞ ରହିବି ।

ମୋର ଭ୍ରାତୃଷ୍ପୁତ୍ର ଶ୍ରୀମାନ ରାମଚନ୍ଦ୍ର ନାୟକ ପୁସ୍ତକଟିର ମୁଦ୍ରଣ ସଂପର୍କୀୟ ଯାବତୀୟ ଦାୟିତ୍ୱ ଗ୍ରହଣ କରିଥିବାରୁ କୃତଜ୍ଞତା ନୁହେଁ, ମା' କରୁଣାମୟୀଙ୍କ ନିକଟରେ ତାଙ୍କର ଉନ୍ନତି କାମନା କରୁଅଛି ।

ଶେଷରେ ମୋର ସାନଭାଇ ଶ୍ରୀମାନ୍ ଦୁର୍ଗାଚରଣ ନାୟକ ଅବସର ପ୍ରାପ୍ତ ଡେ଼ପୁଟି ସେକ୍ରେଟାରୀ (ସ୍ୱାସ୍ଥ୍ୟ ବିଭାଗ).... ମୋର ଏହି ପୁସ୍ତକର ପାଣ୍ଡୁଲିପିଟି ଆମୂଳାନ୍ତ ପାଠକରି ଗଭୀର ସନ୍ତୋଷ ପ୍ରକାଶ କରିବା ସହିତ ଏହାକୁ ଶୀଘ୍ର ପ୍ରକାଶ କରିବା ପାଇଁ ଆଶାତୀତ ଉତ୍ସାହ ପ୍ରଦାନ କରିଥିବାରୁ ତାଙ୍କ ପ୍ରତି ମା' କରୁଣାମୟୀଙ୍କ କୃପାଦୃଷ୍ଟି ପ୍ରାର୍ଥନା କରୁଛି ।

ବିନୀତ
**କାଶୀନାଥ ନାୟକ**

ଶୁଣନ୍ତୁ,- ମୁଁ କୁନ୍ତୀ କହୁଛି । ମୋ ନାଁ କୁନ୍ତୀ ସତ, କିନ୍ତୁ ଏବେ ଆଉ ମୁଁ ସେ ରକ୍ତ ମାଂସ ଦେହଧାରୀ କୁନ୍ତୀ ନୁହେଁ-କେବଳ କୁନ୍ତୀର ଅତୃପ୍ତ ଆତ୍ମାମାତ୍ର । ଘଟଣା ବହୁଳ ମୋ ଜୀବନର ବ୍ୟଥାତୁର ଅଶ୍ଳୁଳ କାହାଣୀକୁ ବଞ୍ଚିଥିବା ଭିତରେ ପ୍ରକାଶ କରି ପାରିଲି ନାହିଁ । ମନକଥା ମନ ଭିତରେ କବର ଦେଇ ଆଜି ମୃତ୍ୟୁପରେ ମଧ୍ୟ ଯନ୍ତ୍ରଣା ଜର୍ଜରିତ ହୋଇ ପାଗଳୀଙ୍କ ପରି ଘୂରି ବୁଲୁଛି । ନିତିପ୍ରତି ତୀବ୍ର ଅନ୍ତର୍ଦାହ ମୋତେ ଅସ୍ଥିର କରିବାରେ ଲାଗିଛି । ଭାବିଲି ମୋ ଜୀବନର ଗୋପନ କାହାଣୀ ଆପଣମାନଙ୍କୁ ଜଣାଇ ଦେଲେ ହୁଏତ କିଛିଟା ଶାନ୍ତି ପାଇ ପାରିବି । ସେଇ ଆଶାରେ ମୁଁ ମର୍ତ୍ତ୍ୟକୁ ଓହ୍ଲାଇ ଆସିଛି । ଦୟାକରି ଏ ହତାଭାଗିନୀର କରୁଣ କାହାଣୀ ଟିକେ ମନ ଦେଇ ଶୁଣନ୍ତୁ ।

ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ମୋର ଜନ୍ମ ହୋଇଥିଲା । ମରିବା ମଧ୍ୟ ସେହିପରି ଅନେକ ଦିନ ହୋଇଗଲାଣି । ଧାରଣା ଥିଲା, ମୃତ୍ୟୁପରେ ମଣିଷର ପାର୍ଥିବ ଶରୀର ସହିତ କ୍ରୋଧ, ଈର୍ଷା, ଦୁଃଖ, ଯନ୍ତ୍ରଣା ଓ ମନସ୍ତାପଆଦିର ପରିସମାପ୍ତି ଘଟେ । ସବୁକିଛି ଗଦାଏ ପାଉଁଶ ଭିତରେ ଅସ୍ତିତ୍ୱହୀନ ହୋଇ ରହିଯାଏ । ମାତ୍ର ମୋ ପକ୍ଷରେ ଏ ସତ୍ୟର ବ୍ୟତିକ୍ରମ ହୋଇଛି । ହଜାର ହଜାର ବର୍ଷତଳୁ ଶରୀର ଭସ୍ମ ହୋଇ ଯାଇଥିଲେ ମଧ୍ୟ ମୋ ଆତ୍ମା ଚିର-ଅଶାନ୍ତ ରହି ଛଟପଟ ହେବାରେ ଲାଗିଛି । ବଞ୍ଚିଥିବା ସମୟରେ ଯେଉଁ କଥା ମାନ ପ୍ରକାଶ କରି ଦେବାର ସତ୍-ସାହସ ମୋର ନଥିଲା, ମୃତ୍ୟୁ ପରେ ସେ ସବୁକୁ ଆପଣମାନଙ୍କୁ ଜଣାଇ ଦେବାରେ ମୋର ସାମାନ୍ୟତମ ଦ୍ୱିଧା ମଧ୍ୟ ନାହିଁ । ଆଗରୁ ଅର୍ଥାତ୍ ଜୀବନ-କାଳ ମଧ୍ୟରେ ଏତିକି କଥା କହି ପାରିଥିଲେ ହୁଏତ ମୁଁ କିଛି ଶାନ୍ତି; କିଛି ସାନ୍ତ୍ୱନା ପାଇ ପାରିଥାନ୍ତି । କିନ୍ତୁ ହାୟ, ଶତଚେଷ୍ଟା ସତ୍ତ୍ୱେ ବି ମୋର ସେ ସତ୍ ସାହସ ହେଲା ନାହିଁ । ବାରମ୍ବାର ବିବେକ ମୋର କଣ୍ଠରୋଧ କଲା । ମୁଁ ସମ୍ପୂର୍ଣ୍ଣ ବିବଶ ହୋଇ ସାରା ଜୀବନ ପଶ୍ଚାତ୍ତାପ ଅନଳରେ ଦଗ୍ଧ ହେବାରେ ଲାଗିଲି । ଏପରିକି ମୃତ୍ୟୁପରେ ମଧ୍ୟ ଅଶାନ୍ତି ମୋର ପିଛା ଛାଡ଼ିଲା ନାହିଁ । ନିଜ କୃତକର୍ମ ପାଇଁ ମୁଁ ଅନ୍ୟ କାହାକୁ ଦୋଷ ଦେବିବା କାହିଁକି ? କଥାରେ ତ ଅଛି- ''ଯାହା ଆପଣା କିଆଁ, ସେଥିପାଇଁ ଇଲାଜ କିଆଁ ।'' ହାୟ, ମୁଁ ଚାଣ୍ଡାଳୁଣୀ ନିଜ ହାତରେ ହିଁ ମୋର ସୁନେଲି ସୁଖମୟ ଭବିଷ୍ୟତ ଉପରେ କାଳିମା ଲେପନ କରି ପକାଇଛି । ମୋ ଜୀବନର ବ୍ୟଥାତୁର କରୁଣ କାହାଣୀ ଶୁଣିଲେ ପଥର ମଧ୍ୟ ତରଳି ଯିବ ।

ମୁଁ ଯେକୌଣସି ସାଧାରଣ ନାରୀ ସହିତ ଆଦୌ ତୁଳନୀୟ ନୁହେ । କାରଣ ମୋର ବୈଶିଷ୍ଟ୍ୟ ଅଛି, ସମ୍ମାନ ଅଛି ଏବଂ ଏକ ରୁଦ୍ଧିମନ୍ତ ପରମ୍ପରା ମଧ ଅଛି । ମୁଁ ଏକାଧାରରେ ରାଜ-ନନ୍ଦିନୀ, ରାଜ-ମହିଷୀ, ରାଜମାତା ଓ ପୃଥିବୀର ସର୍ବଶ୍ରେଷ୍ଠ ବୀରମାନଙ୍କ ଜନନୀ ରୂପେ ସମ୍ମାନିତା । ଯେଉଁ ନାରୀ ଏପରି ବିପୁଳ ସୌଭାଗ୍ୟର ଅଧିକାରିଣୀ ତା'ର ଆଉ କେଉଁ କଥାରେ ଅଭାବ ରହିଗଲା ? ତେବେ ଅମାପ ସୌଭାଗ୍ୟର ଅଧିକାରିଣୀ ହୋଇ ମୁଁ ଚିର-ହା-ହୁତାଶ ଓ ତୀବ୍ର ମର୍ମ-ଦାହରେ ସାରାଜୀବନ କଟାଇଲି କାହିଁକି ? ରାଜ ଉଆସର ବିଭବ-ସମ୍ଭାର, ପତି-ପ୍ରେମ, ପୁତ୍ରସ୍ନେହ, ପ୍ରଜାପାଟକଙ୍କ ବିପୁଳ ସମ୍ମାନ ମୋତେ ଦିନକ ପାଇଁ ମଧ ଶାନ୍ତି ଦେଇ ପାରିଲା ନାହିଁ । ମନ ଭିତରେ ଗୋପନ ରଖିଥିବା ଏକ ଗୁରୁତର ପାପର ଛାୟା ମୋତେ ଏପରି ଆବୃତ୍ତ କରି ରଖିଥିଲା ଯେ ଯାହାର ପରିଣତି ସ୍ୱରୂପ ମୁଁ ଅନ୍ଧ ହୋଇ ଯାଇଥିଲି । ଦୁଃଖକୁ ଦୁଃଖ ଓ ସୁଖକୁ ମଧ ଦୁଃଖ ବୋଲି ବିଚାରିବାକୁ ବାଧ୍ୟ ହେଉଥିଲି । ତେଣୁ ଦୁଃଖ ଓ ମର୍ମଦାହ ମୋର ଚିର ସହଚର ହୋଇ ରହିଗଲେ । ଗୋଟିଏ କଥାରେ କହିଲେ- ମୁଁ ଦୁଃଖ, ଆତ୍ମଗ୍ଲାନି, ପଶ୍ଚାତ୍ତାପ, ଲଜ୍ଜା ଓ ମାନସିକ ଅସନ୍ତୁଳନର ଫେଣ୍ଟାଫେଣ୍ଟି ଏକ ଅଜବ ନାରୀ-ଚରିତ୍ର ଥିଲି । ସମଗ୍ର ଜୀବନଟା ମୋର ଏକ ଘଟଣା ବହୁଳ ରୋମାଞ୍ଚକର ଇତିହାସ ହୋଇ ରହିଗଲା ।

ମୋ ଜୀବନର କେତେକ ମର୍ମାନ୍ତିକ ଅଶ୍ଳୀଳ କାହାଣୀ ଜୀବନକାଳ ମଧରେ ମୋତେ ଯନ୍ତ୍ରଣା ଜର୍ଜରିତ କରି ମୋର ନାରୀ ସତ୍ତାକୁ ଧିକ୍କାର କରିଛି ପୁଣି ମୃତ୍ୟୁପରେ ମଧ ମୋ ଆତ୍ମାକୁ ତିଳ ତିଳ କରି ଦଗ୍ଧ କରିବାରେ ଲାଗିଛି । ମୁଁ ମୋ ପାଇଁ ନିଜ ହାତରେ କବର ଖୋଳି ତାରି ଭିତରେ ଜୀବନ୍ତ ସମାଧି ନେଇଥିଲି ।

ଆଦର୍ଶ ନାରୀତ୍ୱହିଁ ଜଣେ ସ୍ତ୍ରୀର ସର୍ବଶ୍ରେଷ୍ଠ ସମ୍ପଦ । ଏହି ଅମୂଲ୍ୟ ନିଧିଟିହିଁ ନାରୀର ଗର୍ବ ଓ ଗୌରବର ଜ୍ୱଳନ୍ତ ପ୍ରତୀକ । ଯେଉଁନାରୀ ତା'ର ସେଇ ଅମୂଲ୍ୟ ବିଭବକୁ କ୍ରୀଡ଼ନକ ବୋଲି ବିଚାର କରିଛି, ସେ ସଂସାରର ସମସ୍ତ ସୁଖ, ସୌଭାଗ୍ୟ, ବିଳାସ ଏପରିକି ସ୍ୱର୍ଗର ବିଭୂତି ପ୍ରାପ୍ତିପରେ ମଧ ଆଦୌ ଶାନ୍ତିଲାଭ କରିପାରିନାହିଁ । ଯେଉଁମାନେ ନାରୀତ୍ୱକୁ ଅବମାନନା କରିଛନ୍ତି, ତା'ର ସୁରକ୍ଷା ପାଇଁ ସଜାଗ ନରହି ସାମୟିକ ଆନନ୍ଦ ପାଇଁ ଆତ୍ମ-ବିସ୍ମୃତ ହୋଇଛନ୍ତି, କେବଳ ପଶ୍ଚାତ୍ତାପ ଅନଳରେ ନିରନ୍ତର ଦଗ୍ଧ ହେବା ସେମାନଙ୍କର ଭାଗ୍ୟଲିପି ହୋଇଥାଏ । ଯାହାକି ମୋ ଜୀବନରେ ଅତି ନିଷ୍ଠୁର ଭାବରେ ପ୍ରମାଣିତ ହୋଇଛି ।

କୌତୂହଳ ବଶତଃ ହେଉ କିମ୍ବା ଉଦ୍ଦାମ ଯୌବନର ଆବେଗରୁ ହେଉ ଅଥବା ଅନ୍ୟ ଯେ କୌଣସି କାରଣରୁ ହେଉନା କାହିଁକି ମୁଁ ମୋର ସର୍ବଶ୍ରେଷ୍ଠ ସମ୍ପଦ ନାରୀତ୍ୱର ଅବମାନନା କରିଛି । କେବଳ ସେହି କାରଣରୁ ସଂସାରର ଯାବତୀୟ ସୁଖ ସୌଭାଗ୍ୟ ମୋ ପାଇଁ ଅଭିଶାପରେ ପରିଣତ ହୋଇ ଯାଇଛି । ଏ ପାପର ପ୍ରାୟଶ୍ଚିତ ବା ପ୍ରତିକାରର ଉପାୟ ନଥିଲା । ତେଣୁ ନୀରବରେ ଅଶ୍ରୁମୁଞ୍ଚନ ବ୍ୟତୀତ ମୋର ଅନ୍ୟକିଛି ପନ୍ଥା ନଥିଲା ।

ବଞ୍ଚିଥିବା ସମୟରେ ମୁଁ ଅନେକ ଛଳନା କରିଛି । ସମସ୍ତେ ଜାଣିବା ପାଇଁ ମୁଁ ନିଜକୁ ସୁଖୀ ଓ ସୌଭାଗ୍ୟବତୀ ବୋଲି ଦେଖାଇ ହୋଇଛି । ମାତ୍ର ସେଥିରେ ବାସ୍ତବତାର ସ୍ପର୍ଶ ନଥାଏ, ଥାଏ ନିଚ୍ଛକ ଛଳନାର ବହଳିଆ ବନକ । ଭିତରକୁ ଗୋଟାଏ ଏବଂ ବାହାରକୁ ଆଉ ଗୋଟାଏ ଚରିତ୍ରର ଅଭିନୟ କରିକରି ମୁଁ ଥକି ଯାଇଛି ।

ଅନେକ କଥା କହି ସାରିଲିଣି । ମାତ୍ର ମୋର ପ୍ରକୃତ ପରିଚୟ ଏଯାଏ ଆପଣମାନଙ୍କୁ ଜଣାଇ ପାରିନାହିଁ । ଆଉ ଅଧିକ ସମୟ ସଂଶୟର ଘେର ଭିତରେ ନରଖି ମୁଁ ମୋର ଆତ୍ମ-ପରିଚୟ ପ୍ରଦାନ କରୁଛି ।

ମୁଁ ମଥୁରାର ବିଖ୍ୟାତ ବୃଷ୍ଣିବଂଶର କନ୍ୟା । ମୋ ପିତାଙ୍କ ନାମ ସୁରସେନ । ପ୍ରବାଦ ପୁରୁଷ ଶ୍ରୀକୃଷ୍ଣ ମୋ ସାନଭାଇ ବସୁଦେବର ପୁତ୍ର ଓ ମୋର ପୁତୁରା ଅଟେ। ମହାରାଜ ଯଯାତି ଆମର ପୂର୍ବ-ପୁରୁଷ । ଶର୍ମିଷ୍ଠା ଓ ଦେବଯାନୀ ଦୁହେଁ ଯଯାତୀଙ୍କ ପତ୍ନୀ । ଦେବଯାନୀଙ୍କ ପୁତ୍ର ଯଦୁ ଆମ ଯଦୁବଂଶର ପ୍ରତିଷ୍ଠାତା । ଏହି କାରଣରୁ ଦେବଯାନୀହିଁ ଯଦୁବଂଶର ଅଗ୍ରପୂଜ୍ୟା ମହାମାତା ଅଟନ୍ତି । ଯଯାତୀଙ୍କ ଦ୍ୱିତୀୟା ରାଣୀ ଶର୍ମିଷ୍ଠାଙ୍କ ଅମିତ ପରାକ୍ରମଶାଳୀ ପୁତ୍ର ପୁରୁ । ସେ ପୁରୁ ବଂଶର ପ୍ରତିଷ୍ଠାତା ରୂପେ ଖ୍ୟାତିଲାଭ କରି ଥିଲେ । ଯଦୁବଂଶୀୟମାନେ ମଥୁରାରେ ଓ ପୁରୁବଂଶୀୟମାନେ ହସ୍ତିନାରେ ରାଜତ୍ୱ କରୁଥିଲେ ।

ମୁଁ ମଥୁରା ରାଜବଂଶ ସମ୍ଭୁତା । ସେତେବେଳେ ମୋର ନାମ ଥିଲା ପୃଥା । ବୃଷ୍ଣିବଂଶରେ ଜନ୍ମଲାଭ କରିଥିବାରୁ ମୋତେ 'ବାର୍ଷ୍ଣେୟୀ' ମଧ କୁହାଯାଉଥିଲା ।

ସେ କାଳରେ ବିନ୍ଧ୍ୟାଚଳ ପାଦ ଦେଶରେ ଅରଣ୍ୟଶ୍ରୀ ବିମଣ୍ଡିତ କୁନ୍ତଳ-ରାଜ୍ୟ ଅବସ୍ଥିତ ଥିଲା । ରାଜାଥିଲେ କୁନ୍ତୀଭୋଜ । ସେ ମୋ ପିତା ସୁରସେନଙ୍କର ପିଉସୀ-ପୁଅ ଭାଇ । ଦୀର୍ଘ ଦିନ ଧରି କୁନ୍ତୀଭୋଜଙ୍କର କୌଣସି ସନ୍ତାନ-ସନ୍ତତି

ନହେବାରୁ ରାଜା ଓ ରାଣୀ ନୈରାଶ୍ୟ, ହତାଶା ଓ ଦୁଃଖରେ ଏକାନ୍ତ ମ୍ରିୟମାଣ ହୋଇ ପଡ଼ିଲେ । ସବୁଥାଇ କିଛି ନଥିବାର ଅନୁଭବ ତାଙ୍କୁ ବିବ୍ରତ କରି ପକାଇଲା ।

ପୁତ୍ର ନହେଲା ନାହିଁ, କନ୍ୟାଟିଏ ଥିଲେ ମଧ ରାଜାରାଣୀ ବାତ୍ସଲ୍ୟ ସୁଖ ଅନୁଭବ କରି ଆଶ୍ୱସ୍ତ ହୋଇଥାନ୍ତେ । ମାତ୍ର କ୍ରୂର ବିହି ତାଙ୍କୁ ଏତିକି ସୁବିଧା ଦେବାପାଇଁ ମଧ କାର୍ପଣ୍ୟ କରିଥିଲା ।

ଅବଶେଷରେ ମହାରାଜା କୁନ୍ତୀ-ଭୋଜ ଅନନ୍ୟୋପାୟ ହୋଇ ଦତ୍ତକ ଭାବରେ ଏକ କନ୍ୟା ସନ୍ତାନ ଗ୍ରହଣ କରିବାର ନିଷ୍ପତ୍ତି ନେଇ ମୋର ପିତା ସୁରସେନଙ୍କ ସହିତ ସଂପର୍କ ସ୍ଥାପନ କଲେ ।

ଯେତେ ଆପଣାର ହେଲେ ମଧ ନିଜ ଗର୍ଭଜାତ ସନ୍ତାନକୁ ଅନ୍ୟ ହାତରେ ଟେକି ଦେବା ପାଇଁ କୌଣସି ପିତାମାତା ସହଜରେ ରାଜି ହୋଇନଥାନ୍ତି । ପ୍ରଥମେ କୁନ୍ତୀଭୋଜଙ୍କ ପ୍ରସ୍ତାବରେ ମୋର ମାତା ଏକାନ୍ତ ଅନିଚ୍ଛୁକତା ପ୍ରକାଶ କଲେ । ପରେ ତାଙ୍କର ବାରମ୍ବାର ଅନୁରୋଧ, ଆକୁଳ ମିନତି, ବ୍ୟଥାତୁର ହୃଦୟର କରୁଣ ଅଭିବ୍ୟକ୍ତି ସହିତ ଉଦ୍‌ଗତ ଅଶ୍ରୁଧାରର ଅବାରିତ ଗତି ମୋର ପିତାମାତାଙ୍କ ହୃଦୟକୁ ଦ୍ରବୀଭୂତ କରିଦେଲା । ମୁଁ ଦତ୍ତକ କନ୍ୟାରୂପେ କୁନ୍ତଳ ରାଜ୍ୟକୁ ଆସିଲି ।

କ୍ରମେ କୁନ୍ତଳରେ ମୁଁ ବଡ଼ହେଲି । ମଥୁରା ସହିତ ମୋର ଆଉ କୌଣସି ସଂପର୍କ ରହିଲା ନାହିଁ । କୁନ୍ତଳର ରାଜ-ଜେମା ହୋଇଥିବାରୁ ମୋର ନୂତନ ନାମକରଣ ହେଲା କୁନ୍ତୀ । ରାଜ୍ୟର ନାମ ଅନୁସାରେ ନାମକରଣ ହେବା କଥା ମୋତେ ଅତ୍ୟନ୍ତ ସୁଖକର ବୋଧ ହୋଇଥିଲା ।

ପୃଥାରୁ ମୁଁ କୁନ୍ତୀ ହୋଇଗଲି । ମୋ ଜୀବନର ଗତିପଥ ଧୀରେ ଧୀରେ ପରିବର୍ତ୍ତିତ ହେବାକୁ ଆରମ୍ଭ କଲା । ନିରବଚ୍ଛିନ୍ନ ସୁଖ ବା ଦୁଃଖ କାହା ଭାଗ୍ୟରେ ନଥାଏ । ହସ ଓ ଅଶ୍ରୁର ମିଶ୍ରଣ ହିଁ ଜୀବନର ପ୍ରକୃତ ପରିଚୟ । ମୁଁ ରାଜ ଉଆସର ପ୍ରାଚୁର୍ଯ୍ୟ ମଧ୍ୟରେ ବୁଡିରହି ଦୁଃଖ କ'ଣ ଜାଣି ନଥିଲି । ଭାବିଥିଲି ମୋ ଜୀବନଟା ଏହିପରି ଆମୋଦ ପ୍ରମୋଦ ଓ ହର୍ଷ ଉଲ୍ଲାସରେ କଟିଯିବ । ଏଇ ସୁନେଲି ସ୍ୱପ୍ନରେ ମୁଁ ଆତ୍ମହରା ହୋଇ ପଡ଼ିଥିବା ବେଳେ ବିଧି ମୋ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଚାଲିଥାଏ । ଏକଥା ମୁଁ ବା ଜାଣନ୍ତି କିପରି ?

ବାଲ୍ୟ ଓ କୈଶୋର ଅତିକ୍ରମ କରି ମୁଁ ଯୌବନରେ ପଦାର୍ପଣ କଲି ।

ହାୟ ଏଇ ନିଉଛୁଣା ଯୌବନହିଁ ମୋର ସବୁ ଆଶା, ସବୁ ସମ୍ଭାବନାକୁ ଦୁଃଖର ଅତଳଗର୍ଭରେ ବୁଡାଇ ଦେଇ ମୋତେ ଅଣନିଃଶ୍ୱାସୀ କରି ପକାଇଲା । ପୋଡା ଯୌବନ ଯୋଗୁ ମୁଁ ଅନେକ ଅଶ୍ରୁ ପୋଛି ପକାଇଛି । ଅନେକ ଅଶ୍ରୁକୁ ପିଇ ଯାଇଛି ମଧ୍ୟ । ଶେଷକୁ ଅଶ୍ରୁ ଭଣ୍ଡାର ନିଃଶେଷ ହୋଇ ଯାଇଥିଲା । ମୋ ଜୀବନର ସେଇ ଅଶ୍ରୁ ସଜଳ କରୁଣ କାହାଣୀ ବର୍ଣ୍ଣନା କରି କିଛି ସାନ୍ତ୍ୱନା, କିଛି ସହାନୁଭୂତି ଆଶାରେ ମୁଁ ଆପଣମାନଙ୍କ ପାଖ୍‌କୁ ଧାଇଁ ଆସିଛି । ହୁଏତ ସବୁକିଛି ପ୍ରକାଶ କରିଦେବା ପରେ ଏ ସନ୍ତପ୍ତ ପ୍ରାଣ କିଛିଂମାତ୍ରାରେ ଆଶ୍ୱସ୍ତ ହୋଇ ପାରିବ । ଯେତେ ଚେଷ୍ଟାକଲେ, ଯେତେ ସାହସ ସଞ୍ଚୟ କଲେ ମଧ ନିଜକୃତ ଅପକର୍ମକୁ ପ୍ରକାଶ କଲାବେଳକୁ କିଏ ଯେପରି ମୋର କଣ୍ଠରୋଧ କରି ପକାଉଛି । ଛାଡ଼ନ୍ତୁ, ମୁଁ ଆଗକୁ ଆଗକୁ କହିଯାଏ । ସାହସ ବଢିଗଲେ ପୁଣି କୁନ୍ତଳ ରାଜ ଅନ୍ତଃପୁରରେ ଘଟିଯାଇଥିବା ମୋ ଜୀବନର ଅଶ୍ରୁଳ କାହାଣୀ ନିଶ୍ଚୟ ବର୍ଣ୍ଣନା କରିବି ।

ଯୁବତୀ ହେବାପରେ ମୋର ବିବାହ ହେଲା, ହସ୍ତିନା ମହାରାଜ ବିଚିତ୍ରବୀର୍ଯ୍ୟଙ୍କ ପୁତ୍ର ପଣ୍ଡୁଙ୍କ ସହିତ । ମୁଁ ହସ୍ତିନାର ପାଟ-ମହିଷୀ ରୂପରେ ସମ୍ମାନିତା ହେଲି । ସୁଖ-ସୌଭାଗ୍ୟର ଅଭାବ ନଥିଲା । ଶ୍ୱଶୁର ବିଚିତ୍ରବୀର୍ଯ୍ୟ ଅତ୍ୟନ୍ତ ଉଦାର ପ୍ରକୃତିର ଥିଲେ । ବିଚିତ୍ରବୀର୍ଯ୍ୟଙ୍କୁ ଶ୍ୱଶୁର ବୋଲି କହିବା ପରେ ମୁଁ ଆପଣଙ୍କୁ ସତ କଥା ଲୁଚାଇଲା ପରି ମନେ ହେଉଛି । ପ୍ରକୃତରେ ମୋ ଶ୍ୱଶୁର ବିଚିତ୍ରବୀର୍ଯ୍ୟ ନୁହନ୍ତି । ବ୍ୟାସ ଦେବ ହିଁ ମୋ ସ୍ୱାମୀଙ୍କର ଜନ୍ମଦାତା ପିତା । ଏକଥାରେ ଆପଣମାନେ ସନ୍ଦେହାଚ୍ଛନ୍ନ ହୋଇ ପଡ଼ିବା ସ୍ୱାଭାବିକ । ତେଣୁ ପ୍ରଥମେ ଉକ୍ତ ସତ୍ୟକୁ ମୁଁ ଆପଣମାନଙ୍କ ଆଗରେ ପ୍ରକାଶ କରିଦେଉଛି ।

ମହାରାଜା ଶାନ୍ତନୁଙ୍କ ଔରସରେ ରାଣୀ ସତ୍ୟବତୀଙ୍କ ଗର୍ଭରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମରେ ଦୁଇପୁତ୍ର ଭୂମିଷ୍ଠ ହୋଇଥିଲେ । ଶାନ୍ତନୁଙ୍କ ମୃତ୍ୟୁପରେ ଚିତ୍ରାଙ୍ଗଦ ମଧ ଅକାଳମୃତ୍ୟୁ ବରଣ କଲେ । ତେଣୁ କନିଷ୍ଠ ବିଚିତ୍ରବୀର୍ଯ୍ୟ ରାଜ ସିଂହାସନ ଅଳଙ୍କୃତ କଲେ । ଅତ୍ୟନ୍ତ କ୍ଷୋଭ ଓ ପରିତାପର ବିଷୟ ଏହିକି ବିଚିତ୍ର ବୀର୍ଯ୍ୟ ମଧ  ଅପୁତ୍ରିକ ଅବସ୍ଥାରେ ଇହଧାମ ତ୍ୟାଗ କରିବାରୁ ହସ୍ତିନା ରାଜ ସିଂହାସନ ଉତ୍ତରାଧିକାରୀ ଶୂନ୍ୟ ହୋଇ ପଡ଼ିଲା । ବିଚିତ୍ର ବୀର୍ଯ୍ୟଙ୍କ ଦୁଇ ପତ୍ନୀ ଅମ୍ବିକା ଓ ଅମ୍ବାଳିକା ସ୍ୱାମୀ ଶୋକରେ ମୃତପ୍ରାୟ ହୋଇ ପଡ଼ିଥିଲାବେଳେ ହସ୍ତିନା ରାଜବଂଶ ଦାୟାଦ-ଶୂନ୍ୟ ହୋଇ ସଂକଟର ଆବର୍ତ୍ତରେ ଉବୁଟୁବୁ ହେବାକୁ ଲାଗିଲା ।

ରାଜମାତା ସତ୍ୟବତୀଙ୍କ ଦୁଃଖ ଓ ଚିନ୍ତାର ସୀମା ରହିଲା ନାହିଁ । ଏକ ପକ୍ଷରେ ପୁତ୍ର ଶୋକପରି ଦାରୁଣ ଆଘାତ ସାଙ୍ଗକୁ ରାଜବଂଶର ଅପତ୍ୟଶୂନ୍ୟତା ତାଙ୍କ ପ୍ରାଣକୁ ଗଭୀର ଭାବରେ ଆଲୋଡ଼ିତ କଲା । ଦିନ ପରେ ଦିନ ବିତି ଯାଉଥିଲେ ମଧ ସତ୍ୟବତୀ କିଛି କୂଳ କିନାରା ପାଇଲେ ନାହିଁ । କ୍ରମେ ତାଙ୍କ ଧୈର୍ଯ୍ୟର ବନ୍ଧ ଟଳମଳ ହେବାକୁ ଲାଗିଲା । ସେ ଆଉ ଥୟଧରି ରହି ପାରିଲେ ନାହିଁ । ବହୁ ଚିନ୍ତା ପରେ ଦୁଇ ପୁତ୍ରବଧୂଙ୍କୁ ଡାକି କହିଲେ,- ''ଏହି ପ୍ରାଚୀନ ହସ୍ତିନା ରାଜବଂଶ ଆଜି ଘୋର ସଂକଟର ସମ୍ମୁଖୀନ । ବଂଶରକ୍ଷାହିଁ ବର୍ତ୍ତମାନ ସବୁଠାରୁ ମୁଖ୍ୟ ପ୍ରଶ୍ନ ରୂପେ ମୋ ସମ୍ମୁଖରେ ଉପସ୍ଥିତ । ଏଣୁ ମୋ ପରାମର୍ଶ ଗ୍ରହଣ କରି ତୁମେ ଦୁହେଁ ନିଯୋଗ ପ୍ରକ୍ରିୟାରେ ସନ୍ତାନବତୀ ହୋଇ ଏ ମହାନ୍ ରାଜବଂଶକୁ ରକ୍ଷାକର ।''

ନିଯୋଗ କଥା ଶୁଣୁ ଶୁଣୁ ଦୁଇରାଣୀଙ୍କ ହୃତ୍‌କମ୍ପ ଆରମ୍ଭ ହୋଇଗଲା । ବୈଧବ୍ୟ ଯନ୍ତ୍ରଣା- ଜର୍ଜରିତ ନାରୀ ପରପୁରୁଷକୁ ଦେହଦାନ କରି ସନ୍ତାନବତୀ ହେବା ପୂର୍ବରୁ ମୃତ୍ୟୁକୁ ଆଲିଙ୍ଗନ କରିବା ଶ୍ରେୟସ୍କର ମନେକରି ଏ ହୀନ ପ୍ରଥା ଗ୍ରହଣ କରିବାକୁ ଉଭୟ ରାଣୀ ଦୃଢ଼ ବିରୋଧ କଲେ ।

ସେ କାଳରେ କୁଳରକ୍ଷା ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼ିଲେ ଦତ୍ତକ ପୁତ୍ର ଗ୍ରହଣ ଓ ସ୍ଥଳ ବିଶେଷରେ ନିଯୋଗ-ପ୍ରକ୍ରିୟା ଗ୍ରହଣ କରିବାକୁ ଅନେକେ ବାଧ୍ୟ ହେଉଥିଲେ । ପରପୁରୁଷ ସହିତ ମିଳିତ ହୋଇ ସନ୍ତାନ ଉତ୍ପାଦନକୁ ନିଯୋଗ କୁହାଯାଏ । ଏହା ଶାସ୍ତ୍ର ସମ୍ମତ ମଧ ଥିଲା । ଏଥିପାଇଁ ଧର୍ମାତ୍ମା, ପଣ୍ଡିତ, ସାଧୁ, ବେଦଜ୍ଞ ବ୍ରାହ୍ମଣ ବା କୌଣସି ସଜ୍ଜନଙ୍କୁ ଆମନ୍ତ୍ରଣ କରି ନାରୀ ତାଙ୍କୁ ଦେହ-ଦାନ କରିଥାଏ । ଅତ୍ୟନ୍ତ ବାଧ୍ୟ ବାଧକତାରେ ଏହା କାର୍ଯ୍ୟକାରୀ ହେଉଥିଲେ ମଧ୍ୟ ନିଯୋଗ-ସିକ୍ତ ନାରୀ ଏଥିରେ ଗଭୀର ମର୍ମାହତ ହେଉଥିଲେ। ନିଯୋଗ ପ୍ରଥାରେ କୁଳରକ୍ଷାକୁ ଅଗ୍ରାଧିକାର ଦେଇ ନାରୀର ସତୀତ୍ୱ ଓ ଆତ୍ମ ମର୍ଯ୍ୟାଦାକୁ ଗୌଣକରି ଦିଆଯାଉଥିଲା ।

ଦୁଇ ପୁତ୍ରବଧୂଙ୍କ ଦୀର୍ଘ ନୀରବତା ଓ ବିମର୍ଷ ଭାବ ଲକ୍ଷ୍ୟ କରି ସତ୍ୟବତୀ କହିଲେ, - ''ଯେ କୌଣସି ଉପାୟରେ ବଂଶରକ୍ଷା କରାଯିବ । ଏଥିରେ ନିନ୍ଦା, ପ୍ରଶଂସା ବା ଲୋକାପବାଦକୁ ମୁଁ ଭ୍ରୂକ୍ଷେପ କରିବି ନାହିଁ । ତୁମେ ଦୁହେଁ ନିଯୋଗ-ସିକ୍ତ ହୋଇ ସନ୍ତାନ ପ୍ରସବ କରିବ ଓ ସେହି ସନ୍ତାନ ହିଁ ଏ ରାଜବଂଶ ରକ୍ଷା

କରିବେ । ଏହା ମୋର ଶେଷ ନିଷ୍ପତ୍ତି । କୌଣସି ପରିସ୍ଥିତିରେ ମୁଁ ମୋର ଏ ନିଷ୍ପତ୍ତି ବଦଳାଇବି ନାହିଁ । ଆହୁରି ଶୁଣ- ''ଯେ କୌଣସି ବ୍ୟକ୍ତିର ସନ୍ତାନକୁ ମୁଁ ହସ୍ତିନା ସିଂହାସନରେ ବସିବାକୁ ଦେବି ନାହିଁ । ମୋ ରକ୍ତର ସ୍ୱାକ୍ଷର ବହନ କରୁଥିବା ବ୍ୟକ୍ତିର ଔରସ-ଜାତ ସନ୍ତାନହିଁ ହସ୍ତିନା ରାଜସିଂହାସନର ଉତ୍ତରାଧିକାରୀ ରୂପେ ସ୍ୱୀକୃତ ହେବ । ଏହା ମୋର ଇଚ୍ଛା ଓ ତୁମ ଦୁହିଁଙ୍କ ପ୍ରତି ଆଦେଶ ଅଟେ ।''

ଶାଶୁଙ୍କ କଥା ଶୁଣି ଦୁଇ ବୋହୂ ଆଶ୍ଚର୍ଯ୍ୟ ହୋଇଗଲେ । ଭାବିଲେ ମାତା ସତ୍ୟବତୀଙ୍କର ଦୁଇପୁତ୍ର ମୃତ । ଏପରି ସ୍ଥଳେ ମାତାଙ୍କ ରକ୍ତର ସ୍ୱାକ୍ଷର ବହନ କରୁଥିବା ବ୍ୟକ୍ତି ଆସିବେ କେଉଁଠୁ ? ବୋଧହୁଏ ଗଭୀର ଦୁଃଖରେ ବିଚଳିତ ହୋଇ ରାଜମାତା ନିଜର ମାନସିକ ଭାରସାମ୍ୟ ହରାଇ ବସିଲେଣି ।

ବୋହୂ ଦୁହିଁଙ୍କ ମନୋଭାବକୁ ଲକ୍ଷ୍ୟକରି ସତ୍ୟବତୀ କହିଲେ,-''ମୋ କଥାରେ ଯେ କେହି ଆଶ୍ଚର୍ଯ୍ୟ ହେବା ସ୍ୱାଭାବିକ । ସମଗ୍ର ଜୀବନକାଳ ମଧ୍ୟରେ ଯେଉଁ ସତ୍ୟକୁ ଅତ୍ୟନ୍ତ ଗୋପନୀୟ ରଖିବାକୁ ଦୃଢ଼ ପ୍ରତିଜ୍ଞା କରିଥିଲି, ଅବସ୍ଥା ଚକ୍ରରେ ଆଜି ତାହା ପ୍ରକାଶ କରିବାକୁ ବାଧ୍ୟ ହେଉଛି । ମୁଁ ଯାହା ପ୍ରକାଶ କରିବାକୁ ଯାଉଛି- ତାହା ଅତ୍ୟନ୍ତ ଲଜ୍ଜାକର ଓ ନିନ୍ଦନୀୟ । ଏପରିକି -

''କହିଲେ କୁଳକୁଟୁମ୍ବକୁ ଲାଜ,
ନକହିଲେ କୁଳ ଭାସି ଯାଉଛି ।''

ଏଥର ଶୁଣ, ''ମୁଁ କୁମାରୀ ଅବସ୍ଥାରେ ଏକ ପୁତ୍ର ସନ୍ତାନର ଜନନୀ ହୋଇଛି । ବର୍ତ୍ତମାନ ମୋର ସେଇପୁତ୍ର ମହର୍ଷି ବ୍ୟାସଦେବ ନାମରେ ସର୍ବତ୍ର ପରିଚିତ । ବ୍ୟାସହିଁ ମୋ ରକ୍ତର ସ୍ୱାକ୍ଷର ବହନ କରିଛି । ମୁଁ ତାକୁ ଆହ୍ୱାନ କରି ତୁମ ଦୁହିଁଙ୍କୁ ସନ୍ତାନବତୀ କରାଇବି ଓ ସେହି ସନ୍ତାନହିଁ ହସ୍ତିନା ରାଜବଂଶର ଦାୟାଦ ରୂପେ ସିଂହାସନ ଅଲଂକୃତ କରିବ ।

ଏକଥା ଶୁଣୁଶୁଣୁ ଚମକି ପଡ଼ିଲେ ଅମ୍ବିକା । ସର୍ବାଙ୍ଗ ଥରି ଉଠିଲା ଅମ୍ବାଳିକାଙ୍କର । ସାହସ ସଂଚୟ କରି ଅମ୍ବିକା କହିଲେ,-''ବ୍ୟାସଦେବ ତେବେ ଆମର ଦେଢଶୁର । ଆମ ଶାଶୁଙ୍କର ପ୍ରଥମ ସନ୍ତାନ ରୂପେ ସେ ଆମର ଅଗ୍ରପୂଜ୍ୟ ଓ ପିତୃତୁଲ୍ୟ ବନ୍ଦନୀୟ ବ୍ୟକ୍ତି । ଯେଉଁ ମହାନୁଭବଙ୍କ ପଦରଜ ଆମ ମଥାର ତିଳକ ରୂପେ ଗୃହୀତ ହେବା କଥା ସେ ମହାତ୍ମାଙ୍କ ସହିତ ଶଯ୍ୟା-ରଚନା କରିବା ପୂର୍ବରୁ ଆମର ମୃତ୍ୟୁହିଁ ସହସ୍ର ଗୁଣରେ ଶ୍ରେୟସ୍କର । ଏପରି ଏକ ବିଭତ୍ସ ପ୍ରସ୍ତାବ

ଆଗତ କରିବାକୁ ଆପଣଙ୍କ ଜିଭ ନେଉଟିଲା କିପରି ? ଆପଣଙ୍କ ପାଟି ଥରି ଉଠିଲା ନାହିଁ କାହିଁକି ? ଆଉ ଅଧିକ କହି ଆମକୁ ରୌରବ ମଧ୍ୟକୁ ଠେଲି ଦିଅନ୍ତୁ ନାହିଁ । ହସ୍ତିନା ରାଜବଂଶ ରସାତଳକୁ ଯାଉ, ରାଜମାତା ଦୁଃଖ ଓ ଶୋକ ସାଗରରେ ବୁଡି ରହନ୍ତୁ, ସେଥିପାଇଁ ମୋର ତିଳେମାତ୍ର ଶୋଚନା ନାହିଁ । ମାତ୍ର ପିତା ସହିତ କନ୍ୟାର ସହବାସ କଥା ଶୁଣିବା ପୂର୍ବରୁ ମୁଁ ନିଶ୍ଚୟ ଆତ୍ମହତ୍ୟା କରିବି । ନଚେତ୍ ଅବାଧ୍ୟ ହେବାରୁ ମୋତେ ହତ୍ୟା କରିବା ପାଇଁ ଆପଣ ଆଦେଶ ଦିଅନ୍ତୁ ।'' ଅମ୍ବାଳିକା ମଧ୍ୟ ଅନୁରୂପ ଉତ୍ତର ଦେବାରେ ବିଳମ୍ବ କରି ନଥିଲେ ।

**ସତ୍ୟବତୀ-** ଏଥିରେ ଉତ୍ତେଜିତ ହେବାରେ କିଛି ନାହିଁ । ଯେତେ ଉତ୍ତେଜିତ ହେଲେ ମଧ୍ୟ ତୁମକୁ ହତ୍ୟା କରିବାର ଆଦେଶ ଦେଇ ମୁଁ ମୋ ଲକ୍ଷ୍ୟ ପଥରେ ଅନ୍ତରାୟ ସୃଷ୍ଟି କରିବାକୁ ଇଚ୍ଛା କରୁନାହିଁ । ଗୁଡାଏ କହି ପକାଇଲେ ତୁମ ଦୁହିଁଙ୍କ ମନ ହାଲୁକା ହୋଇଯିବ । ମନଇଚ୍ଛା କହିଯାଅ । ମୁଁ ଶୁଣିବାକୁ ପ୍ରସ୍ତୁତ ଅଛି ।

**ଅମ୍ବିକା-** ମାତା, ଆପଣଙ୍କ ବୁଦ୍ଧି ନଷ୍ଟ ହୋଇଗଲାଣି । ଯାହା ସବୁ କହି ଯାଉଛନ୍ତି, ତାହା ଆପଣ ନିଜେ ମଧ ଜାଣି ପାରୁ ନାହାନ୍ତି । କୁଳରକ୍ଷା ପାଇଁ ଆପଣ ଯେ କୌଣସି ଅନ୍ୟାୟକୁ ଅମ ଉପରେ ଯୋର୍‌ଜରି ଲଦି ଦେଲେ ଆମେ ତାହା କଦାପି ବରଦାସ୍ତ କରି ପାରିବୁ ନାହିଁ । ଯେଉଁ ନିୟୋଗକଥା ଉଠାଉଛନ୍ତି, ତାହା କେବେ ହେଲେ ବୈଧବ୍ୟ-ଯନ୍ତ୍ରଣା ଦଗ୍ଧ ନାରୀ ପାଇଁ ଉଦ୍ଦିଷ୍ଟ ନୁହେ ।

**ଅମ୍ବାଳିକା-** ବିନାଶ କାଳେ ବୁଦ୍ଧି ବିପରୀତ ହେବା କଥା ପ୍ରମାଣ ସିଦ୍ଧ । ବର୍ତ୍ତମାନ ରାଜମାତାଙ୍କର ଅବସ୍ଥା ଠିକ୍ ସେହିପରି ହୋଇ ଯାଇଛି । ପାପ-ଭାର ବୃଦ୍ଧି ପାଇଲେ ବୁଦ୍ଧି ଆପେ ଆପେ ନଷ୍ଟ ହୋଇଯାଏ । ଆପଣ ଦତ୍ତକ ପୁତ୍ର ଗ୍ରହଣ ନକରିବା ପଛରେ ଆପଣଙ୍କର କୌଣସି ବଳିଷ୍ଠ ଯୁକ୍ତି ନାହିଁ । ଏହା ଆପଣଙ୍କ ଅହେତୁକ ଜିଦ୍ଦି ବ୍ୟତୀତ ଅନ୍ୟ କିଛି ନୁହେଁ । ଦ୍ୱିତୀୟତଃ ଯଦି ନିୟୋଗ ପ୍ରଥା ଗ୍ରହଣ କରିବାକୁ ଆମକୁ ବାଧ କରୁଛନ୍ତି, ତେବେ ପିତାର ସମ୍ମାନ ପାଉଥିବା ଦେବଶୁରଙ୍କୁ ଆମନ୍ତ୍ରଣ ନକରି ଅନ୍ୟ ଯେକୌଣସି ସତ୍ ପୁରୁଷଙ୍କ କଥା ଚିନ୍ତା କରୁନାହାନ୍ତି କାହିଁକି ? ସେଥିରେ ଆପଣଙ୍କ ଉଦ୍ଦେଶ୍ୟ ସାଧିତ ହେବାରେ କିଛିମାତ୍ର ଅନ୍ତରାୟ ଦେଖା ଦେବନାହିଁ । ନିୟୋଗ ଶାସ୍ତ୍ରରେ ପିତା ତା'ର ବିଧବା-କନ୍ୟା ସହିତ ମିଳିତ ହୋଇ ସନ୍ତାନ ଉତ୍ପାଦନ କରିବାର ଦୃଷ୍ଟାନ୍ତ ଆଦୌ

ନାହିଁ । ସହଜେ ବିଧବା ମାନେ ନିଯୋଗ ପାଇଁ ଅନୁପଯୁକ୍ତ ବିବେଚିତ ହେଉଥିବା ମୁଁ ଉତ୍ତମ ରୂପେ ଜାଣେ । ଏକାନ୍ତ ଅନୁରୋଧ ଓ ବିନୀତ ପ୍ରାର୍ଥନା ଯେ ଆପଣ ଆମକୁ ଏ ପାପ ପଙ୍କ ମଧ୍ୟକୁ ଠେଲି ଦେବାପରି ଅନ୍ୟାୟ ଆଦେଶର ପୁନର୍ବିଚାର କରନ୍ତୁ ।

**ସତ୍ୟ-** ଆଜି ପ୍ରଥମ ଥର ପାଇଁ ତୁମେ ଦୁହେଁ ମୋ ସମ୍ମୁଖରେ ଏପରି ଉଗ୍ରତା ଓ ଅବାଧ୍ୟତା ପ୍ରକାଶ କରିବାକୁ ସାହସ କରିଛ । ମୋର କ୍ରୋଧ ସୀମା ଲଙ୍ଘନ କରିବା ଅବସ୍ଥାକୁ ଆସିଗଲାଣି । ଅଧିକ କିଛି କହିବାକୁ ଚେଷ୍ଟାକଲେ ପରିଣତି ଭୟାବହ ହେବ ।

**ଅମ୍ବିକା-** ଜାଣିଶୁଣି ଆପଣଙ୍କୁ ଉତ୍ୟକ୍ତ କରାଯାଉଛି । ଅତ୍ୟନ୍ତ ଉତ୍ତେଜିତ ହେଲେ ଆପଣ ନିଶ୍ଚୟ ଆମ ଦି ଭଉଣୀଙ୍କୁ ହତ୍ୟା କରିବାକୁ ଆଦେଶ ଦେବେ ଓ ବର୍ତ୍ତମାନ ପରିସ୍ଥିତିରେ ତାହାହିଁ ଆମର ଏକାନ୍ତ କାମ୍ୟ ।

**ସତ୍ୟ-** ଯେତେ ଯାହା କହିଲେ ମଧ ମୁଁ ତୁମ ଦୁହିଁଙ୍କୁ ହତ୍ୟା କରିବି ନାହିଁ । ଏହାର କାରଣ ଅତି ସ୍ପଷ୍ଟ । ଏ ବଂଶରକ୍ଷା ପାଇଁ ତୁମେ ହିଁ ଏକମାତ୍ର ମାଧ୍ୟମ । ମୁଁ ଜାଣି ଶୁଣି ନିଜ ହାତରେ ମୋ ବଂଶ ବୁଡାଇବାକୁ ଆଦୌ ଇଚ୍ଛା କରୁନାହିଁ ।

**ଅମ୍ବାଳିକା-** ବାସ୍ତବରେ ଆପଣଙ୍କ ମାନସିକ ବିଭ୍ରାନ୍ତି ଅତିମାତ୍ରାରେ ବୃଦ୍ଧି ପାଇଲାଣି । ଏପରିକି ନ୍ୟାୟ ଅନ୍ୟାୟ, ପାପ ଓ ପୁଣ୍ୟ ପ୍ରତି ଆପଣ ସଂପୂର୍ଣ୍ଣ ଅନ୍ଧ ହୋଇଗଲେଣି । ଶହ ଶହ ରାଜପରିବାର, ହଜାର ହଜାର ବ୍ୟକ୍ତି ଦତ୍ତକ ଗ୍ରହଣ ପୂର୍ବକ ବଂଶରକ୍ଷା କରି ଆସୁଥିବାର ପରମ୍ପରାକୁ ଭ୍ରୂକ୍ଷେପ ନକରି, କେଉଁ ଦିବ୍ୟଯୁକ୍ତି ବଳରେ ଆପଣ ଅତ୍ୟନ୍ତ ଅନ୍ୟାୟ ଭାବରେ ଏକ ଅତୀବ ନିନ୍ଦନୀୟ ଆଦେଶକୁ ସ୍ୱୀକାର କରିବା ପାଇଁ ଆମକୁ ବାଧ୍ୟ କରୁଛନ୍ତି । ଏଥିରେ କୌଣସି ଯଥାର୍ଥତା ନାହିଁ । ଏଣୁ ଦତ୍ତକ ପୁତ୍ର ଗ୍ରହଣ ପୂର୍ବକ ଆପଣ ଆମ ଦି ଭଉଣୀଙ୍କୁ ଘୋର ପାପରୁ ରକ୍ଷା କରନ୍ତୁ ।

**ସତ୍ୟ-** (ଅତ୍ୟନ୍ତ ଉତ୍ତେଜିତ ହୋଇ ରୁକ୍ଷକଣ୍ଠରେ କହିଲେ-) ଆଗରୁ କହିଛି-ମୋ ରକ୍ତର ସ୍ୱାକ୍ଷର ବହନ କରୁଥିବା ବ୍ୟକ୍ତିହିଁ ଏ ବଂଶ ରକ୍ଷା ପାଇଁ ଦାୟାଦ ସୃଷ୍ଟି କରିବ । ଏହାର ପରିବର୍ତ୍ତନ ସମ୍ପୂର୍ଣ୍ଣ ଅସମ୍ଭବ ।

**ଅମ୍ବିକା-** ବ୍ୟାସଙ୍କ ଶରୀରରେ ଆପଣଙ୍କ ରକ୍ତ ଥିବ । ମାତ୍ର ତାହାତ ରାଜ ରକ୍ତ ନୁହେଁ । ବରଂ ତାଙ୍କ ସର୍ବାଙ୍ଗରେ ଜଣେ କୈବର୍ତ୍ତ କନ୍ୟାର ରକ୍ତ

ପ୍ରବାହିତ । ଏକଥା ଆପଣ ଆଦୌ ଅସ୍ୱୀକାର କରି ପାରିବେ ନାହିଁ ଯେ ଆପଣ ପ୍ରଥମେ କୈବର୍ତ୍ତୀ ଓ ପରେ ରାଜ-ରାଣୀ ରୂପେ ପରିଚିତା । ଜଣେ କେଉଟୁଣୀ ଗର୍ଭଜାତ ସନ୍ତାନ ଅପେକ୍ଷା ଜଣେ ସଦ୍‌ବଂଶଜଙ୍କୁ ନିର୍ବାଚିତ କରିବାରେ ଆପତ୍ତି କାହିଁକି ? ଆପଣ ରାଜରାଣୀ ହେବାପରେ ଯେଉଁ ଦୁଇପୁତ୍ରଙ୍କୁ ଜନ୍ମ ଦେଇଥିଲେ ସେମାନେହିଁ ବାସ୍ତବ ରାଜ-ରକ୍ତର ଅଧିକାରୀ, ବ୍ୟାସ୍ ନୁହନ୍ତି । ଏକଥା ଆପଣ ଅସ୍ୱୀକାର କରିପାରିବେନାହିଁ ।

**ସତ୍ୟ-** (ଘୋର ଅପମାନ ଓ ଶ୍ରୁତିକଟୁ ବାକ୍ୟ ବାଣରେ ଜର୍ଜରିତ ହୋଇ କହିଲେ)- ''ମୁଁ ତୁମର ସବୁକଥା ଶୁଣିବି ବୋଲି କହିବାରୁ ତୁମେ ସୀମା ଅତିକ୍ରମ କରି ଯାଉଛ । କାହା ସହିତ ଯୁକ୍ତିତର୍କ କରୁଛ, ଏକଥା ଭୁଲିଯିବା ଉଚିତ ନୁହେଁ ।

**ଅମ୍ବାଳିକା-** ଆପଣ ଆମ ଦି ଭଉଣୀଙ୍କ ପ୍ରତି ଯେଉଁ ବ୍ୟବହାର କରିଛନ୍ତି, ଯେଉଁ ପାପ-କାର୍ଯ୍ୟ କରିବା ପାଇଁ ଆମକୁ ବାରମ୍ବାର ବାଧ୍ୟ କରୁଛନ୍ତି ସେଥିରେ ଆପଣ ମଧ୍ୟ ସୀମା ପ୍ରତି ଆଦୌ ଦୃଷ୍ଟି ଦେଇ ନାହାନ୍ତି । ତେଣୁ ଆମେ ଆମ ନାରୀତ୍ୱର ଅବମାନନା ନହେବା ପାଇଁ ସତତ ସତର୍କ ରହି ନିଜର ଇଚ୍ଛା ବିରୁଦ୍ଧରେ ଅନେକ କଥା କହିବାକୁ ବାଧ୍ୟ ହେଉଛୁ ।

**ଅମ୍ବିକା-** ମୁଁ ତ ଯାହା ସବୁ କହିବି ବୋଲି ଭାବିଛି ସେ ସବୁ ଏ ପର୍ଯ୍ୟନ୍ତ କହିନାହିଁ । ଏଥର ମୋ ମନ ଭିତରେ ଆନ୍ଦୋଳିତ ହେଉଥିବା କଥା ଗୁଡ଼ାକ ନକହି ସ୍ଥିର ହୋଇ ରହି ପାରିବି ନାହିଁ । ପ୍ରଥମତଃ ଆପଣଙ୍କ ଜିଦ୍ଦିହିଁ ଆପଣଙ୍କୁ ଅନ୍ଧ କରି ସାରିଲାଣି । ଆପଣ ହିତାହିତ ବା ପାପପୁଣ୍ୟର ବିଚାର କରିବାର ଶକ୍ତି ହରାଇ ବସିଲେଣି ।

**ଅମ୍ବାଳିକା-** କଥା ଛଡ଼ାଇ ନେଇ ଅମ୍ବାଳିକା କହିଲେ,- '' ହସ୍ତିନା ରାଜବଂଶ ଧ୍ୱଂସ ହେବାର ସୂତ୍ରପାତ ହୋଇ ସାରିଲାଣି । ଦୀର୍ଘ ଦିନ ଧରି ଏ ବଂଶର ପାପ-କୁମ୍ଭ ଧୀରେ ଧୀରେ ପୂର୍ଣ୍ଣ ହେବାରେ ଲାଗିଛି । ସେଇ ପାପର ପ୍ରଭାବରେ ଆମେ ଦି ଭଉଣୀ ଅକାଳରେ ବୈଧବ୍ୟ ଯନ୍ତ୍ରଣାରେ ଦଗ୍ଧ ହେଉଛୁ । ଜୀବନର ସୁଖ-ସୂର୍ଯ୍ୟ ଉଦୟ ହେବା ପରେ ପରେ କାଳରାହୁ ଗ୍ରାସ କରି ଆମକୁ ଜୀବନ୍ତ ମୂର୍ଦ୍ଧାରରେ ପରିଣତ କରିଦେଲା । ଆମେ କିଛି ହେଲେ ପାପ କରିନାହୁଁ କିନ୍ତୁ ଏ ବଂଶର ପାପହିଁ ଆମକୁ କବଳିତ କରି ପକାଇଛି ।

**ସତ୍ୟ-** ସାବଧାନ, ପବିତ୍ର ହସ୍ତିନା ରାଜବଂଶ ବିରୁଦ୍ଧରେ ଅଙ୍ଗୁଳି

ଉଠାଇବାକୁ ସାହସ କରନାହିଁ । ଏ ବଂଶ ଅତି ମହାନ ଓ ଏହାର ମର୍ଯ୍ୟାଦା ସୁଦୂର ପ୍ରସାରୀ । କଥା କହିବାରେ ସଂଯମ ରକ୍ଷା ନକଲେ ପରିଣତି ଭୟାବହ ହେବ ।

ଅମ୍ବିକା- ଆଖି ବୁଜିଦେଲେ ଚାରିଆଡ ଅନ୍ଧାର ଦେଖାଯାଏ । ଠିକ୍ ସେହିପରି ଆପଣ ଏ ବଂଶରେ ଘଟି ଆସିଥିବା ଅନ୍ୟାୟ ଅତ୍ୟାଚାର ଓ ପାପକାର୍ଯ୍ୟ ପ୍ରତି ଏକାନ୍ତ ଭାବରେ ଅନ୍ଧ ହୋଇ କେବଳ ଅସାର ପବିତ୍ରତା ଓ ମର୍ଯ୍ୟାଦା କଥା କହି ନିଜକୁ ସାନ୍ତ୍ୱନା ଦେଉଛନ୍ତି ମାତ୍ର ।

ବହୁ ଦିନ ଆଗରୁ ହସ୍ତିନା ରାଜବଂଶର ବାର-ବେଳା ଉପସ୍ଥିତ ହୋଇ ସାରିଛି । ଗ୍ରହରାଜ ଶନି ମଧ ତାଙ୍କର ତୀର୍ଯ୍ୟକ ଦୃଷ୍ଟି ଏ ବଂଶ ଉପରେ ପକାଇ ସାରିଲେଣି । ଆଜି ଆପଣ ମୋ ଅନୁମାନକୁ ସତ୍ୟରେ ପରିଣତ କରିଦେଲେ । ହସ୍ତିନା ରାଜବଂଶର ପୂର୍ବ ଘଟଣା ଗୁଡ଼ିକ ମଧ ବଂଶର ମହତ୍ୱ ବା ସମ୍ମାନ ବଢାଇବାରେ ସହାୟତା କରି ନାହିଁ । ପ୍ରଥମତଃ ମହାରାଜା ଶାନ୍ତନୁ ଗଙ୍ଗାଦେବୀଙ୍କୁ ବିବାହ କରି ଯେଉଁ ସର୍ତ୍ତରେ ଆବଦ୍ଧ ଥିଲେ, ତାହା କୌଣସି ଏକ ରାଜା ପକ୍ଷରେ ସ୍ପୃହଣୀୟ ନୁହେଁ । ରାଜା ହୋଇ, ପିତା ହୋଇ ମଧ ସେ ସ୍ୱୀୟ ପତ୍ନୀଙ୍କ ପୈଶାଚିକ କାର୍ଯ୍ୟର ପ୍ରତିରୋଧ ନକରି ଅନ୍ୟାୟ କରିଛନ୍ତି ବୋଲି ଲୋକ ମୁଖରେ ବହୁଳ ଚର୍ଚ୍ଚା ହୋଇଥିଲା । ଅଭିଶପ୍ତ ଗନ୍ଧର୍ବଙ୍କ ମୁକ୍ତି କଥା କିଏବା କାହିଁକି ବିଶ୍ୱାସ କରନ୍ତା ? ଦ୍ୱିତୀୟତଃ ଗଙ୍ଗାଙ୍କ ବିଚ୍ଛେଦ ପରେ ମହାରାଜା ଶାନ୍ତନୁ ଅତି ବିବ୍ରତ ହୋଇ ପଡ଼ିଥିଲେ । ଦୈବାତ୍ ଆପଣଙ୍କୁ ଦର୍ଶନ କରିବା ମାତ୍ରେ ଆପଣଙ୍କ ଅପ୍ସରା ବିନିନ୍ଦିତ ରୂପ ଲାବଣ୍ୟରେ ବିମୋହିତ ହୋଇ ଆପଣଙ୍କୁ ଜୀବନ-ସଙ୍ଗିନୀ ରୂପେ ପାଇବା ପାଇଁ ସେ ତତ୍‌କ୍ଷଣାତ୍ ଆପଣଙ୍କ ପିତାଙ୍କୁ ଅନୁରୋଧ ଜଣାଇଲେ । ମାତ୍ର ଆପଣଙ୍କ ପିତାଙ୍କ ସର୍ତ୍ତ ପୂରଣ କରିବାକୁ ଏକାନ୍ତ ଅସମର୍ଥ ହୋଇ ଗଭୀର ମନସ୍ତାପରେ [redacted] ଉଆସକୁ ଫେରି ଆସିଲେ । ସେହିଦିନ ଠାରୁ ମହାରାଜା ଖାଇବା,ପିଇବା, ଶୋଇବା ଏପରିକି ପ୍ରଜା-ପାଟକଙ୍କ ଦୁଃଖ ଗୁହାରୀ ଶୁଣିବା ମଧ୍ୟ ସଂପୂର୍ଣ୍ଣ ଭାବରେ ତ୍ୟାଗ କରି ବିମର୍ଷ ବଦନରେ ବସି ରହିଲେ । କଥା ବେଶୀ ଦିନ ଗୋପନ ରହିଲାନାହିଁ । ଏକାନ୍ତ ପିତୃ-ଭକ୍ତ ପୁତ୍ର ଦେବବ୍ରତ ନିଜର ସୁଖ, ସୁବିଧା ଏପରିକି ରାଜଗାଦିର ମୋହ ତ୍ୟାଗ କରିବା ସହିତ ଜୀବନରେ କଦାପି ବିବାହ କରିବେ ନାହିଁ ବୋଲି ଏକଭୀଷ୍ମ ପ୍ରତିଜ୍ଞା କରିଥିଲେ । ଏହାପରେ ସେ ଆପଣଙ୍କୁ ଆଣି ପିତା ଶାନ୍ତନୁଙ୍କ ସନ୍ତୋଷ

ବିଧାନ କରିଥିଲେ । ଦେବବ୍ରତ ବାସ୍ତବ ପିତୃ ଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରି ଯୁଗଯୁଗକୁ ମହୀୟାନ ହୋଇଗଲେ । ପିତାଙ୍କ ସୁଖପାଇଁ ସେ ଯୁବକ ଅବସ୍ଥାରୁ ହିଁ ଚିର-କୁମାର ହୋଇ ରହିଗଲେ । ଯୁବକ ପୁତ୍ରର ବିବାହ, ସାଂସାରିକ ଭୋଗବିଳାସ ପାଇଁ ତିଳେ ହେଲେ ଦୃଷ୍ଟି ନଦେଇ ମହାରାଜା ନିଜ ଅଲକ୍ଷ୍ୟରେ ଏକ ଗୁରୁତର ଅପ୍ରାଧ କରି ପକାଇଥିଲେ ।

**ଅମ୍ବାଳିକା-** ଖାଲି ସେତିକି ନୁହେଁ ଭଉଣୀ । ଆହୁରି ଅନ୍ୟାୟ ଓ ଅସୁନ୍ଦର କଥା ବିଷୟରେ ତୁ ଆଦୌ ଚିନ୍ତା କରି ନାହୁଁ । ମନୁଷ୍ୟ ସମାଜ ଯେଉଁ ଦିନୁ ସଭ୍ୟତାର ଆଲୋକ ପାଇଲା ଠିକ୍ ସେହି ଦିନଠାରୁ ଆଜି ପର୍ଯ୍ୟନ୍ତ ପିତାମାତାମାନେ ନିଜର ସନ୍ତାନମାନଙ୍କପାଇଁ ଉପଯୁକ୍ତ ପାତ୍ର ନିର୍ଣ୍ଣୟ କରି ବିବାହ ଦେଇଆସୁଛନ୍ତି । ମାତ୍ର ହସ୍ତିନା ରାଜବଂଶରେ ଏହାର ଯେଉଁ ବ୍ୟତିକ୍ରମ ହୋଇଛି, ତାହା ନିତାନ୍ତ ଲଜ୍ଜ୍ୟାକର ଓ ନିନ୍ଦନୀୟ । ଯୁବକ ପୁତ୍ର ଦେବବ୍ରତ କନ୍ୟାସ୍ଥିର କରି ଆଣି ପିତାଙ୍କୁ ବିବାହ କରାଇଥିବା କଥା ଲୋକେ ଆଦୌ ଭୁଲି ନାହାନ୍ତି । ଏପରି ବିଚିତ୍ର ଉଦାହରଣ ଅନ୍ୟତ୍ର ଦୃଷ୍ଟିଗୋଚର ହେବା ସମ୍ଭବ ନୁହେଁ । ଯୁବକ-ପୁତ୍ରକୁ ସନ୍ନ୍ୟାସ ଦୀକ୍ଷା ଦେଇ ପରିଣତ ବୟସରେ ପିତା ଦ୍ୱିତୀୟ ପତ୍ନୀ ରୂପେ ଜଣେ ଯୁବତୀଙ୍କୁ ଗ୍ରହଣ କରିବା ଘଟଣାକୁ ଅନ୍ୟାୟ ବୋଲି କୁହାଯିବ ନାହିଁକି ?

**ଅମ୍ବାଳିକା-** ଆରେ, ତୁ ଏସବୁ କହିବା ପରେ ଆମ ଜୀବନର କରୁଣ କାହାଣୀ ମୋ ମନେ ପଡ଼ିଗଲା । ଏହି ରାଜବଂଶର ଅହମିକା ଓ ଆତ୍ମଗର୍ବ ଆମ ତିନି ଭଉଣୀଙ୍କ ଜୀବନକୁ କିପରି ନଷ୍ଟଭ୍ରଷ୍ଟ କରି ଦେଇଛି ସେ କଥା କହିଲା ବେଳକୁ ଅଶ୍ରୁ ବାଧା ମାନୁ ନାହିଁ । ମନ ବିଦ୍ରୋହ କରି ଉଠୁଛି ।

ଆମେ ତିନି ଭଉଣୀ ଅମ୍ବା, ଅମ୍ବିକା ଓ ଅମ୍ବାଳିକା କାଶୀ ରାଜାଙ୍କ କନ୍ୟା । ବିବାହ ଯୋଗ୍ୟ ବୟସ ହୋଇଯିବାରୁ ପିତା ସ୍ୱୟଂବରର ଆୟୋଜନ କଲେ । ବହୁ ରାଜପୁତ୍ର ସମବେତ ହେଲେ । ବଡ଼ଭଉଣୀ ଅମ୍ବା ଆଗରୁ ମଦ୍ରାଧିପତି ମହାରାଜା ଶଲ୍ୟକୁ ବିବାହ କରିବା ପାଇଁ ମନସ୍ଥ କରି ସାରିଥାନ୍ତି । ଆମେ ଦୁହେଁ ସ୍ୱୟମ୍ବର ସଭାରୁ ମନୋମତ ପତି ନିର୍ବାଚନ କରିବାର ସ୍ୱପ୍ନ ଦେଖୁଥାଉ । ଠିକ୍ ଏହି ସମୟରେ ଭୀଷ୍ମଦେବ ସ୍ୱୟମ୍ବର ସଭାକୁ ଚକିତ କରି ବଳପୂର୍ବକ ଆମ ତିନି ଭଉଣୀଙ୍କୁ ରଥରେ ବସାଇ ହସ୍ତିନାନେଇ ଆସିଲେ । ସଭାସ୍ଥ ଅଗଣିତ ଯୋଦ୍ଧା ଏ ଅନ୍ୟାୟ କାର୍ଯ୍ୟର ବିରୋଧ କରି ଅସ୍ତ୍ର ଉତ୍ତୋଳନ କଲେ । ମାତ୍ର ଭଷ୍ମଙ୍କ ପରାକ୍ରମ ଆଗରେ କେହି ତିଷ୍ଠି ପାରିଲେ ନାହିଁ । କ୍ଷତ୍ରିୟ ବୀରମାନେ

ଏପରି ବଳପୂର୍ବକ କନ୍ୟା ଆଣିବାର ଦୃଷ୍ଟାନ୍ତ ପୂର୍ବରୁ ଥିଲା, ଏକଥା ସତ । ମାତ୍ର ଏହା ଆଦୌ ଆଦରଣୀୟ ବା ପ୍ରଶଂସନୀୟ କାର୍ଯ୍ୟରୂପେ ବିବେଚିତ ହେଉନଥିଲା । ବରଂ ଏହା ଏକ ପାଶବିକ କାର୍ଯ୍ୟବୋଲି ଗଣ୍ୟ ହେଉଥିଲା । ଯଦି ଏହାକୁ ପରମ୍ପରାର ସ୍ୱୀକୃତି ମିଳିଥାନ୍ତା, ତେବେ ସ୍ୱୟମ୍ବର ସଭାର ଆୟୋଜନ ନିରର୍ଥକ ହୋଇ ପଡ଼ିଥାନ୍ତା । ପୁନଶ୍ଚ ନାରୀର ସ୍ୱାଧୀନ ଇଚ୍ଛାକୁ ଏ ପ୍ରକାର କାର୍ଯ୍ୟରେ ଜାଣିଶୁଣି ହତ୍ୟା କରାଯାଇଥାଏ । ନାରୀର ଇଚ୍ଛା ବିରୁଦ୍ଧରେ ହୋଇଥିବା ବିବାହକୁ ବର୍ବରୋଚିତ ବୋଲି କହିବା ଅଧିକ ସମୀଚୀନ ।

**ଅମ୍ବିକା**- ଖାଲି ସେତିକିରେ ତ ପୂର୍ଣ୍ଣଚ୍ଛେଦ ପଡ଼ିନାହିଁ ଭଉଣୀ । ହସ୍ତିନାରେ ଅମ୍ବା ନିଜର ଦୃଢ଼ ନିଷ୍ପତ୍ତି ଜଣାଇ କହିଲେ; ମୁଁ ମଦ୍ରରାଜ ଶଲ୍ୟଙ୍କ ବାଗ୍‌ଦତ୍ତା । ତାଙ୍କ ବ୍ୟତୀତ ମୁଁ ଅନ୍ୟ କାହାକୁ ବରଣ କରିବି ନାହିଁ । ଭୀଷ୍ମଙ୍କ ବୁଦ୍ଧି ଭ୍ରମ ହୋଇଗଲା । ସେ ସସମ୍ମାନେ ଅମ୍ବାଙ୍କୁ ମଦ୍ରାଧିପତିଙ୍କ ନିକଟକୁ ପ୍ରେରଣ କଲେ । ହାୟ, କି ଦୁର୍ଭାଗ୍ୟ ମହାରାଜା ଶଲ୍ୟ ଅମ୍ବାଙ୍କୁ ଗ୍ରହଣ କରିବାକୁ ମନା କରି ଦେଲେ । ଅମ୍ବାଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ସେ ଫେରିଆସି କହିଲେ- ଭୀଷ୍ମ, ତୁମ ଯୋଗୁ ମୋ ସୁଖର ସଂସାର ମାଟିରେ ମିଶିଗଲା । କେଉଁ ଅପରାଧ ଯୋଗୁଁ ମୁଁ ଏପରି ଯନ୍ତ୍ରଣା-ଦଗ୍ଧ ହେଉଛି ଜଣାଇ ପାରିବକି ?

ଭୀଷ୍ମ ଏହାର କି ଉତ୍ତର ଦେବେ ? ନୀରବ ରହିବା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନଥିଲା । ଅମ୍ବା ଅତ୍ୟନ୍ତ ବ୍ୟସ୍ତ, ବିବ୍ରତ ଓ ଦୁଃଖିତ ହୋଇ ଚାଲିଗଲେ । ବହୁ ମୁନୀ, ଋଷି ଓ ସାଧୁମାନଙ୍କୁ ନିଜ ଜୀବନର କରୁଣ କାହାଣୀ ଜଣାଇବାରେ ସମସ୍ତେ ତାଙ୍କୁ ଭୀଷ୍ମଙ୍କ ଅସ୍ତ୍ରଗୁରୁ ମହାବୀର ପର୍ଶୁରାମଙ୍କ ଶରଣ ନେବାକୁ ପରାମର୍ଶ ଦେଲେ । ପର୍ଶୁରାମ ଅମ୍ବାକୁ ଗ୍ରହଣ କରିବାକୁ ଭୀଷ୍ମଙ୍କୁ ବାଧ୍ୟ କରିଥିଲେ । ମାତ୍ର ତାହା ନିଷ୍ଫଳ ହେବାରେ ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଯୁଦ୍ଧ ମଧ୍ୟ ସଂଘଟିତ ହୋଇଥିଲା । ତଥାପି ଅମ୍ବାଙ୍କ ଭାଗ୍ୟ ଆକାଶରେ ସୂର୍ଯ୍ୟୋଦୟର ଆଭାସ ମଧ୍ୟ ମିଳିଲା ନାହିଁ । ଶେଷକୁ ହତାଶା ଜର୍ଜରିତ ଅମ୍ବା ଆତ୍ମହତ୍ୟା କରିବାକୁ ବାଧ୍ୟ ହୋଇଥିଲେ । ଏହା କ'ଣ ପୁଣ୍ୟ କାର୍ଯ୍ୟ ବୋଲି କୁହାଯିବ ? ଏଥିରେ ହସ୍ତିନା ରାଜବଂଶର ଗୌରବ ବୃଦ୍ଧି ପାଇଛି କି ? ବରଂ ଏକ ନିରପରାଧା ନିଷ୍ପାପ ଅବଳାର ଜୀବନ ସହିତ ଖେଳିଥିବାର ପାପ ଭୀଷ୍ମ ତଥା ହସ୍ତିନା ରାଜବଂଶ ମସ୍ତକ ଉପରେ ଏକ ଶାଣିତ ଖଡ଼୍‌ଗରୂପେ ଝୁଲି ରହିଲା । ସେ ଖଡ଼୍‌ଗର ପ୍ରଥମ ଆଘାତରେ ଆମ ଦି ଭଉଣୀଙ୍କ ମସ୍ତକରୁ ସବୁଦିନ ପାଇଁ ସିନ୍ଦୂର ଟିପା ଲିଭିଗଲା ।

**ଅମ୍ବାଲିକା-** ଭଉଣୀ, ଏହାର ପରିସମାପ୍ତି ସଂପୂର୍ଣ୍ଣ ଅସମ୍ଭବ ମନେ ହେଲାଣି । ଶୁଣିଲୁତ ରାଜମାତାଙ୍କର ଏକାନ୍ତ ବିଚାର ହୀନ ବିଭତ୍ସ ଆଦେଶ କଥା । ପିତୃତୁଲ୍ୟ ପୂଜ୍ୟ ଦେଢଶୁରଙ୍କୁ ଦେହଦାନ ପରି ଘୃଣିତକାର୍ଯ୍ୟ କରିବା ପାଇଁ ସେ ଆମକୁ ବାରମ୍ବାର ବାଧ୍ୟ କରୁଛନ୍ତି । ଶତବାଧା ସହସ୍ର ବିନତି ତାଙ୍କ ହୃଦୟକୁ ତରଳାଇ ପାରୁ ନାହିଁ । ହସ୍ତିନା ରାଜବଂଶର ଭବିଷ୍ୟତ ଚିନ୍ତା ବ୍ୟତୀତ ସେ ଆଉ କିଛି ହେଲେ ଭାବିପାରୁ ନାହାନ୍ତି । ନାରୀ ହୋଇ ଆଉ ଜଣେ ନାରୀର ମର୍ମ-ବେଦନା ପ୍ରତି ତାଙ୍କର ଏତେ ଟିକିଏ ବି ଦରଦ ନାହିଁ । ଆଉ କିଛି କହିବା ପାଇଁ ମୋର ଧୈର୍ଯ୍ୟର ଅଭାବ ହେଲାଣି ।

**ଅମ୍ବିକା-** ଭଉଣୀ, 'ଗୁରୁଣାଂମାଜ୍ଞା ଅବିଚାରଣୀୟ ।' ଆମେ ଆଦେଶ ପାଳନ କରିବାକୁ ଅଙ୍ଗୀକାର କଲୁ । ତେବେ ଏକାବେଳେକେ ଏକାଦିନକେ ଆମେ ଦି ଭଉଣୀ ସେ ପବିତ୍ର କାର୍ଯ୍ୟରେ ଲିପ୍ତ ହେବା ପାଇଁ ବାଧ୍ୟ ହେବୁ କାହିଁକି ? ରାଜମାତା ତାଙ୍କ ପବିତ୍ର ମନୋବାଞ୍ଛା ପୂରଣ ନିମିତ୍ତ ଆମ ଭିତରୁ ଜଣକୁ ବାଛି ଦିଅନ୍ତୁ । ଜଣକ ଗର୍ଭରୁ ଜାତ ସନ୍ତାନ କୁଳରକ୍ଷା ପାଇଁ ଯଥେଷ୍ଟ । ଅଯଥାରେ ଆମ ଦୁହିଁଙ୍କୁ କାହିଁକି ସେ କୁତ୍ସିତ କାର୍ଯ୍ୟ ପାଇଁ ବାଧ କରାଯାଉଛି ? ଦୁହିଁଙ୍କ ଗର୍ଭରୁ ଦୁଇଟି ପୁତ୍ର ପାଇବା ଦ୍ଵାରା ରାଜବଂଶ ସୁଦୃଢ ହେବାର କଳ୍ପନା ଅଳୀକ ମାତ୍ର । କେବଳ ଗୋଟିଏ ଚନ୍ଦ୍ରତ ସମଗ୍ର ପୃଥିବୀକୁ ଆଲୋକିତ କରିଥାଏ । ରାଜମାତା ନିଜେ ଦୁଇଟି ପୁତ୍ରର ଜନନୀ ହୋଇଥିଲେ । କାହିଁ ସେମାନଙ୍କ ଭିତରୁ କେହି ତ କୁଳରକ୍ଷା କରିବାକୁ ସମର୍ଥ ହେଲେ ନାହିଁ । ମନୁଷ୍ୟର ଚିନ୍ତା, ଚେତନା ଆଦି ନିୟତି ନିକଟରେ ଅତି ମୂଲ୍ୟହୀନ । ଆମଠାରୁ ହଜାରେ ପୁତ୍ର ଉତ୍ପାଦନ କରି ମଧ ରାଜମାତା ଏ ବଂଶରକ୍ଷା କରି ପାରିବେ ନାହିଁ । ଯଦି ନିୟତିର ନିର୍ଦ୍ଦେଶ ଥିବ, ତେବେ ମାତ୍ର ଗୋଟିଏ ସନ୍ତାନହିଁ କୁଳର ମୁଖ ଉଜ୍ଜ୍ୱଳ କରିବାକୁ ସମର୍ଥ ହେବ । ଏ ବଂଶର ପୂର୍ବସୂରୀ ନହୁଷ, ଯଯାତି, ଶାନ୍ତନୁ ଆଦି ଏକା ଏକା ରାଜ୍ୟ ଶାସନ ଓ ବଂଶ ରକ୍ଷା କରି ଆସିଥିଲେ ।

**ସତ୍ୟ-** (''ରାଜମାତା ବୋହୂମାନଙ୍କ ଉଗ୍ର ସମାଲୋଚନାକୁ ଧୈର୍ଯ୍ୟର ସହିତ ସହି ନେଉଥିଲେ । ଅମ୍ବିକାଙ୍କ ପ୍ରସ୍ତାବକୁ ଖଣ୍ଡନ କରିବା ପାଇଁ ତାଙ୍କ ପାଖରେ ସେପରି କୌଣସି ବଳିଷ୍ଠ ଯୁକ୍ତି ମଧ୍ୟ ନଥିଲା । ତେଣୁ ଶୀଘ୍ର ଏ ଆଲୋଚନାର ପରିସମାପ୍ତି ଘଟାଇବା ଉଦ୍ଦେଶ୍ୟରେ ସେ ଚିତ୍କାର କରି କହି

ଉଠିଲେ,'') ''ବାସ୍, ବହୁତ ହୋଇଗଲା । ତୁମେ ଦୁହେଁ ସୀମା ଅତିକ୍ରମ କରି ସାରିଲଣି । ଯେତେ ଯାହା ହେଲେ ମଧ୍ୟ ମୋ ଆଦେଶ ଅପରିବର୍ତ୍ତନୀୟ । ତୁମେ ଦୁଇ ଭଉଣୀ ନିଯୋଗଦ୍ୱାରା ସନ୍ତାନ ଉତ୍ପାଦନ କରିବାକୁ ବାଧ୍ୟ । ସେ ପୁଣି ମୋ ପୁଅ ବ୍ୟାସଙ୍କ ଔରସରୁ । ଏଥିରେ ଅଣୁମାତ୍ର ବ୍ୟତିକ୍ରମ ଘଟିଲେ ପରିଣତି ଭୟାବହ ହୋଇଉଠିବ ।

ଅମ୍ବାଳିକା- ସବୁଠାରୁ ଭୟାବହ ପରିଣତି ହେଉଛି ମୃତ୍ୟୁ । ଯେ ମୃତ୍ୟୁକୁ ସାଦର ଆଲିଙ୍ଗନ କରିବା ପାଇଁ ବଦ୍ଧ ପରିକର, ତାକୁ ପରିଣତି ସଚେତନ କରାଇବା ନିରର୍ଥକ । ଆପଣଙ୍କ ଆଶୀର୍ବାଦ ବା ଅଭିଶାପ ଆମ ପକ୍ଷରେ ଏକାନ୍ତ ମୂଲ୍ୟହୀନ । ଆପଣଙ୍କ ସୂକ୍ଷ୍ମାତିସୂକ୍ଷ୍ମ ଉନ୍ନତ ଚିନ୍ତାଧାରାକୁ ପ୍ରଶଂସା ନକରି ମୁଁ ରହିପାରୁ ନାହିଁ । ଗୋଟିଏ ପୁତ୍ର କୁଳ ରକ୍ଷା ପାଇଁ ଯଥେଷ୍ଟ, ତେବେ ରାଜମାତା ଆମ ଦୁହିଁଙ୍କ ଠାରୁ ସନ୍ତାନ କାମନା କରିବାର ଉଦ୍ଦେଶ୍ୟ କ'ଣ ? ବହୁ ଚିନ୍ତାପରେ ମୁଁ ଏ ଗୂଢ଼ ତତ୍ତ୍ୱ ସଂପର୍କରେ କିଛି ଧାରଣା କରି ପାରିଛି ଏବଂ ତାହାହିଁ ବାସ୍ତବ ସତ୍ୟ ପରି ମନେହୁଏ ।

ଆମେ ଗୋଟିଏ ମାଆ ଗର୍ଭରୁ ସମ୍ଭୂତ ଦି ଭଉଣୀ । ଏକଥା ଯେପରି ସତ୍ୟ, ଘଟଣା ଚକ୍ରରେ ଆମେ ଦୁହେଁ ସପତ୍ନୀ ହେବା ମଧ୍ୟ ଠିକ୍ ସେହିପରି ସତ୍ୟ । ଏ ରାଜପରିବାରରେ ଆମେ ବର୍ତ୍ତମାନ ତିନିଜଣ ବିଧବା । ରାଜମାତାଙ୍କ ଉଦ୍ଦେଶ୍ୟ ପୂରଣ ପାଇଁ ଆମ ଭିତରୁ ଜଣେ ଦେଢଶୁରଙ୍କୁ ଦେହଦାନ କଲେ ଅନ୍ୟ ଜଣକ ରହିଯିବ । ରାଜମାତା ତାଙ୍କ କୁମାରୀ ଜୀବନର ନିନ୍ଦନୀୟ କାର୍ଯ୍ୟକୁ ଅଳ୍ପ ସମୟ ପୂର୍ବରୁ ପ୍ରକାଶ କରି ଆମ ଦୁହିଁଙ୍କୁ ସେହି ପଥରେ ପଥିକ ହେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । ତାଙ୍କ ଚକ୍ଷୁରେ ନାରୀତ୍ୱ, ସତୀତ୍ୱ ବା ସ୍ୱାଭିମାନର କିଛି ଅର୍ଥ ନାହିଁ । ପୁନଶ୍ଚ ଆମ ଦୁହିଁଙ୍କ ମଧ୍ୟରୁ ଜଣେ ଯଦି ପବିତ୍ର ଭାବରେ ରହିଯାଏ, ତେବେ ଅସୁବିଧାର ସମ୍ଭାବନାକୁ ଅସ୍ୱୀକାର କରିହେବନାହିଁ । ତେଣୁ ଆମେ ଦୁହେଁ ଆମର ସର୍ବଶ୍ରେଷ୍ଠ ସମ୍ପଦ ନାରୀତ୍ୱକୁ ବଳି ଦେଲେ, ତିନିହେଁ ଅର୍ଥାତ୍ ଶାଶୁଙ୍କ ସହିତ ଆମେ ଦି ଭଉଣୀ ସମ-ଧର୍ମୀ ହୋଇଯିବା । କେହି କାହା ସଂପର୍କରେ କିଛି ହେଲେ ମନ୍ତବ୍ୟ ଦେବାକୁ ସାହସ କରିବ ନାହିଁ । ଭଉଣୀ ଯଦି ସଉତୁଣୀ ଭୂମିକାରେ ଅବତୀର୍ଣ୍ଣ ହୁଏ, ତେବେ ତା'ଠାରେ ଭଗ୍ନିତ୍ୱ କମ୍ ଓ ସପତ୍ନୀତ୍ୱ ଅଧିକ ଦେଖାଯାଇଥାଏ । ତେଣୁ ବହୁଚିନ୍ତା ପରେ ରାଜମାତା ଆମ

ତିନି ଜଣଙ୍କୁ ଗୋଟିଏ ନାଆର ଯାତ୍ରୀ କରିଦେବା ପାଇଁ ସଂକଳ୍ପବଦ୍ଧ । ଏପରି ହେଲେ ଗାଉଁଲି କଥାରେ-ହେଁସ ଧୋଇବାର ଆବଶ୍ୟକତା ରହିବ ନାହିଁ ।

**ସତ୍ୟବତୀ-** ଅମ୍ବାଳିକାଙ୍କ ଶାଣିତ ବକ୍ରୋକ୍ତି ଓ ତାଚ୍ଛିଲ୍ୟ ସତ୍ୟବତୀଙ୍କ ଧୈର୍ଯ୍ୟଚ୍ୟୁତି ଘଟାଇଲା । ସେ ଗର୍ଜିଉଠି କହିଲେ,- ''ମୁଁ ଆଦେଶ ଦେଉଛି, ଏଇ ମୁହୂର୍ତ୍ତରୁ ତୁମେ ଦୁହେଁ ପାଟି ଫିଟାଇ ପାରିବ ନାହିଁ । ତୁମମାନଙ୍କର ଦୁଃସାହସ ଅକ୍ଷମଣୀୟ ।''

ଆଲୋଚନା ସେତିକିରେ ବନ୍ଦ ହୋଇଗଲା । ରାଜମାତାଙ୍କୁ କିଛି ନକହି ଅମ୍ବିକା ଆମ୍ବାଳିକାଙ୍କୁ ଡାକି କହିଲେ,- ''ଏଠାରେ ଆଉ କିଛି କାମ ନାହିଁ । ମୋ ସହିତ ଭିତରକୁ ଆ । ସବୁ ଅଘଟଣ ଏଇ ରାଜବଂଶରେ ଘଟି ଏହାକୁ ଦିନେ ରସାତଳକୁ ନେଇଯିବ । ବିଷରୁ ଅମୃତ କିମ୍ବା ପାପରୁ କଦାପି ପୁଣ୍ୟର ସନ୍ଧାନ ମିଳିନଥାଏ । ଆମେ ଆମର ସ୍ୱାଭିମାନକୁ, ନାରୀତ୍ୱକୁ ବଳିଦେଇ ଯେଉଁ କୁତ୍ସିତ ଓ ନିନ୍ଦନୀୟ କାର୍ଯ୍ୟରେ ଲିପ୍ତ ହେବାକୁ ଯାଉଥାଏ ,'' ଏହାର ପରିଣତି ଅତ୍ୟନ୍ତ ଭୟାବହ ହେବ- ବଂଶରକ୍ଷା ପାଇଁ ରାଜମାତା ଯେଉଁ ବ୍ୟାକୁଳତା ପ୍ରକାଶ କରି ପାପ-ପୁଣ୍ୟର ବିଚାରକୁ ବିସ୍ମୃତ ହୋଇଛନ୍ତି, ସେହି ବ୍ୟାକୁଳତା ବଂଶନାଶ ବେଳେ ପୁଣି ପ୍ରକାଶ ପାଇବ ।''

ଜଣେ ବିଧବା ପୁଷ୍ପ ସମ୍ଭାରରେ ପଲଙ୍କ ସଜାଇ, ନିଜକୁ ବଧୂ ବେଶରେ ବାସର-ଯାମିନୀ ପାଇଁ ପ୍ରସ୍ତୁତ କରିବା ଅପେକ୍ଷା ମୃତ୍ୟୁକୁ ଆଲିଙ୍ଗନ କରିବା ସହସ୍ର ଗୁଣରେ ଆନନ୍ଦ ଦାୟକ । ହାୟ, ବିଧିର ବିଧାନ କି ବିଚିତ୍ର ! ଅବସ୍ଥା ଚକ୍ରରେ କାହାକୁ କେତେବେଳେ କିପରି ଅଭିନୟ କରିବାକୁ ହେବ, ଜାଣି ହୁଏ ନାହିଁ ଭାବି ଦୁଇଭଉଣୀ ଗଭୀର ମର୍ମ-ବେଦନାରେ ଛଟପଟ ହେବାରେ ଲାଗିଲେ ।

ବ୍ୟାସଦେବଙ୍କ ପରି ମହର୍ଷି ଏ ଜଘନ୍ୟ କାର୍ଯ୍ୟର ପ୍ରତିବାଦ କରି ପାରିଥାନ୍ତେ । ମାତ୍ର କେଉଁ ବିଶେଷ କାରଣରୁ ସେ ଏପରି ଘୃଣ୍ୟ ଓ ଅତ୍ୟନ୍ତ ଗର୍ହିତ କାର୍ଯ୍ୟକୁ ବିରୋଧ କରିନଥିଲେ ତାହା ତାଙ୍କୁ ହିଁ ଜଣାଥିବ । ଯାହାହେଲେ ମଧ ମହର୍ଷିଙ୍କ ଏ ଘୃଣ୍ୟକାର୍ଯ୍ୟ ଜନ-ସମାଜରେ ବେଶ୍ ସମାଲୋଚିତ ହୋଇଥିଲା ।

ସମୟକ୍ରମେ ସେହି କୁତ୍ସିତ କାର୍ଯ୍ୟ ସମାହିତ ହେଲା । ଦୁଇ ବିଧବା ରାଣୀ ଗର୍ଭବତୀ ହୋଇ ଦୁଇଟି ପୁତ୍ର-ସନ୍ତାନକୁ ଜନ୍ମ ଦେଲେ । ମୋ ବିଚାରରେ ଏହି

ଦିନରୁହିଁ ବଂଶ କ୍ଷୟର ସୂତ୍ରପାତ ହୋଇ ମହାଭାରତ ଯୁଦ୍ଧରେ ଏହାର ପରିସମାପ୍ତି ଘଟିଥିଲା ।

ହସ୍ତିନା ରାଜବଂଶର ଅତୀତ ଇତିବୃତ୍ତି ପ୍ରଶଂସନୀୟ ନଥିବାକଥା ଆଗରୁ କହିଛି । ରାଜମାତା ସତ୍ୟବତୀ ବିବାହ ପୂର୍ବରୁ ଜନନୀ ହୋଇଥିଲେ । ହସ୍ତିନାର ଦୁଇ ବିଧବାରାଣୀ ଦେଢଶୁରଙ୍କୁ ଦେହଦାନ କରି ପୁତ୍ରବତୀ ହେଲେ । ମୁଁ କୁନ୍ତୀ ସେହି ବଂଶକୁ ଏକ ପାପର ବୋଝନେଇ ବୋହୂ ହୋଇ ଆସିବା ମଧ୍ୟ ଦୈବର ସଂଯୋଗ ବୋଲି କହିଲେ କିଛି ଭୁଲ୍ ହେବ ନାହିଁ । ସ୍ପଷ୍ଟ କହିବାକୁ ଗଲେ ମୁଁ ମଧ୍ୟ କୁମାରୀ ଅବସ୍ଥାରେ ଏକ ପୁତ୍ର-ସନ୍ତାନକୁ ଜନ୍ମ ଦେଇ ଏବଂଶର ମହାମାତା ସତ୍ୟବତୀଙ୍କ ପରି ଗୋପନୀୟ ରଖିଥିଲି । ସମୟ କ୍ରମେ ମୋ ଜୀବନର ସମସ୍ତ ଘଟଣା ଧୀରେ ଧୀରେ ବର୍ଣ୍ଣନା କରିବି ।

ଏ ସଂସାର ବଡ଼ ବିଚିତ୍ର । ଯେ ଯାହା ନୁହେଁ, ତାକୁ ଅତିଉଚ୍ଚ ମାନ୍ୟତା ପ୍ରଦାନ କରିବା ଓ ଯେ ବାସ୍ତବରେ ମାନ୍ୟତା ପାଇବାକୁ ହକ୍‌ଦାର ତାକୁ ଉପେକ୍ଷା କରିବା ରୀତି ହଜାର ହଜାର ବର୍ଷତଳୁ ଏକ ଗତାନୁଗତିକ ଭାବରେ ଚଳିଆସୁଛି ।

ମୋ ବିଚାରରେ ମୁଁ ଜଣେ ସାଧାରଣ ନାରୀଠାରୁ ମଧ୍ୟ ହୀନ । କେହି କେହି ମୋତେ ପତିତା, ଜାରଜ-ସନ୍ତାନର ଜନନୀ କହି ଅଙ୍ଗୁଳି ନିର୍ଦ୍ଦେଶ କରିଥାନ୍ତି । ସତ କହିଲେ ନାରୀର ସ୍ୱଧର୍ମ ପାଳନରେ ମୁଁ ବିଫଳ ହୋଇଛି । ଯେଉଁ ପବିତ୍ରତା ନାରୀକୁ ପୂଜନୀୟା, ବନ୍ଦନୀୟା ଓ ମହିୟସୀ କରିଥାଏ, ସେଇ ଅମୂଲ୍ୟ ରତ୍ନଟିକୁ ମୁଁ ମୋ ପ୍ରଥମ-ଯୌବନରୁହିଁ ହଜାଇ ଦେଇଛି । ଯେ କୌଣସି କାରଣରୁ ହେଉନା କାହିଁକି ଯଦି ନାରୀ ତା'ର ସର୍ବଶ୍ରେଷ୍ଠ ଗୌରବକୁ ପଦ-ଦଳିତ କରିଥାଏ, ତେବେ ସମାଜ ଦୃଷ୍ଟିରେ ସେ ହୁଏ ପତିତା, କଳଙ୍କିନୀ ।

ସମାଜ ମୋତେ ଓ ମୋ ପରି ଆଉ କେତେକଙ୍କୁ ପ୍ରାତଃ ସ୍ମରଣୀୟାର ଗୌରବ ପ୍ରଦାନ କରିଛନ୍ତି । ଏଥିପାଇଁ ରଚିତ ଶ୍ଳୋକରେ କୁହାଯାଇଛି ଏହି ରମଣୀମାନଙ୍କ ନାମ ସ୍ମରଣ କଲେ ମହାପାପୀ ମଧ୍ୟ ନିଜକୃତ ଯାବତୀୟ ପାପରୁ ମୁକ୍ତିଲାଭ କରେ ।

ଅହଲ୍ୟା, ଦ୍ରୌପଦୀ, ତାରା,
କୁନ୍ତୀ, ମନ୍ଦୋଦରୀ ତଥା,
ପଞ୍ଚକନ୍ୟା ସ୍ମରେ ନିତ୍ୟଂ
ମହାପାତକ ନାଶନମ୍ ।

ଏହି ଶ୍ଳୋକଟିର ଅର୍ଥ ଆଦୌ ଅସ୍ପଷ୍ଟ ବା ଜଟିଳ ନହେଲେ ମଧ ଏହାର ଅନ୍ତର୍ନିହିତ ଗୂଢତତ୍ତ୍ୱ ଏ ପର୍ଯ୍ୟନ୍ତ ମୋ ପାଇଁ ଦୁର୍ବୋଧ ହୋଇ ରହି ଯାଇଛି । ଆତ୍ମ ପ୍ରଶଂସାରେ ସମସ୍ତେ ଉତ୍ଫୁଲିତ ହୋଇଥାନ୍ତି । ମାତ୍ର ମୁଁ ଏହାର ଏକ ବ୍ୟତିକ୍ରମ । ମୋ ବିଚାରରେ ପ୍ରାତଃ ସ୍ମରଣୀୟା ହେବା ପାଇଁ ମୋ ଠାରେ କୌଣସି ବୈଶିଷ୍ଟ୍ୟ ବା ଐଶ୍ୱରିକ ଶକ୍ତି ନାହିଁ । ବରଂ ମନ ଗହନର ଏକ ନିଭୃତ କୋଣରେ ଅଛି ଆତ୍ମ-କୃତ ପାପର ଏକ ଦୁର୍ବହ ବୋଝ । ଏପରି ଏକ ନାରୀର ନାମୋଚ୍ଚାରଣରେ ପାପୀର ବୈକୁଣ୍ଠ ପ୍ରାପ୍ତି କିପରି ହୋଇ ପାରିବ, ତାହା ବୁଝିବା ମୋ ପକ୍ଷରେ ଏକାନ୍ତ ଦୁର୍ବୋଧ ହୋଇ ରହିଯାଇଛି । କେବଳ ମୁଁ ନୁହେଁ, ମୋ ପରି ଆଉ ଯେଉଁମାନଙ୍କୁ ପ୍ରାତଃ ସ୍ମରଣୀୟା, ବନ୍ଦନୀୟା ଓ ମହିୟସୀ ମହିଳା ରୂପେ ଉଚ୍ଚ ମର୍ଯ୍ୟାଦା ଦିଆ ଯାଇଛି, ସେମାନଙ୍କ ଜୀବନ-ଧାରା ମଧ୍ୟ ପ୍ରଶଂସନୀୟ ବା ଉଲ୍ଲେଖନୀୟ ନୁହେଁ । କେଜାଣି କାହିଁକି ଆମ ହସ୍ତିନା ରାଜ ବଂଶର ମହାମାତା ସତ୍ୟବତୀଙ୍କୁ ପ୍ରାତଃସ୍ମରଣୀୟା ହେବାର ଗୌରବରୁ ବଞ୍ଚିତ କରାଗଲା, ତାହା ମୋ ପକ୍ଷରେ ଏକ ଦୁର୍ବୋଧ୍ୟ ପ୍ରଶ୍ନ-ବାଚୀ ହୋଇ ରହିଯାଇଛି ।

ସମାଜ ନାରୀର ମହନୀୟତା କିପରି ନିର୍ଦ୍ଧାରଣ କରିଥାଏ, ତାହା ମଧ ଏବେ ବି ମୋ ମନକୁ ସନ୍ଦେହାଚ୍ଛନ୍ନ କରି ରଖିଛି । ବେଳେବେଳେ ଭାବେ ସମାଜ ଇଚ୍ଛାକଲେ, ପତିତାକୁ ମଧ ବନ୍ଦିତାର ମାନ୍ୟତା ଦେଇପାରେ । ପୁନଶ୍ଚ ଯୁଗ ଅନୁସାରେ ହୁଏତ ନାରୀର ସତୀତ୍ୱ ଓ ସ୍ୱାଭିମାନର ସଜ୍ଞା ବଦଳିଯାଏ ।

ଅତି ପ୍ରାଚୀନ କାଳରୁ ଏହା ପ୍ରତିପନ୍ନ ହୋଇ ଆସିଛିଯେ, ଯେଉଁ ନାରୀ କାୟମନୋବାକ୍ୟରେ ଅନ୍ୟ ପୁରୁଷର ଚିନ୍ତା କରିନଥାଏ, ନିଜ ପତିଙ୍କୁ ପରମେଶ୍ୱର ଜ୍ଞାନରେ ପୂଜା କରେ, ସେହି ନାରୀହିଁ ମହିୟସୀ, ମହିମାମୟୀ, ସତୀ, ସାଧ୍ୱୀ ଓ ପତିବ୍ରତା ରୂପେ ପୂଜିତା ହୋଇଥାଏ । ମହାସତୀ ଦେବୀ ଜାନକୀ ଅଗ୍ନି ପ୍ରବେଶର ଅବ୍ୟବହିତ ପୂର୍ବରୁ ଯେଉଁ ପ୍ରାର୍ଥନା କରିଥିଲେ ତାହା ଏକାନ୍ତ ପ୍ରଣିଧାନଯୋଗ୍ୟ ।

ଯଥା- ବଚ଼ସି, ମନସି, କାୟେ, ଜାଗରେ ସ୍ୱପ୍ନସଙ୍ଗେ,
ଯଦି ମମ ପତିଭାବୋ ରାଘବାଦନ୍ୟ ପୁଂସି,
ତଦିହ ଦହ ମମାଙ୍ଗଂ ପାବନଂ ପାବକେଦଂ
ସୁକୃତ ଦୂରିତଭାଜାଂ ତ୍ୱହି କର୍ମୈକ ସାକ୍ଷୀ ।

ଅର୍ଥାତ୍- ହେ ଅଗ୍ନିଦେବ, ମୋ ଆଚରଣ, କାର୍ଯ୍ୟ, ଚିନ୍ତା ବା ଚେତନାରେ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ବ୍ୟତୀତ ଅନ୍ୟ କାହାର ଭାବନା ଥିଲେ, ମୋତେ ନିମିଷକ ମଧ୍ୟରେ ଭସ୍ମ କରିଦିଅ । ପ୍ରବାଦ-ପୁରୁଷ ପ୍ରଭୁ ରାମଚନ୍ଦ୍ର ଦ୍ୱିତୀୟ ଥର ପାଇଁ ମୋର ଏ କଳଂକିତ ମୁଖ ଦର୍ଶନ ନକରନ୍ତୁ । ଗଭୀର ଆତ୍ମ-ପ୍ରତ୍ୟୟ ଓ ଅଟଳ ପତି-ଭକ୍ତିକୁ ପାଥେୟ କରି ଦେବୀ ସହାସ୍ୟ ବଦନରେ ପ୍ରଜ୍ୱଳିତ ଅଗ୍ନିମଧ୍ୟରେ ପ୍ରବେଶ କଲେ । ସର୍ବଗ୍ରାସୀ ଅନଳଙ୍କ ଲେଲିହାନ ଶିଖା ମାତା ଜାନକୀଙ୍କ ଶରୀରରେ ଚନ୍ଦନର ଶୀତଳ ପ୍ରଲେପ ବୋଳିଦେଲା । ଦେବୀ ପୁନର୍ବାର ପ୍ରଫୁଲ୍ଲ ବଦନରେ ଅଗ୍ନି ମଧ୍ୟରୁ ବହିର୍ଗତ ହେବାର ଦୃଶ୍ୟ ଦର୍ଶକ ମାନଙ୍କୁ ଆଶ୍ଚର୍ଯ୍ୟ ଚକିତ ତଥା ସମ୍ମୋହିତ କରିଦେଇଥିଲା । ସହସ୍ର ଉନ୍ନତ ଶିର ଦେବୀଙ୍କ ଚରଣରେ ଆପେଆପେ ନଇଁ ଆସିଥିଲା । ଏହାହିଁ ନାରୀତ୍ୱ ଓ ସତୀତ୍ୱର ଚରମ-ନିଦର୍ଶନ ।

ପୁନଶ୍ଚ ଅଶୋକ କାନନରେ ବନ୍ଦିନୀ ଅବସ୍ଥାରେ ଥିବାବେଳେ, ରାମଭକ୍ତ ହନୁମାନ ଦେବୀଙ୍କୁ ସ୍ୱୀୟ ପରିଚୟ ଦେଇଥିଲେ । ନିଜର ଅମିତ ପରାକ୍ରମ ବର୍ଣ୍ଣନା କରି ଚକ୍ଷୁପଲକ ମଧ୍ୟରେ ତାଙ୍କୁ ନେଇ ପ୍ରଭୁ-ରାମଚନ୍ଦ୍ରଙ୍କ ନିକଟରେ ପହଞ୍ଚାଇ ଦେବାର ଅନୁମତି ପ୍ରାର୍ଥନା କରିଥିଲେ । ଉତ୍ତରରେ ମାତା ଜାନକୀ କହିଥିଲେ, ''ବତ୍ସ ହନୁମାନ, ତୁମେ କାହାର ସନ୍ତାନ ମୁଁ ଜାଣେ, ତୁମର ଅମାପ ଶକ୍ତି ସଂପର୍କରେ ମୁଁ ନିଃସନ୍ଦେହ । ସର୍ବୋପରି ଯେଉଁ ମହାନ ପ୍ରଭୁଙ୍କ ନାମ ସର୍ବଦା ଉଚ୍ଚାରଣ କରି ପ୍ରଧାନ ରାମଭକ୍ତ ହନୁମାନ ରୂପେ ତୁମେ ସର୍ବତ୍ର ପରିଚ଼ିତ ତାହା ମଧ୍ୟ ମୋତେ ଅବିଦିତ ନୁହେଁ । ତଥାପି ମୁଁ ତୁମ ପରାମର୍ଶ ଆଦୌ ଗ୍ରହଣ କରି ପାରିବି ନାହିଁ । ମୁଁ ବିବାହିତା । ପ୍ରଭୁ ରାମଚନ୍ଦ୍ର ମୋର ଗତି, ମୁକ୍ତି ଓ ତ୍ରାଣକର୍ତ୍ତା ଅଟନ୍ତି । ବିବାହିତା ନାରୀ ପରପୁରୁଷର ଅଙ୍ଗ ସ୍ପର୍ଶ କରିବା ମଧ୍ୟ ପାପ । ତେଣୁ ତୁମେ ମୋତେ ଏଠାରୁ ନେଇ ଯିବା କଥା ମନରୁ ଦୂର କରିଦିଅ । ପୁନଶ୍ଚ ତୁମେ ଶ୍ରୀରାମଙ୍କ ଦୂତ ରୂପେ ଆସିଛ, ମୋତେ ନେବା ପାଇଁ ନୁହେଁ । ରାବଣ ମୋତେ

ଚୋରାଇ ଆଣିଛି । ତୁମେ ଚୋରାଇ ନେବାରେ ତୁମର ଓ ମୋ ପ୍ରଭୁଙ୍କ ପୌରୁଷର ଅବମାନନା ହେବ । ସମୟ ଆସିବ, ରାବଣ ତା'ର କୃତକର୍ମର ଫଳ ଅବଶ୍ୟ ଭୋଗ କରିବ । ମନେରଖ ଚୋରଠାରୁ ଚୋରି ପୌରୁଷର ପରିଚାୟକ ନୁହେଁ ।''

ହନୁ ନୀରବ ହୋଇଗଲେ । ମାତା ଜାନକୀଙ୍କ ନିବିଡ଼ ପତିପ୍ରେମ ଓ ଗଭୀର ଆତ୍ମ-ବିଶ୍ୱାସ ଆଗରେ ତାଙ୍କ ମୁଣ୍ଡ ଆପେ ଆପେ ତଳକୁ ନଇଁଗଲା । ଏହାହିଁ ବାସ୍ତବ ନାରୀତ୍ୱ ଓ ସତୀତ୍ୱର ଜ୍ୱଳନ୍ତ ନିଦର୍ଶନ ।

ଦେବୀ ସାବିତ୍ରୀଙ୍କ ଅସାଧାରଣ କାର୍ଯ୍ୟ ସଂପର୍କରେ ଅଧିକ କିଛି କହିବା ନିଷ୍ପ୍ରୟୋଜନ ମନେହୁଏ । ସେ ସତୀତ୍ୱ ବଳରେ ମୃତ୍ୟୁଦେବତାଙ୍କ ପଛେ ପଛେ ନରଦେହରେ ସ୍ୱର୍ଗକୁ ଚାଲିଗଲେ । ଯମରାଜଙ୍କୁ ଯୁକ୍ତିରେ ହରାଇ ମୃତ ସ୍ୱାମୀଙ୍କୁ ପୁନର୍ଜୀବିତ କରି ରାଜ୍ୟକୁ ଫେରି ଆସିଥିଲେ । ଏହି ଅସାମାନ୍ୟ ଓ ଅଲୌକିକ ଘଟଣା କେବଳ ସତୀତ୍ୱର ଫଳ ।

ମାତା ଅନସୂୟା ମର୍ତ୍ତ୍ୟର ମାନବୀ । ମାତ୍ର ସ୍ୱୀୟ ଅସାଧାରଣ ସତୀତ୍ୱ ବଳରେ ସେ ବ୍ରହ୍ମା, ବିଷ୍ଣୁ ମହେଶ୍ୱରଙ୍କୁ ନବଜାତ ଶିଶୁରେ ପରିଣତ କରିବା ସହ ମହାଲକ୍ଷ୍ମୀ, ପାର୍ବତୀ ଓ ବ୍ରହ୍ମାଣୀଙ୍କ ମନରେ ଥିବା ବଡ଼ିମାକୁ ଚୂର୍ଣ୍ଣ କରି ଦେଇଥିଲେ । ଶେଷକୁ ଏହି ମହାଦେବୀମାନେ ଅନସୂୟାଙ୍କ ଶରଣାପନ୍ନ ହୋଇଥିବା ଘଟଣା କିଏ ବା ନଜାଣେ ? ଏହିପରି ଆହୁରି ଅନେକ ନାରୀ ସତୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ଧନ୍ୟ ହୋଇଛନ୍ତି ? ଏତାଦୃଶ ମହୀୟସୀ ମହିଳାମାନଙ୍କ ବନ୍ଦନୀୟ ଚରିତ୍ର ସହିତ ଆମେ ଆଦୌ ତୁଳନୀୟ ନୋହୁ । ଅଥଚ ପ୍ରକାରାନ୍ତରେ ଏମାନଙ୍କୁ ଉପେକ୍ଷା କରାଯାଇ ଆମ୍ଭମାନଙ୍କୁ ପୁଣ୍ୟମୟୀ, ପାପ-ନାଶିନୀ ବୋଲି ଅଭିହିତ କରାଯିବାର ପ୍ରକୃତ କାରଣ ଏ ପର୍ଯ୍ୟନ୍ତ ମୋ ପକ୍ଷରେ ଅଜ୍ଞାତ ହୋଇ ରହି ଯାଇଛି ।

ବେଳେବେଳେ ଭାବେ- ଆମ୍ଭେମାନେ ସମାଜରେ ନିନ୍ଦିତ ହେବା କଥା । ବୋଧହୁଏ ଆମ୍ଭମାନଙ୍କର କୁକର୍ମକୁ ମନେ ପକାଇ ନିଜକୁ ସଂଯତ ରଖିବା ପାଇଁ ଏପରି ବ୍ୟବସ୍ଥା କରାଯାଇଛି ।

ବର୍ତ୍ତମାନ ଅଧିକ କିଛି ନକହି ଏହି ପାଞ୍ଚଜଣ ମହିଳାଙ୍କ ଜୀବନ କାହାଣୀ ଅତି ସଂକ୍ଷେପରେ ବର୍ଣ୍ଣନା କରିବି ଓ ବିଚାର ଆପଣଙ୍କ ଉପରେ ଛାଡ଼ି ଦେବି ।

**ଅହଲ୍ୟା–** ଅହଲ୍ୟା ମହର୍ଷି ଗୌତମଙ୍କ ଧର୍ମପତ୍ନୀ । ଅସାମାନ୍ୟ ଲାବଣ୍ୟ ସଂପନ୍ନା ଏକ ରୂପବତୀ ଯୁବତୀ । ବିବାହ ପରେ ସେ କନ୍ୟା-ସନ୍ତାନଟିଏ ପ୍ରସବ କରିଥିଲେ । ନାଁ ଥିଲା ତା'ର ଅଂଜନା ।

ଗୌତମ ଜଣେ ଉଗ୍ର ତପା ସନ୍ନ୍ୟାସୀ । ଆଶ୍ରମର ନୀତି ନିୟମ ଓ ଆଚାର ବ୍ୟବହାରକୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ପ୍ରତ୍ୟହ ହୋମ, ଯପ, ଧ୍ୟାନ ଓ ପ୍ରାଣାୟାମ ଆଦିରେ ତାଙ୍କର ଅଧିକାଂଶ ସମୟ ଅତିବାହିତ ହୋଇ ଯାଉଥିଲା । ତେଣୁ ଆଶ୍ରମ ମଧ୍ୟରେ ଅହଲ୍ୟା ଏକାନ୍ତ ନିଃସଙ୍ଗ ଜୀବନ ଯାପନ କରିବାକୁ ବାଧ୍ୟ ହେଉଥିଲେ । ବୟସ ଦୃଷ୍ଟିରୁ ତାଙ୍କୁ ଏ ପ୍ରକାର ଶୁଷ୍କ ଓ ନୀରସ ଜୀବନ ଶାନ୍ତି-ପ୍ରଦ ବୋଧ ହେଉନଥିଲା । ସ୍ୱାମୀଙ୍କ ସହିତ ଅନ୍ତରଙ୍ଗତା ଅଭାବରେ ସେ ଖୁବ୍ ଦୁଃଖିତା ଥିଲେ । ପୁନଶ୍ଚ ଋଷି ଗୌତମଙ୍କ ମସ୍ତକର ବହୁଳ ଜଟାଭାର, ଦୀର୍ଘ ଶ୍ମଶ୍ରୁଯୁକ୍ତ ମୁଖମଣ୍ଡଳ ଏବଂ ହୋମାଗ୍ନି ତାପିତ ରକ୍ତିମ ଶରୀର ଅହଲ୍ୟାଙ୍କ ଇପ୍ସିତ ପୁରୁଷ ନଥିଲା ।

ଦେବରାଜ ଇନ୍ଦ୍ର ଅନେକ ସମୟରେ ଆଶ୍ରମକୁ ଆସି ଅହଲ୍ୟାଙ୍କ ସହିତ ନାନା ଆଳାପ ଓ ଆଲୋଚନା କରନ୍ତି । ଗୌତମ ସ୍ୱୀୟ ନିଷ୍କପଟ ଉଦାରତା ଯୋଗୁଁ ଆଶ୍ରମରେ ଇନ୍ଦ୍ରଙ୍କ ବାରମ୍ବାର ଉପସ୍ଥିତିକୁ ଆଦୌ ସନ୍ଦେହ ଚକ୍ଷୁରେ ଦେଖୁ ନଥିଲେ । ଇନ୍ଦ୍ରଦେବଙ୍କ ସୌମ୍ୟରୂପକାନ୍ତି ଅହଲ୍ୟାଙ୍କ ଅବଚେତନ ମନରେ ଏକ ଦୁର୍ବାର ଇଚ୍ଛାର ସୂତ୍ରପାତ କଲା । ଅହଲ୍ୟାଙ୍କ ଯୌବନୋଦ୍ଦୀପ୍ତ ଅସାମାନ୍ୟ ରୂପକାନ୍ତି ଦେବରାଜ ଇନ୍ଦ୍ରଙ୍କ ମନରେ ମଧ୍ୟ ଅନୁରୂପ ବାସନାର ଉଦ୍ରେକ କଲା । କ୍ରମେ ଇନ୍ଦ୍ର ଓ ଅହଲ୍ୟା ପରସ୍ପରର ନିକଟବର୍ତ୍ତୀ ହେବାରେ ଲାଗିଲେ । ପବିତ୍ର ପ୍ରେମ ଘୃଣ୍ୟ କାମବାସନାରେ ରୂପାନ୍ତରିତ ହେଲା । ଇନ୍ଦ୍ର ଅହଲ୍ୟାଙ୍କୁ ମାତୃ-ମୂର୍ତ୍ତିର ପ୍ରତୀକ ରୂପେ ବିଚାର ନକରି ଏକ ପ୍ରେମିକାରୂପେ ଦେଖିବାରେ ଲାଗିଲେ ଓ ଧୀରେ ଧୀରେ ପଦ-ମର୍ଯ୍ୟାଦା ସହିତ ନିଜର ଦାୟିତ୍ୱ ମଧ୍ୟ ଭୁଲିଗଲେ । ଇନ୍ଦ୍ର ଅହଲ୍ୟାଙ୍କ ସହିତ ବାରବାର ମିଳିତ ହେବା ଘଟଣା କନ୍ୟା ଅଞ୍ଜନାକୁ ଅଛପା ରହିଲା ନାହିଁ । କହିବା ନିଷ୍ପ୍ରୟୋଜନ ଯେ କେବଳ ଇନ୍ଦ୍ର ନୁହନ୍ତି, ଅହଲ୍ୟା ସୂର୍ଯ୍ୟ ଦେବଙ୍କ ସହିତ ମଧ୍ୟ ପ୍ରଣୟ-ଲିପ୍ତ ହୋଇ ସନ୍ତାନବତୀ ହୋଇଥିଲେ । ମାତାଙ୍କ ଏ ନିନ୍ଦନୀୟ କାର୍ଯ୍ୟମାନ କନ୍ୟା ଅଞ୍ଜନା ନିଜ ଆଖିରେ ଦେଖି ନୀରବ ରହିବାକୁ ବାଧ୍ୟ ହୋଇଥିଲେ । ଏହା ଭିତରେ ଅହଲ୍ୟାଙ୍କର ଦୁଇଟି ଅତି ସୁନ୍ଦର ପୁତ୍ର-ସନ୍ତାନ ହୋଇ ସାରିଥିଲେ ।

ଦିନେ ଘଟଣା ଚକ୍ରରେ ପରିସ୍ଥିତି ଏପରି ହେଲା ଯେ ଅଞ୍ଜନା ନିଜ ପୂର୍ବ ସଂକଳ୍ପକୁ ଭୁଲି ପିତା ଗୌତମଙ୍କୁ କହିଲେ,- ''ଆପଣ ଦୁଇ ପୁଅଙ୍କୁ ବାତ୍ସଲ୍ୟର ଶିଖର ଦେଶରେ ବସାଇ ମୋତେ ହତାଦର କରୁଥିବାରୁ ମୁଁ ଅତ୍ୟନ୍ତ ଦୁଃଖିତ ଓ ମର୍ମାହତ । ଯେଉଁ ଦୁହିଁଙ୍କୁ ଆପଣ ଅପାର ସ୍ନେହ ଶ୍ରଦ୍ଧା ଦେଇ ମୋତେ ଉପେକ୍ଷା କରି ଚାଲିଛନ୍ତି, ସେମାନେ ଆପଣଙ୍କ ପୁତ୍ର ନୁହନ୍ତି'' । ପ୍ରଥମେ ଋଷି ଏହା ଏକ ବାଳିକା-ସୁଲଭ ଚପଳତା ଭାବିଥିଲେ ମଧ୍ୟ ପରେ ଏହାର ସତ୍ୟତା ପରୀକ୍ଷା କରିବାକୁ ଯାଇ କହିଲେ,- ''ଯଦି ଅଞ୍ଜନା ସତ୍ୟ କହିଥାଏ, ତେବେ ଏ ଦୁଇଟିଯାକ ପୁତ୍ର ମର୍କଟ ମୁଖ ବିଶିଷ୍ଟ ହୋଇ ଯାଆନ୍ତୁ ।'' ବାକ୍-ସିଦ୍ଧ ଋଷିଙ୍କ ବାକ୍ୟ ଅନ୍ୟଥା ହେବାର ନୁହେଁ । ପୁତ୍ର ଦୁଇଟି ସଙ୍ଗେ ସଙ୍ଗେ ବାନରରୂପ ହୋଇଗଲେ । ଗୌତମ ଅଞ୍ଜନାଙ୍କ ପ୍ରତି କରିଥିବା ହତାଦର ପାଇଁ ଖୁବ୍ ଦୁଃଖ ପ୍ରକାଶ କଲେ ଓ କନ୍ୟା ସହିତ ଆଶ୍ରମକୁ ଫେରି ଆସିଲେ । ବାଳୀ ଇନ୍ଦ୍ରଙ୍କ ପୁତ୍ର ଓ ସୁଗ୍ରୀବ ସୂର୍ଯ୍ୟତନୟ ବୋଲି ଜାଣିବା ପରେ ମହର୍ଷି ଅହଲ୍ୟାଙ୍କୁ ରୋଷ-କଷାୟିତ ନୟନରେ ଚାହିଁ କହିଲେ, ''ତୁମେ ଆଶ୍ରମର ପବିତ୍ରତା ପ୍ରତି ଦୃଷ୍ଟି ନଦେଇ ପାପ-ପ୍ରଣୟରେ ଲିପ୍ତ ହୋଇଛ । ଦେବରାଜ ଇନ୍ଦ୍ର ଓ ସୂର୍ଯ୍ୟ ମଧ୍ୟ ତୁମକୁ ଗୁରୁପତ୍ନୀ ଭାବରେ ସମ୍ମାନ ଦେବାକୁ ଭୁଲି ପାପ-ପ୍ରଣୟରେ ଲିପ୍ତ ହୋଇ ସ୍ୱୀୟ ଆସନର ଅମର୍ଯ୍ୟାଦା କରିଛନ୍ତି । ତେଣୁ ସେଦୁହେଁ ନିଶ୍ଚୟ ଦଣ୍ଡିତ ହେବେ । ନାରୀତ୍ୱ ଓ ପତ୍ନୀତ୍ୱକୁ ଉପେକ୍ଷା କରି ପର-ପୁରୁଷମାନଙ୍କ ସହିତ ପ୍ରେମ-ସଂପର୍କ ସ୍ଥାପନ କରିଥିବାରୁ ତୁମେ ଅଳ୍ପ ସମୟ ମଧ୍ୟରେ ଏକ ପାଷାଣ ବିଗ୍ରହରୂପେ ଆଶ୍ରମ ବାହାରେ ପଡ଼ିରହିବ । ଅଞ୍ଜନା ସତ୍ୟ-ପ୍ରକାଶ କରିନଥିଲେ ଏ ପାପ-ପ୍ରଣୟ ଅବାରିତ ଗତିରେ ଦୀର୍ଘ ଦିନ ଧରି ଚାଲିଥାନ୍ତା । ଆଜି ତା'ର ଅବସାନ ଘଟାଇ ମୁଁ ଆଶ୍ୱସ୍ତ ହେଲି ।

ଏ ସମସ୍ତ ଘଟଣା ପାଇଁ ଅଞ୍ଜନାହିଁ ଦାୟୀ ବୋଲି ଜାଣିବା ପରେ, ଅହଲ୍ୟାଙ୍କ କ୍ରୋଧ ବହୁଗୁଣିତ ହୋଇ ଆସିଲା । ସେ ହଠାତ୍ କହି ଉଠିଲେ,- ଅଞ୍ଜନା, ତୁ ମୋର ସୁନ୍ଦର ପୁତ୍ର ଦୁହିଁଙ୍କୁ ବାନର କରିଦେଲୁ ଓ ମୋତେ ପଥର କଲୁ । ମୁଁ ଅଭିଶାପ ଦେଉଛି ତୁ ମଧ୍ୟ ବାନର ପୁତ୍ର ଜନ୍ମ ଦେଇ ସନ୍ତାପିତ ହେବୁ ।'' ପରବର୍ତ୍ତୀ କାଳରେ ଅଞ୍ଜନା ମହାବୀର ହନୁମାନଙ୍କୁ ଜନ୍ମ ଦେଇଥିଲେ । ଅହଲ୍ୟାଙ୍କ ଦୁଇପୁତ୍ର ବାଳୀ ଓ ସୁଗ୍ରୀବ ଘଟଣାକ୍ରମେ କିଷ୍କିନ୍ଧ୍ୟାରେ ରହି ରାଜତ୍ୱ କରିଥିବା କଥା କାହାକୁ ଅବିଦିତ ନାହିଁ ।

ଅହଲ୍ୟାଙ୍କ ସଂପର୍କରେ ଆଉ ଅଧିକ କହିବା ନିଷ୍ପ୍ରୟୋଜନ । ବିଚାର ତ ଆପଣମାନଙ୍କ ହାତରେ । ସବୁ ଶୁଣିବାପରେ ଏଥର ଆପଣ କହନ୍ତୁ, ଅହଲ୍ୟାଙ୍କୁ ମହୀୟସୀ ମହିଳା ରୂପେ ମାନ୍ୟତା ଦେଇ ପାପ-କ୍ଷୟ ପାଇଁ ତାଙ୍କ ନାମ ଉଚ୍ଚାରଣ କରିବା କେତେଦୂର ଯଥାର୍ଥ ?

ଦ୍ରୌପଦୀ- ଏହି ହତଭାଗିନୀ ନାରୀଟି ସୃଷ୍ଟିର ଏକ ବ୍ୟତିକ୍ରମ । କହିବା ବାହୁଲ୍ୟ ଯେ ଦ୍ରୌପଦୀ ମୋର ପୁତ୍ରବଧୂ । ଖାସ୍ ମୋରି ପଦଟିଏ କଥା ପାଇଁ ଏହି ନିରପରାଧା ନାରୀ-ରତ୍ନଟି ସାରା ଜୀବନ ଅସହ୍ୟ ଦୁଃଖ ଯନ୍ତ୍ରଣାରେ ଦଗ୍ଧ ହୋଇଛି । ମୋତେ ଯେଉଁ ପ୍ରକାର ଦୋଷ ଦିଆଗଲା, ବାସ୍ତବରେ ସେଥିରେ ମୁଁ ଆଦୌ ଦାୟୀ ନଥିଲି । ସେ ସଂପର୍କରେ ମୁଁ ସବିଶେଷ ବର୍ଣ୍ଣନା କଲେ ଆପଣମାନେ ଦୋଷଗୁଣର ବିଚାର କରି ପାରିବେ ।

ଦ୍ରୌପଦୀ ନିଜେ ଯନ୍ତ୍ରଣାରେ ଜର୍ଜରିତ ହୋଇ ଜୀବନ ଅତିବାହିତ କରୁଥିଲେ ମଧ୍ୟ ଦିନେ ହେଲେ ମୁହଁ ଖୋଲି ପ୍ରତିବାଦ କରିନାହିଁ ସତ, ମାତ୍ର ମନଭିତରେ ସେ କିପରି କଷ୍ଟ ଅନୁଭବ କରୁଥିଲା, ନାରୀ ହୋଇ ମୁଁ ତାହା ଉତ୍ତମ ରୂପେ ହୃଦୟଙ୍ଗମ କରିଛି ।

ଆପଣମାନଙ୍କୁ ଅବିଦିତ ନୁହେଁ ଯେ ମୋ ପିଲାମାନେ ପ୍ରତିଦିନ ଭିକ୍ଷାଟନରେ ଯାଇ ପ୍ରାୟ ସନ୍ଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ସେ ଦିନ ପିଲାମାନେ ଘର ଭିତରକୁ ପଶୁ-ନପଶୁଣୁ ଉତ୍‌ଫୁଲ୍ଲିତ କଣ୍ଠରେ କହିଲେ, ''ମା', ଆମେ ଆଜି ଉତ୍ତମ ଭିକ୍ଷା ଲାଭ କରିଛୁ । ଭାବିଲି,- ଉତ୍ତମ, ମଧ୍ୟମ ଯାହାହେଉ ଭିକ୍ଷା ତ ଭିକ୍ଷା- ଏଥିରେ ଏତେ ଉତ୍ସୁକତାର କାରଣ କ'ଣ । ମୁଁ ଚାଣ୍ଡାଳୁଣୀ ଆଗପଛ ବିଚାର ଭୁଲି ସଙ୍ଗେ ସଙ୍ଗେ କହି ପକାଇଲି,- ''ଭଲ କଥା, ଯାହା ପାଇଛ ତାକୁ ସମସ୍ତେ ସମାନ ଭାଗରେ ଭୋଗକର ।'' ମାତ୍ର ପଦଟିଏ କଥା । ପରେ ପରେ ଏହାର ଗୁରୁତ୍ୱ ଏପରି ଆକାର ଧାରଣ କଲା ଯେ ତା'ର ସମାଧାନ ଅସମ୍ଭବ ହୋଇ ପଡ଼ିଲା । ପ୍ରକୃତ କଥା ଜାଣିବା ପରେ ମୁଁ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଲି । ପିଲାମାନେ କହିଲେ- ଗୁରୁଜନଙ୍କ ଆଦେଶ ଆମେ ନିଶ୍ଚୟ ପାଳନ କରିବୁ । ଦ୍ରୌପଦୀ ଆମ ପାଞ୍ଚ ଭାଇଙ୍କୁ ବିବାହ କରିବେ ।

ଦେଖିଲି,- ''ଭାଇମାନଙ୍କ ପଛରେ ପଦ୍ମଫୁଲ ସଦୃଶ ସତେଜ, ସୁନ୍ଦର ଏକ କମନୀୟ ମୁଖକାନ୍ତି । ପୃଥିବୀରେ ଏପରି ଅପୂର୍ବ ରୂପଶ୍ରୀ ଅସମ୍ଭବ ମନେ

ହେଲା । ଭାବିଲି ଏ ନିଶ୍ଚୟ ସ୍ୱର୍ଗଚ୍ୟୁତ ଏକ ଅମୂଲ୍ୟ ଦେବୀ ପ୍ରତିମା । ମାତ୍ର ମୋର ସେ ଭ୍ରମ ଦୂର ହେବାକୁ ଅଧିକ ସମୟ ଲାଗିନଥିଲା । ପିଲାମାନେ ହସି ହସି ଆମୂଳାନ୍ତ ବର୍ଣ୍ଣନା କରିଦେବା ପରେ ମୋ ମୁଣ୍ଡରେ ବଜ୍ରପାତର ଯନ୍ତ୍ରଣା ଅନୁଭୂତ ହେଲା । ଚିନ୍ତାକଲି, ''ଦ୍ରୌପଦୀ କ'ଣ ଭିକ୍ଷାଲବ୍ଧ ତଣ୍ଡୁଳ ? ପିଲାମାନେ ଏପରି କହିବାର କାରଣ କ'ଣ ?''

ବିରକ୍ତହୋଇ କହିଲି,- ''ତୁମେ ମୋତେ ଭୁଲ୍ ଧାରଣା ଦେଇଛ । କୌଣସି କାଳରେ କେହି ଭିକ୍ଷା ରୂପେ କନ୍ୟାରତ୍ନ ଲାଭ କରନ୍ତି ନାହିଁ । ଭିକ୍ଷାନ୍ନ ଭାବି ମୁଁ ଯାହା କହିଦେଲି ତାହା ମୋର ସାମୟିକ ଭ୍ରମ । ତାକୁ ଗଣ୍ଠିକରି ତୁମେମାନେ ଯାହାକୁ 'ଗୁରୁଣାମାଜ୍ଞା' ବୋଲି କହୁଛ ଓ ଯାହା କରିବାକୁ ମନସ୍ଥ କରିଛ ତାହା ଏକାନ୍ତ ଅଯୌକ୍ତିକ, ଅପ୍ରାସଙ୍ଗିକ ଓ ଅସାମାଜିକ ଅଟେ । ପୁରୁଷ ପକ୍ଷରେ ଯାହା ପ୍ରଶଂସନୀୟ ଓ୍ ପୌରୁଷର ପରିଚାୟକ ନାରୀ ପକ୍ଷରେ ତାହା ଏକାନ୍ତ ଦୂଷଣୀୟ ଅପକର୍ମ ରୂପେ ବିବେଚିତ ହୁଏ । ଜଣେ ସ୍ତ୍ରୀ ପାଞ୍ଚ ଜଣ ପୁରୁଷଙ୍କୁ ବିବାହ କରିବା ଆଦୌ ପ୍ରଶଂସନୀୟ କାର୍ଯ୍ୟ ହେବ ନାହିଁ । ଏଇ ମୁହୂର୍ତ୍ତରୁ ସେ ପ୍ରକାର ଚିନ୍ତା ଦୂର କରିଦିଅ । ଶୁଣ, ମୋର ଯେଉଁପୁତ୍ର ଅସାମାନ୍ୟ ବୀରତ୍ୱ ପ୍ରଦର୍ଶନ କରି ଏ ଅମୂଲ୍ୟ-ରତ୍ନ ଲାଭ କରିଛି, ସେହି ପୁତ୍ର ହିଁ ସେ ରତ୍ନର ଏକମାତ୍ର ଅଧିକାରୀ । ଅର୍ଜ୍ଜୁନ ବ୍ୟତୀତ ଦ୍ରୌପଦୀ ଉପରେ ଆଉ କାହାର ଅଧିକାର ରହିବା ଅନ୍ୟାୟ, ଅସଙ୍ଗତ ତଥା ଅସାମାଜିକ ହେବ ।''

ଆଶ୍ଚର୍ଯ୍ୟର କଥା,- ନିଜେ ଅର୍ଜ୍ଜୁନ ହିଁ ପ୍ରଥମେ ମୋ କଥାରେ ପ୍ରତିବାଦ କରି କହିଲା,- ''ନାଁ ମା' ତାହା ଆଉ କଦାପି ସମ୍ଭବ ନୁହେଁ । ଆମେ ଆମ ଜନନୀଙ୍କ ଆଦେଶକୁ ଅବମାନନା କରି ପାପ-ଭାଗୀ ହେବୁ ନାହିଁ । କୃଷ୍ଣା ଆମ ପାଞ୍ଚଭାଇଙ୍କୁ ନିଶ୍ଚୟ ବିବାହ କରିବେ । ଅନ୍ୟ ଚାରି ପୁଅ କିଛି ହେଲେ ନକହିବାରୁ ଏଥିରେ ସେମାନଙ୍କର ପ୍ରଚ୍ଛନ୍ନ ସମ୍ମତି ତଥା ଏକାନ୍ତ ଆଗ୍ରହ ଥିବା କଥା ମୋତେ ଆଉ ଅଛପା ରହିଲା ନାହିଁ ।

ବହୁ ବାଧା, ବହୁ ପ୍ରତିବାଦକୁ ଭ୍ରୂକ୍ଷେପ ନକରି ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଗଲା । ଦ୍ରୌପଦୀ ହେଲେ ପଞ୍ଚ-ପାଣ୍ଡବଙ୍କ ଧର୍ମପତ୍ନୀ । ବିଚାରୀ ଦ୍ରୌପଦୀ ନିଜ-ହୃଦୟର ସମସ୍ତ କୋହ, ସମସ୍ତ ଆବେଗକୁ ଚାପି ରଖିବାକୁ ବାଧ୍ୟ ହୋଇଥିଲା । ନିଜକୁ ସମାନ ପାଞ୍ଚ ଭାଗ କରି ଜୀବନ ବିତାଇବା ତା' ପକ୍ଷରେ

ଏକ ପ୍ରଶ୍ନବାଚୀ ଓ ବିଷମ ପରୀକ୍ଷା ରୂପେ ଦେଖାଦେଲା । ସେ ଏକାଧାରରେ ପତ୍ନୀ, ଭ୍ରାତୃବଧୂ ଓ ଭାଉଜ ଭୂମିକାରେ ଅବତୀର୍ଣ୍ଣ ହୋଇ କି ପ୍ରକାର ମାନସିକ ଯନ୍ତ୍ରଣାରେ ପ୍ରତି-ନିୟତ ଦଗ୍ଧ ହେବ ତାହା କଳ୍ପନାତୀତ ହୋଇ ପଡ଼ିଲା ।

ଦ୍ରୌପଦୀର ତ୍ୟାଗ ଅସୀମ । ପାଞ୍ଚପତିଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ଜୀବନକୁ ବାଜି ଲଗାଇ ଦେଇଛି । ଅତ୍ୟନ୍ତ ନିଷ୍ଠା ଓ ସାଧନା ଦ୍ୱାରା ସେ ଯାହା କରି ପାରିଛି ତାହା ଅନ୍ୟ ଯେ କୌଣସି ନାରୀ ପକ୍ଷରେ ଅସମ୍ଭବ । ଦ୍ରୌପଦୀର ଜୀବନକାଳ ଖଣ୍ଡାଧାରରେ ଚାଲିବା ସହିତ ତୁଳନା କରାଯାଇ ପାରେ । ମାତ୍ର ଆମ ସମାଜର ଦୃଷ୍ଟି ଭିନ୍ନ । ଚିରାଚରିତ ପରମ୍ପରାର ଉଲ୍ଲଙ୍ଘନ ବା ବ୍ୟତିକ୍ରମ ସମାଜ ସହ୍ୟ କରିପାରେ ନାହିଁ । ବରଂ ବିଦ୍ରୋହ ଘୋଷଣା କରିଦିଏ । ଦ୍ରୌପଦୀ ଏଥିରୁ ବାଦ୍ ଯାଇନଥିଲା । ଯେଉଁ ସମାଜ ପୁରୁଷର ବହୁ ପତ୍ନୀତ୍ୱକୁ ମାନ୍ୟତା ଦେଇଥାଏ, ସେଇ ସମାଜ ନାରୀର ସାମାନ୍ୟତମ ତ୍ରୁଟିକୁ କ୍ଷମା କରିବାକୁ ପ୍ରସ୍ତୁତ ହୁଏ ନାହିଁ । ପୁନଶ୍ଚ ରାଜା ମହାରାଜାଙ୍କ କଥାତ ''ରାଜାନୋବହୁ ବଲ୍ଲଭା'' ରେ ଗୌରବାନ୍ୱିତ । ସାଧାରଣ ଲୋକଙ୍କ କଥା ଦୂରେ ଥାଉ । ଦୁର୍ଯ୍ୟୋଧନର ଦ୍ରୌପଦୀ ମାତୃ-ସମା । ମାତ୍ର କୁରୁସଭା ତଳେ ସେ ଦ୍ରୌପଦୀଙ୍କୁ ବହୁ ପୁରୁଷ ସଂଭୁକ୍ତା ଗଣିକା ବୋଲି ତାଚ୍ଛଲ୍ୟ କରିବାକୁ ପଛେଇ ନଥିଲା ।

କାୟମନୋବାକ୍ୟରେ ଏକ ପତିବ୍ରତ ନାରୀର ମାନ, ସମ୍ମାନ ଓ ସତୀତ୍ୱର ପରିଚାୟକ । ପୁନଶ୍ଚ ପଞ୍ଚସ୍ୱାମୀଙ୍କ ମଧ୍ୟରେ ଅର୍ଜୁନଙ୍କ ପ୍ରତି ଦ୍ରୌପଦୀଙ୍କର ଅଧିକ ଦୁର୍ବଳତା ଥିବା କଥା ଶୁଣା ଯାଇଥିଲା । କେହି କେହି ଅସହିଷ୍ଣୁ ବ୍ୟକ୍ତି ଶ୍ରୀକୃଷ୍ଣ ଓ କର୍ଣ୍ଣଙ୍କ ପ୍ରତି ଦ୍ରୌପଦୀ ଆକୃଷ୍ଟ ଥିବା ସଂପର୍କରେ ନାନାକଥା କହିବାର ଦୁଃସାହସ ମଧ୍ୟ କରିଛନ୍ତି । ପୁନଶ୍ଚ ସ୍ୱର୍ଗାରୋହଣ ସମୟରେ ସର୍ବପ୍ରଥମେ ଦ୍ରୌପଦୀଙ୍କ ପତନ ହେବାରେ ଯୁଧିଷ୍ଠିର ଯେଉଁ ମନ୍ତବ୍ୟ ଦେଇଥିଲେ ତାହା ଏକାନ୍ତ ପ୍ରଣିଧାନ ଯୋଗ୍ୟ । ସେ ଦୃଷ୍ଟିରୁ ଦ୍ରୌପଦୀଙ୍କୁ ପ୍ରାତଃ ସ୍ମରଣୀୟାର ମାନ୍ୟତା ପ୍ରଦାନ କରାଯିବା ଯଥାର୍ଥ କି ନୁହେଁ ତା'ର ବିଚାର ଆପଣଙ୍କ ଉପରେ ନ୍ୟସ୍ତ ।

ଯେଉଁ ବିଶେଷ ଘଟଣା ପାଇଁ ମୁଁ ନିଜକୁ ଅପରାଧୀ କରିଥିଲି ଦ୍ରୌପଦୀ ପ୍ରକାଶ୍ୟରେ ନହେଲେ ମଧ୍ୟ ମନ ଭିତରେ ସେକଥା ଚିନ୍ତା କରିଥିବ ନିଶ୍ଚୟ । ଆଦୌ ଦୋଷ ନ କରି ମୁଁ ସବୁଦିନ ପାଇଁ ତା' ପାଖରେ ଦୋଷୀ ହୋଇ ରହିଗଲି ।

ଏବେ ଦ୍ରୌପଦୀଙ୍କ ପଞ୍ଚପତି ଗ୍ରହଣର ଅସଲ କାରଣମାନ ମୁଁ ବର୍ଣ୍ଣନା

କରୁଛି । ଏ ସବୁ ନିରାଟ ସତ୍ୟ ସବୁଦିନ ପାଇଁ ଅପ୍ରକାଶ୍ୟ ହୋଇ ରହିଗଲା । ଦ୍ରୌପଦୀଙ୍କ ସ୍ୱୟଂବର ବେଳକୁ କୌରବ ଓ ପାଣ୍ଡବ ମାନଙ୍କ ବିବାଦ ଚରମ ସୀମାରେ ପହଞ୍ଚି ସାରିଥାଏ । ଲକ୍ଷ୍ୟଭେଦରେ ଅର୍ଜୁନଙ୍କ ସାଫଲ୍ୟ କୌରବମାନଙ୍କ ଅନ୍ତର୍ଦାହର ମୁଖ୍ୟକାରଣ ହୋଇ ଉଠିଲା । ବିଶେଷତଃ ଦ୍ରୌପଦୀ କର୍ଣ୍ଣଙ୍କୁ ସୂତପୁତ୍ର କହିବା, କୌରବ ମାନଙ୍କ କ୍ରୋଧାଗ୍ନିରେ ଘୃତାହୁତି ପରି ହୋଇଉଠିଲା । କୌରବମାନେ ପାଣ୍ଡବମାନଙ୍କୁ ଧରାପୃଷ୍ଠରୁ ସଂପୂର୍ଣ୍ଣ ନିଶ୍ଚିହ୍ନ କରିଦେବା ପାଇଁ କୃତ-ସଂକଳ୍ପ ହୋଇଥିଲେ ।

ସେହି ସମୟରେ କୃଷ୍ଣା ସମଗ୍ର ଭାରତଭୂଖଣ୍ଡରେ ଅସାମାନ୍ୟ ରୂପବତୀ ଯୁବତୀ ଭାବରେ ଖ୍ୟାତି ଲାଭ କରିଥିଲେ । ତେଣୁ ସ୍ୱୟମ୍ବର ସଭାରେ ତାଙ୍କୁ ପାଇବା ଆଶାରେ ଅଗଣିତ ରାଜା ଓ ରାଜପୁତ୍ର ଉପସ୍ଥିତ ହୋଇଥିଲେ । ମାତ୍ର ଭାଗ୍ୟଲକ୍ଷ୍ମୀ କୌଣସି ରାଜା ବା ରାଜ-କୁମାରଙ୍କ ପ୍ରତି ପ୍ରସନ୍ନ ନହୋଇ ଛଦ୍ମବେଶୀ ଅର୍ଜୁନଙ୍କ ଆଡ଼କୁ କୃପାଦୃଷ୍ଟି ନିକ୍ଷେପ କରିଥିଲେ । ଫଳରେ ବିଫଳ ମନୋରଥ ରାଜା ଓ ରାଜପୁତ୍ରମାନେ ଅର୍ଜୁନଙ୍କୁ ଶତ୍ରୁଦୃଷ୍ଟିରେ ଦେଖିବା ସ୍ୱାଭାବିକ ହୋଇପଡ଼ିଲା । କୌରବମାନେ ପାଣ୍ଡବ ମାନଙ୍କର ଗୃହଶତ୍ରୁଥିଲେ । ଏବେ ବହୁ ରାଜନ୍ୟବର୍ଗ ମଧ୍ୟ ପାଣ୍ଡବମାନଙ୍କ ପ୍ରତି ଅସୂୟା-ଜର୍ଜରିତ ହୋଇ ଉଠିଲେ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ପାଣ୍ଡବମାନେ ଏକମନ ଏକପ୍ରାଣ ହୋଇ ରହିବା ଏକାନ୍ତ ଆବଶ୍ୟକ ହୋଇ ପଡ଼ିଲା । ଅର୍ଜୁନ ଏକାକୀ ଦ୍ରୌପଦୀଙ୍କୁ ବିବାହ କରିଥିଲେ ଅନ୍ୟ ଭାଇମାନେ ମାନସିକ ସ୍ତରରେ ଅଶାନ୍ତ ହୋଇ ଉଠିବା ସମ୍ଭାବନାକୁ ଅସ୍ୱୀକାର କରାଯାଇ ନପାରେ । ପୁନଶ୍ଚ କୃଷ୍ଣାଙ୍କ ଅପରୂପ ଲାବଣ୍ୟ ଭାଇମାନଙ୍କ ମନକୁ ଦୁର୍ବଳ କରି ଦେଇଥାଏ । ସେମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟିହେଲେ ତାହା ବିବାଦର ରୂପ ନେବ ଓ ପରସ୍ପର ମଧରେ ଥିବା ସ୍ନେହ, ସଦ୍‌ଭାବ ଓ ଭକ୍ତି ଶତ୍ରୁତାରେ ରୂପାନ୍ତରିତ ହୋଇ ଉଠିବ । ଶତ୍ରୁମାନେ ଏହାର ସୁଯୋଗ ନେବେ । ଭାଇମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଅକ୍ଷୁର୍ଣ୍ଣ ରହିଥିଲେ ମଧ ପ୍ରତ୍ୟେକଙ୍କର ପିତୃ ପରିଚୟ ଭିନ୍ନ ଥିଲା । ସାମାନ୍ୟ କାରଣରୁ ସେମାନଙ୍କ ମଧରେ ବିବାଦ ଉପୁଜି ପାରେ । ତେଣୁ ସବୁ ଭାଇଙ୍କ ମନକୁ ଗୋଟିଏ ସୂତାରେ ବାନ୍ଧି ରଖିବା ପାଇଁ ଦ୍ରୌପଦୀ ଏକମାତ୍ର ମାଧମ ଥିଲେ । ମୋର ପଦିଏ କଥାକୁ ଗଣ୍ଠିକରି ପିଲାମାନେ ସେମାନଙ୍କ ଗୋପନ ଇଚ୍ଛାକୁ ଚରିତାର୍ଥ କରି ସୁଖୀ ହେଲେ ।

ମୋ କଥାକୁ ଦୋଷଶୂନ୍ୟ କରିବା ପାଇଁ କହିଲି- ଦ୍ରୌପଦୀକୁ କଦାପି ଭିକ୍ଷାଲବ୍ଧ ବୋଲି କୁହାଯାଇ ନପାରେ । ନିଜର ଶକ୍ତି, ପରାକ୍ରମ ଓ ଅସାଧାରଣ ଅସ୍ତ୍ରଚାଳନା ବଳରେ ଯାହା ଲାଭ କରାଯାଏ, ତାକୁ ଭିକ୍ଷା ନ କହି ପୌରୁଷ ବୋଲି ଅଭିହିତ କରାଯାଏ । ପୁନଶ୍ଚ ସମସ୍ତେ ସମାନ ଭାବରେ ଭୋଗ କର ବୋଲି ଯାହା କହିଥିଲି, ତାହା ଆମ ପୂର୍ବ ନିଷ୍ପତ୍ତିର ବିରୁଦ୍ଧାଚରଣ କରେ । ଅର୍ଥାତ୍ ପ୍ରତ୍ୟହ ଭିକ୍ଷାଲବ୍ଧ ତଣ୍ଡୁଳରୁ ପ୍ରସ୍ତୁତ ଅନ୍ନର ଅର୍ଦ୍ଧେକ କେବଳ ଭୀମକୁ ଦିଆ ହୋଇ ଆସୁଥିଲା । ବର୍ତ୍ତମାନ ଯଦି କୃଷ୍ଣା ଭିକ୍ଷାଲବ୍ଧ ବୋଲି ଧରିନିଆଯାଏ, ତେବେ ଭୀମକୁ କିପରି ଅର୍ଦ୍ଧେକ ଦିଆଯିବ ? ଏ ସବୁର ଉତ୍ତର କୌଣସି ପୁଅ ଦେବାକୁ ଆଦୌ ଇଚ୍ଛା କଲେ ନାହିଁ । ପ୍ରଚ୍ଛନ୍ନରେ ସେମାନଙ୍କ ଉଦ୍ଦେଶ୍ୟ ପୂରଣ ଲାଗି ମୋ ମୁଣ୍ଡରେ ଅଠା ବୋଳି ନିଶ୍ଚିନ୍ତ ହୋଇ ଯାଇଥିଲେ ।

ସବୁ ସିନା ହେଲା, ମୁଁ କିନ୍ତୁ ଶାନ୍ତିରେ ରହି ପାରିଲି ନାହିଁ । ଜଣେ ସ୍ତ୍ରୀର ପାଞ୍ଚଜଣ ସ୍ୱାମୀ, ସେ କିପରି ସୁଖରେ ଦିନ କାଟିବ ? ଏଇ କଥା ମୋ ମନକୁ ବାରମ୍ବାର ଅସ୍ଥିର କରିବାରେ ଲାଗିଲା । ମୁଁ ନାନା ଆଶଙ୍କାରେ ଆନ୍ଦୋଳିତ ହେଉଥିଲି । ଏତିକି ବେଳେ ମହର୍ଷି ଦ୍ୱୈପାୟନ ଅକସ୍ମାତ ଆମ୍ଭମାନଙ୍କୁ ଦର୍ଶନ ଦେଲେ ।

ସମସ୍ତେ ତାଙ୍କୁ ଯଥୋପଯୁକ୍ତ ପ୍ରଣତି ନିବେଦନ କରିବା ପରେ ସେ ଆସନ ଗ୍ରହଣ କରି କହିଲେ,- ''ମୁଁ ତୁମ୍ଭମାନଙ୍କ ସମସ୍ୟା ସଂପର୍କରେ ଅବହିତ ଅଛି । ଯାହା ବିଧି ନିର୍ଦ୍ଦିଷ୍ଟ ଶତଚେଷ୍ଟା ସତ୍ତ୍ୱେ ତାହାର ପରିବର୍ତ୍ତନ ଅସମ୍ଭବ । ଭଗବାନ ଶଙ୍କରଙ୍କ ବର ପ୍ରଭାବରୁ ଦ୍ରୌପଦୀ ଏ ଜନ୍ମରେ ପଞ୍ଚପତି ବରଣ କରିବା କଥା ପୂର୍ବ ଜନ୍ମରୁ ସ୍ଥିର ହୋଇ ସାରିଛି, ତେଣୁ ଏଥିପାଇଁ କେହି କାହାକୁ ଦୋଷ ଦେବା ବା ଦାୟୀ କରିବା ନିତାନ୍ତ ନିରର୍ଥକ ଅଟେ ।

ଶୁଣ, ସେ ଅନେକ ଦିନ ତଳର କଥା- ଏକ ଅସାମାନ୍ୟା ରୂପବତୀ ଋଷିକନ୍ୟା ଦିବ୍ୟ-ସୁନ୍ଦର ଓ ସର୍ବଗୁଣ ସଂପନ୍ନ ପତି-ପ୍ରାପ୍ତି ନିମନ୍ତେ ଏକନିଷ୍ଠ ଭାବରେ ଶିବଙ୍କୁ ପ୍ରାର୍ଥନା କରିବାରେ ଲାଗିଲା । ପ୍ରଭୁ ଆଶୁତୋଷ କନ୍ୟାଟିର ଐକାନ୍ତିକ ଭକ୍ତି ଓ ଆତ୍ମ ନିବେଦନରେ ସନ୍ତୁଷ୍ଟ ହୋଇ ବରଦାନ ନିମନ୍ତେ ତା ଆଗରେ ଉପସ୍ଥିତ ହୋଇଗଲେ ।

ହଠାତ୍ ସମ୍ମୁଖରେ ସ୍ୱୟଂ ସଦାଶିବଙ୍କ ତେଜୋଦୀପ୍ତ ମୂର୍ତ୍ତିଦେଖି ସେ

ଆନନ୍ଦରେ ଆତ୍ମହରା ହୋଇ ଉଠିଲା । ଭକ୍ତି ଗଦ୍‌ଗଦ୍ କଣ୍ଠରେ ପ୍ରାର୍ଥନା କଲା ''ପ୍ରଭୁ, ସର୍ବଗୁଣ ସଂପନ୍ନ, ଦିବ୍ୟ ସୁନ୍ଦର ପୁରୁଷ ମୋର ପତି ହୁଅନ୍ତୁ ।'' ସେ ଏପରି ଭାବ ବିହ୍ୱଳ ହୋଇ ଯାଇଥିଲା ଯେ, ସେଇ ଏକପ୍ରକାର ପ୍ରାର୍ଥନାକୁ ଥରଥର କରି ପାଞ୍ଚଥର ଉଚ୍ଚାରଣ କରିପକାଇଲା ।

ଶିବ କହିଲେ,- ''ତୁମର ମନୋବାଞ୍ଛା ନିଶ୍ଚୟ ପୂର୍ଣ୍ଣ ହେବ । କିନ୍ତୁ ତୁମେ ସର୍ବଗୁଣ ସଂପନ୍ନ ମହାଧନୁର୍ଦ୍ଧର ଓ ଦିବ୍ୟ ସୁନ୍ଦର ପାଞ୍ଚଗୋଟି ପତି ପ୍ରାପ୍ତ ହେବ । ଋଷି କନ୍ୟାର ମୋହ ଭଙ୍ଗ ହେଲା । ଅଜ୍ଞାନତା ବଶତଃ ସେ ଯେଉଁ ବର ଲାଭ କଲା, ତାହା ଅଭିଶାପଠାରୁ ବଳି ପଡ଼ିଲା । ଗୋଟିଏ ସ୍ତ୍ରୀର ଏକାଧିକ ପତି ହେବା ଘୋର ଦୂଷଣୀୟ । ସେ ମଥାପିଟି ବାରମ୍ବାର ଅନୁନୟ କରି କହିଲା- ''ପ୍ରଭୁ ! ମୋ ଅପରାଧ ମାର୍ଜନା କରି ମୋତେ ଗୋଟିଏ ମାତ୍ର ପୁରୁଷକୁ ପତିରୂପେ ପାଇବାର ବର ପ୍ରଦାନ କରନ୍ତୁ ।''

ସଦାଶିବ କହିଲେ-'' ଗୋଟିଏ କଥାକୁ ଥର ଥର କରି ପାଞ୍ଚଥର କହିଥିବାରୁ ତୁମେ ନିଶ୍ଚୟ ପାଞ୍ଚ ପତି ଲାଭ କରିବ । ଏହା ଅପରିବର୍ତ୍ତନୀୟ ଅଟେ ।

''ପଞ୍ଚତେ ପତୟୋ ଭଦ୍ରେ
ଭବିଷ୍ୟନ୍ତୀତି ଭାରତାଃ -''

ଦ୍ରୌପଦୀ ହେଉଛନ୍ତି ସେହି ଋଷି କନ୍ୟା । ତୁମ୍ଭମାନଙ୍କର ସନ୍ଦେହ ମୋଚନ ପାଇଁ ମୁଁ ପୂର୍ବର ସମସ୍ତ-ବୃତ୍ତାନ୍ତ ବର୍ଣ୍ଣନ କଲି । ଏଥର ମନରୁ ସବୁ ଆଶଙ୍କା ଦୂର କରି ଶାନ୍ତିରେ ଅବସ୍ଥାନ କର ।'' ସମସ୍ତେ ନୀରବ ରହିଲେ । ବ୍ୟାସଙ୍କ କଥା ଉପରେ କିଏ ବା କ'ଣ କହି ପାରିବ ? ମାତ୍ର ସେତେବେଳର ଅବସ୍ଥା ଓ କୃଷ୍ଣାଙ୍କୁ ପାଞ୍ଚଭାଇ ବିବାହ କରିବାର ଅପରିହାର୍ଯ୍ୟ ଆବଶ୍ୟକତା କଥା ମୁଁ ଆଗରୁ କହି ସାରିଛି ।

ଦ୍ରୌପଦୀଙ୍କ ସମ୍ପର୍କରେ ଯାବତୀୟ କଥା ମୁଁ ନିଃସଙ୍କୋଚରେ ପ୍ରକାଶ କରିଛି । ସେ ମହାପୁଣ୍ୟବତୀ ଓ ପ୍ରାତଃ ସ୍ମରଣୀୟାର ମାନ୍ୟତା ପାଇବା ନିଷ୍ପତ୍ତି ଆପଣ ମାନଙ୍କ ହାତରେ ।

**ତାରା-** ଦେବଗୁରୁ ବୃହସ୍ପତିଙ୍କ ପତ୍ନୀଙ୍କ ନାମ ତାରା । ପଞ୍ଚକନ୍ୟାଙ୍କ ମଧ୍ୟରେ ତାଙ୍କର ସ୍ଥାନ ଅଛି ବୋଲି ମୁଁ ପ୍ରଥମେ ବିଚାରି ଥିଲି । ମାତ୍ର ପରେ

ମୋର ସେ ଭ୍ରମ ଦୂର ହୋଇଗଲା । ପଞ୍ଚକନ୍ୟାମାନେ ସମସ୍ତେ ମର୍ତ୍ତ୍ୟ ବାସିନୀ । ଜଣଙ୍କୁ କାହିଁକି ସ୍ୱର୍ଗରାଜ୍ୟରୁ ନିଆଯିବ ? ସ୍ୱର୍ଗର ନୀତି, ନିୟମ, ଚାଲି, ଚଳନ ଆଦି ମର୍ତ୍ତ୍ୟଠାରୁ ଅନେକ ଦିଗରୁ ସ୍ୱତନ୍ତ୍ର । ଗୋଟିଏ ମାତ୍ର ଉଦାହରଣ ଦେଲେ ଆପଣମାନଙ୍କର ନିଶ୍ଚୟ ଧାରଣା ହୋଇ ପାରିବ । ବୃହସ୍ପତିଙ୍କ ନିକଟରେ ଚନ୍ଦ୍ର ବିଦ୍ୟାଶିକ୍ଷା କରୁଥିଲେ । ତେଣୁ ତାରାଦେବୀ ଚନ୍ଦ୍ରଙ୍କର ଗୁରୁପତ୍ନୀ ରୂପେ ସମ୍ମାନିତା ଏବଂ ତାରା ଚନ୍ଦ୍ରଙ୍କୁ ନିଜ ସନ୍ତାନ ଜ୍ଞାନରେ ସ୍ନେହ, ଶ୍ରଦ୍ଧା ଓ ଆଦର କରିବାହିଁ ଶାସ୍ତ୍ର-ସମ୍ମତ । ମାତ୍ର ତାରା ଚନ୍ଦ୍ରଙ୍କ ରୂପଲାବଣ୍ୟରେ ମୁଗ୍ଧ ହୋଇ ତାଙ୍କ ସହିତ ପ୍ରଣୟ-ପାଶରେ ଆବଦ୍ଧ ହୋଇପଡ଼ିଲେ । ଏହି ପାପ-ପ୍ରଣୟର ଫଳ ସ୍ୱରୂପ ତାରାଙ୍କ ଗର୍ଭରୁ ଜନ୍ମହେଲେ ଚନ୍ଦ୍ର-ସୁତ ବୁଧ । ଉକ୍ତ ଘଟଣା କାହାରି ମନରେ କିଛି ହେଲେ ରେଖାପାତ କରି ନଥିଲା । ବୃହସ୍ପତି ତାରାଙ୍କ ଏ କୁତ୍ସିତ ଆଚରଣ ପାଇଁ ଝଡ଼ ସୃଷ୍ଟି କରି ନାହାନ୍ତି କିମ୍ବା ତାରା ଗୁରୁତର ଅପରାଧ କରିଥିବା କାରଣରୁ ଦୁଃଖ ବା ପଶ୍ଚାତ୍ତାପ କରି ନାହାନ୍ତି । ଏପରି ଏକ ଘଟଣା ମର୍ତ୍ତ୍ୟରେ ହୋଇଥିଲେ ପ୍ରଳୟ ସୃଷ୍ଟି ହୋଇ ଯାଇଥାନ୍ତା । ତେଣୁ ସ୍ୱର୍ଗରାଜ୍ୟର ଚଳଣି ମର୍ତ୍ତ୍ୟର ଚଳଣି ଠାରୁ ବହୁ ଭାବରେ ସ୍ୱତନ୍ତ୍ର ମନେହୁଏ ।

ହଁ, ମର୍ତ୍ତ୍ୟର ତାରାଦେବୀଙ୍କ କଥା ମନେ ପଡ଼ିଲା । ସେ ହେଉଛନ୍ତି କିଷ୍କିନ୍ଧ୍ୟାଧିପତି ବାନର ରାଜ ବାଳୀଙ୍କ ଧର୍ମପତ୍ନୀ । ତାରା ଏକାନ୍ତ ପତିପରାୟଣା ଥିଲେ ଓ ସ୍ୱାମୀଙ୍କୁ ଦେବତା ଜ୍ଞାନରେ ଭକ୍ତି କରୁଥିଲେ । ପ୍ରଭୁ ରାମଚନ୍ଦ୍ରଙ୍କ ଶରାଘାତରେ ବାଳୀଙ୍କର ମୃତ୍ୟୁ ହେଲା । ମୃତ-ସ୍ୱାମୀଙ୍କୁ କୋଳରେ ଧରି ତାରା ଯେଉଁ ହୃଦୟ ବିଦାରକ ବିକଳ ବିଳାପ କରିଥିଲେ ତାହା ରାମାୟଣକାର ମହର୍ଷି ବାଲ୍ମୀକି ଅତି କରୁଣ ଭାବରେ ବର୍ଣ୍ଣନା କରିଛନ୍ତି । ପତିହନ୍ତା ରାମଚନ୍ଦ୍ରଙ୍କୁ ତାରାଙ୍କ ଭର୍ତ୍ସନା ମଧ୍ୟ ପ୍ରଣିଧାନ୍ୟ ଯୋଗ୍ୟ ।

ମାତ୍ର ପତିଗତ ପ୍ରାଣା ତାରା ଅଧିକ ଦିନ ମୃତସ୍ୱାମୀଙ୍କ ସ୍ମୃତିକୁ ହୃଦୟ ଭିତରେ ସାଇତି ରଖି ପାରିଲେ ନାହିଁ । ଅଳ୍ପଦିନ ବ୍ୟବଧାନ ପରେ ସେ ଦେବର ସୁଗ୍ରୀବଙ୍କ ପତ୍ନୀତ୍ୱ ସ୍ୱୀକାର ପୂର୍ବକ ପୁଣି ରାଜକୀୟ ଭୋଗ ବିଳାସରେ ନିଜକୁ ହଜାଇ ଦେଇଥିଲେ । ପତି ବିରହର ଦାରୁଣ ଯନ୍ତ୍ରଣା ତାଙ୍କୁ ଅଧିକକାଳ ଭୋଗକରିବାକୁ ପଡ଼ିନଥିଲା । ବାଳୀଙ୍କ ସ୍ମୃତି ଧୀରେ ଧୀରେ ତାଙ୍କ ମାନସପଟରୁ ଅପସାରିତ ହୋଇ ଯାଇଥିଲା ।

ପ୍ରଭୁ ରାମଚନ୍ଦ୍ରଙ୍କ ନିର୍ଦ୍ଦେଶରେ ତାରା ଦେବର ସୁଗ୍ରୀବଙ୍କ ଅଙ୍କ-ଶାୟିନୀ ହୋଇଥିଲେ ବୋଲି କୁହାଗଲେ ମଧ୍ୟ ତାରାଙ୍କ ସ୍ୱୀକୃତି ବ୍ୟତୀତ ଏହା କଦାପି ସମ୍ଭବପର ହୋଇ ନଥାନ୍ତା । ପତିବ୍ରତା ନାରୀ ସ୍ୱାମୀ-ବିଚ୍ଛେଦରେ ଏକାନ୍ତ ମ୍ରିୟମାଣ ହୋଇ ଅବଶିଷ୍ଟ ଜୀବନକୁ ସନ୍ନ୍ୟାସିନୀ ଭାବରେ କଟାଇବାରେ ଯେଉଁ ମହତ୍ତ୍ୱ ଅଛି ତାହା ବିଧବାର ପୁନର୍ବିବାହରେ ମଳିନ ଓ କାଳିମାମୟ ହୋଇଯାଏ ।

ତାରାଙ୍କ ଜୀବନ ବୃତ୍ତାନ୍ତ ଅବଗତ ହେବାପରେ ସେ ଯେ ଅନ୍ୟର ପାପ-କ୍ଷୟ କାରୀ ମହିୟସୀ ମହିଳାର ଗୌରବ ବିମଣ୍ଡିତା ଏକଥା ମୋ ସନ୍ଦେହର ବଳୟ ଅତିକ୍ରମ କରିପାରୁ ନାହିଁ । ତେଣୁ ସବିଶେଷ ବିଚାର ଓ ନିଷ୍ପତ୍ତି ଆପଣମାନଙ୍କ ଉପରେ ଛାଡ଼ି ଦେଲି ।

**ମନ୍ଦୋଦରୀ-** ଆଦିମ କାଳରୁ ନାରୀର ଅପୂର୍ବ ରୂପଶ୍ରୀହିଁ ବହୁ ହିଂସା, ଦ୍ୱେଷ, ଯୁଦ୍ଧ, ନରସଂହାର ଓ ରକ୍ତପାତ ପରି ଭୟାବହ ବିପର୍ଯ୍ୟୟର ମୂଳ ଉତ୍ସରୂପେ ଦେଖା ଦେଇଛି । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ରାଜ୍ୟ ରାଜ୍ୟ ମଧ୍ୟରେ ନାରୀର ଲୋଭନୀୟ ତନୁଶ୍ରୀକୁ କେନ୍ଦ୍ରକରି ପ୍ରଳୟ ସୃଷ୍ଟି ହୋଇ ଯାଇଛି । ବହୁ ଦୁର୍ଘଟଣା ଓ ରକ୍ତପାତ ମୂଳରେ ରହିଛି ନାରୀର ସୌନ୍ଦର୍ଯ୍ୟ । ସ୍ଥଳ ବିଶେଷରେ ନାରୀ ହୋଇଛି ଯାବତୀୟ ଅନର୍ଥର କେନ୍ଦ୍ରବିନ୍ଦୁ । ଏଥିରେ ବିଚାରି ନାରୀଟିର କୌଣସି ଦୋଷ ନଥାଇ ମଧ୍ୟ ସେ ନିନ୍ଦିତ ହୋଇଥାଏ । ବୋଧହୁଏ ଏହିସବୁ ଦୁର୍ଘଟଣା ଓ ଅନୁଭବକୁ କେନ୍ଦ୍ରକରି ପଣ୍ଡିତମାନେ ରୂପବତୀ ପତ୍ନୀକୁ ଶତ୍ରୁବୋଲି କହିବାକୁ ପଛେଇ ନାହାନ୍ତି । ଭାର୍ଯ୍ୟାଂ ରୂପବତୀ ଶତ୍ରୁ, ପୁତ୍ରଶତ୍ରୁକୁପଣ୍ଡିତଂ

ଗଭୀର ଭାବରେ ଚିନ୍ତାକଲେ ଜଣାଯାଏ, ସୌନ୍ଦର୍ଯ୍ୟ ମନୁଷ୍ୟକୃତ ନୁହେଁ । ସୁନ୍ଦର ବା କୁତ୍ସିତ କରି ଗଢ଼ିବା ସ୍ରଷ୍ଟାଙ୍କ ଅଧିକାର ଭୁକ୍ତ । ପରମେଶ୍ୱରଙ୍କ ଏହି ଅତୁଳନୀୟ ଦାନ ସ୍ଥଳ ବିଶେଷରେ ସର୍ବନାଶର ମୁଖ୍ୟ କାରଣ ରୂପେ ଦେଖାଦେବାରୁ ଏଥିପାଇଁ ନାରୀ ଓ ତା'ର ସୌନ୍ଦର୍ଯ୍ୟକୁ ଦାୟୀ କରାଯିବା ଯଥାର୍ଥ ନୁହେଁ । ତେବେ ପ୍ରଶ୍ନ ହୁଏ ସ୍ରଷ୍ଟାହିଁ ଏ ସବୁ ଅପକର୍ମ ପାଇଁ ଦାୟୀ ନିଶ୍ଚୟ । ମାତ୍ର ତା' ମଧ୍ୟ ଯଥାର୍ଥ ମନେହୁଏ ନାହିଁ । ସ୍ରଷ୍ଟାଙ୍କ କାର୍ଯ୍ୟ ସୃଷ୍ଟି କରିବା । ବିନାଶ ତାଙ୍କର ଉଦ୍ଦେଶ୍ୟ ନୁହେଁ । ସେ ଚିର-ମଙ୍ଗଳମୟ । ପ୍ରାଣୀର କଲ୍ୟାଣ ଚିନ୍ତା ହିଁ ତାଙ୍କର ଏକମାତ୍ର ଧ୍ୟେୟ । ତେବେ ଏ ସବୁ ଅଘଟଣ ପାଇଁ କାହାକୁ ଦାୟୀ କରାଯିବ ? ଉତ୍ତରରେ ଏତିକି କୁହାଯାଇ ପାରେ ଯେ ମଣିଷ ଭିତରେ ଲୁଚି-

ରହିଥିବା ଆଦିମ ପଶୁ ପ୍ରବୃତ୍ତି ଯେତେବେଳେ ଜାଗ୍ରତ ହୋଇ ଉଠେ, ସେତେବେଳେ ସେ ଈଶ୍ୱର ଦତ୍ତ ସମସ୍ତ ସଦ୍‌ବୁଦ୍ଧି ବିସ୍ମୃତ ହୋଇ ସଇତାନ ଭୂମିକାରେ ଅବତୀର୍ଣ୍ଣ ହୁଏ । ତେଣୁ ସଇତାନର କାର୍ଯ୍ୟ ଧ୍ୱଂସ ବ୍ୟତୀତ ଅନ୍ୟ କିଛି ହୋଇପାରେ ନାହିଁ ।

ପରମ ରୂପବତୀ ଅଲୋକ ସାମାନ୍ୟା ମନ୍ଦୋଦରୀଙ୍କ ଯୁବତୀ ସୁଲଭ ଅପୂର୍ବ ତନିମା କିପରି ଝଡ ସୃଷ୍ଟି କରିଥିଲା, ତାହା ସଂକ୍ଷେପରେ ବର୍ଣ୍ଣନା କରୁଛି ।

ରୂପ ଲାବଣ୍ୟର ଜ୍ୱଳନ୍ତ-ପ୍ରତୀକ ମନ୍ଦୋଦରୀ ଏକ ତାପସୀ କନ୍ୟା । ତ୍ରିପୁର ମୋହିନୀ ଅପ୍‌ସରା ମାନଙ୍କ ସୌନ୍ଦର୍ଯ୍ୟ ମନ୍ଦୋଦରୀଙ୍କ ତୁଳନାରେ ନିତାନ୍ତ ନିଷ୍ପ୍ରଭ ମନେହୁଏ ।

ଆଶ୍ରମରେ ଏପରି ଏକ ଅସାମାନ୍ୟା ରୂପବତୀ ଯୁବତୀକନ୍ୟାଙ୍କୁ ରଖି ଋଷି ସର୍ବଦା ନାନା ଆଶଙ୍କାରେ ଜର୍ଜରିତ ହେଉଥିଲେ । ବୟସ ବଢିବା ସଙ୍ଗେ ସଙ୍ଗେ ମନ୍ଦୋଦରୀଙ୍କ ରୂପର ଝଲକ ଅଧିକ ଦୀପ୍ତିମନ୍ତ ହୋଇ ଉଠିଲା । ଋଷିଙ୍କ ଚିନ୍ତା ଓ ହୃତ୍-ସ୍ପନ୍ଦନ ମଧ୍ୟ ତା' ସହିତ କ୍ଷିପ୍ରତର ଗତିରେ ବୃଦ୍ଧି ପାଇବାରେ ଲଗିଲା । ସେ ଆଶ୍ରମର କୌଣସି କାର୍ଯ୍ୟ ଶୃଙ୍ଖଳିତ ଭାବରେ କରି ପାରିଲେ ନାହିଁ ।

ଏହି ସମୟରେ ଏକ ଗୁରୁଦାୟିତ୍ୱ ତୁଲାଇବା ପାଇଁ ଋଷିଙ୍କର ଦୂରବର୍ତ୍ତୀ ସ୍ଥାନକୁ ଯିବା ଏକାନ୍ତ ଅପରିହାର୍ଯ୍ୟ ହୋଇ ପଡ଼ିଲା । ଆଶ୍ରମ ତ୍ୟାଗ କଲେ ମନ୍ଦୋଦରୀ ଏକାକିନୀ ହୋଇଯିବେ । ଆଶ୍ରମ ତ୍ୟାଗ ନକଲେ ଘୋର ଅସୁବିଧା ହେବା ନିଶ୍ଚିତ । ଏପରି ଉଭୟ ସଂକଟରେ ପଡ଼ି ଋଷି କର୍ତ୍ତବ୍ୟ ନିର୍ଦ୍ଧାରଣ କରି ପାରିଲେ ନାହିଁ । ସମଗ୍ର ରାତ୍ରିଟି କେବଳ ଭାବନାରେ ହିଁ କଟିଗଲା ।

ପରଦିନ ପ୍ରଭାତରେ ଋଷିଙ୍କୁ ଏକ ବୁଦ୍ଧି ଦେଖାଗଲା । ଅନତିଦୂରରେ ମହର୍ଷି ମାତଙ୍ଗଙ୍କ ଆଶ୍ରମ । ବହୁ ଶିଷ୍ୟ ପରିବୃତ୍ତ ଏହି ଆଶ୍ରମରେ ସେ ଅଧ୍ୟକ୍ଷର ଦାୟିତ୍ୱ ଗ୍ରହଣ କରିଥାନ୍ତି । ତାଙ୍କରି ଦାୟିତ୍ୱରେ କନ୍ୟାଟିକୁ ରଖିପାରିଲେ ସେ ନିଶ୍ଚିନ୍ତରେ ଗନ୍ତବ୍ୟସ୍ଥାନକୁ ଯାଇ ପାରନ୍ତେ । ଏହିପରି ଭାବି ସେ କନ୍ୟା ସହିତ ତାଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ନିଜର ଅସୁବିଧା ଜଣାଇ ଋଷି କନ୍ୟାଟିର ସାମୟିକ ଦାୟିତ୍ୱ ଗ୍ରହଣ କରିବା ପାଇଁ ମାତଙ୍ଗଙ୍କୁ ବାରମ୍ବାର ଅନୁରୋଧ ଜଣାଇଲେ । ମାତଙ୍ଗ ଅତି ଅମାୟିକ ଓ ସରଳ ପ୍ରକୃତିର ତପସ୍ୱୀ ଥିଲେ । ସେ ବିନା ଦ୍ୱିଧାରେ ଏ ପ୍ରସ୍ତାବ ଗ୍ରହଣ କରି କହିଲେ,- ''ଆପଣ ନିଶ୍ଚିନ୍ତରେ ଗନ୍ତବ୍ୟ ପଥରେ ଅଗ୍ରସର ହୁଅନ୍ତୁ । ଆପଣଙ୍କ କନ୍ୟା ମୋ ଦାୟିତ୍ୱରେ ରହିଲା । ପ୍ରତ୍ୟାବର୍ତ୍ତନ ସମୟରେ କନ୍ୟାଟିକୁ ସଙ୍ଗରେ ନେଇ ଆଶ୍ରମକୁ ଚାଲିଯିବେ । ଏହାର ସୁରକ୍ଷା ଦାୟିତ୍ୱ ମୁଁ ଗ୍ରହଣ କଲି ।''

ଋଷି ଆଶ୍ୱସ୍ତ ହେଲେ । ସତେ ଯେପରି ଏକ ବିରାଟ ପଥର ବୋଝ ତାଙ୍କ ମୁଣ୍ଡରୁ ଖସିଗଲା । ମାତଙ୍ଗଙ୍କ ଅନୁଗ୍ରହ ଓ ଉଦାରତାକୁ ସେ ପ୍ରଶଂସା ନକରି ରହିପାରିଲେ ନାହିଁ ।

ଆଶ୍ରମରେ ଅନେକ ସତୀର୍ଥ ଶିକ୍ଷାଲାଭ କରୁଥାନ୍ତି । ଧୀରେ ଧୀରେ ଅନ୍ତେବାସୀ ମାନଙ୍କ ସହିତ ମନ୍ଦୋଦରୀଙ୍କ ଆନ୍ତରିକତା ବୃଦ୍ଧି ପାଇବାରେ ଲାଗିଲା । ଶେଷକୁ ସେ ଜଣେ ଅନ୍ତେବାସୀଙ୍କୁ ଏକାନ୍ତ ଭାବରେ ଭଲ ପାଇ ବସିଲେ । ଦୁହିଁଙ୍କ ମଧ୍ୟରେ ଥିବା ଘନିଷ୍ଠତା କ୍ରମେ ପ୍ରେମର-ରୂପ ନେବାକୁ ଆରମ୍ଭ କଲା । ଅବସ୍ଥା ଏପରି ହେଲା ଯେ କେହି କାହାକୁ ଦଣ୍ଡେ ନଦେଖିଲେ ପାଗଳପରି ହୋଇ ଯାଉଥିଲେ । ଦିନକୁ ଦିନ ସେ ଦୁହେଁ ଆଶ୍ରମର ନୀତିନିୟମ ଓ ଶୃଙ୍ଖଳା ପ୍ରତି ଏକାନ୍ତ ଉଦାସୀନ ହୋଇ ପଡ଼ିଲେ ଓ ଅରଣ୍ୟ ଅଭ୍ୟନ୍ତରକୁ ଯାଇ ଗୋପନରେ ମିଳିତ ହେବାରେ ଲାଗିଲେ । ଆଶ୍ରମର କଠୋର ନୀତି ନିୟମ, ବ୍ରହ୍ମଚର୍ଯ୍ୟ ପାଳନ, ଯଜ୍ଞ, ଆସନ ଓ ପ୍ରାଣାୟାମ ଅଭ୍ୟାସ ଆଦି ସେ ଦୁହିଁଙ୍କୁ ଅତ୍ୟନ୍ତ ଶୁଷ୍କ ଓ ନୀରସ ବୋଧ ହେଲା । ପ୍ରଣୟୀ ଯୁବକଟି ଆଉ କେହି ନୁହନ୍ତି । ତାଙ୍କ ନାମ ବାଳୀ । ପରବର୍ତ୍ତୀ କାଳରେ ସେ କିଷ୍କିନ୍ଧ୍ୟାର ଅଧିପତି ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଏକାନ୍ତ ମିଳନର ଫଳ-ସ୍ୱରୂପ ମନ୍ଦୋଦରୀ ହେଲେ ଅନ୍ତଃସତ୍ୱା । ଏହା ଆଶ୍ରମ ନିୟମର ଉଲ୍ଲଙ୍ଘନ ଜାଣି ଉଭୟେ ଅତ୍ୟନ୍ତ ଚିନ୍ତାକୁଳ ହୋଇ ପଡ଼ିଲେ । ତାଙ୍କୁ କିଛି ବୁଦ୍ଧିବାଟ ଦେଖାଗଲା ନାହିଁ । ବହୁ ଚିନ୍ତାପରେ ପରସ୍ପର ବିବାହ ବନ୍ଧନରେ ଆବଦ୍ଧ ହେବାପାଇଁ ନିଷ୍ପତ୍ତି ଗ୍ରହଣ କଲେ ।

ଦିନେ ଲଙ୍କାଧିପତି ରାବଣ ମାତଙ୍ଗଙ୍କ ଆଶ୍ରମପଥ ଦେଇ ଯାଉଥିବା ବେଳେ ଅକସ୍ମାତ ତାଙ୍କ ଦୃଷ୍ଟି ଅପରୂପ ଲାବଣ୍ୟମୟୀ ମନ୍ଦୋଦରୀଙ୍କ ଉପରେ ପଡ଼ିଗଲା । ପ୍ରଥମ ଦର୍ଶନରେ ସେ ଏପରି ବିମୁଗ୍ଧ ହୋଇଗଲେ ଯେ ମନ୍ଦୋଦରୀଙ୍କ ଉପରୁ ଆଖି ଫେରାଇ ପାରିଲେ ନାହିଁ । ସଙ୍ଗେ ସଙ୍ଗେ ତାଙ୍କର ଅସୁର ପ୍ରକୃତି ଜାଗ୍ରତ ହୋଇ ଉଠିଲା । ସେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ମନ୍ଦୋଦରୀଙ୍କୁ ବଳପୂର୍ବକ ନେଇ ଯିବା ଉଦ୍ଦେଶ୍ୟରେ ଆଶ୍ରମ ଅଭ୍ୟନ୍ତରକୁ ଅଗ୍ରସର ହେଲେ । ତତ୍‌କ୍ଷଣାତ୍ ବାଳୀ ରାବଣର ଏ ହୀନ ଉଦ୍ୟମକୁ ପ୍ରତିହତ କରିବାକୁ ଯାଇ କହିଲେ,- ''ଏ ମୋର ବାଗ୍‌ଦତ୍ତା, ଆମେ ଦୁହେଁ ପରସ୍ପରକୁ ବିବାହ କରିବା ପାଇଁ ବଚନବଦ୍ଧ । ଅଯଥା ବିଶୃଙ୍ଖଳା ସୃଷ୍ଟି କରିବାକୁ ଆଗେଇଲେ ପରିଣତି ଭୟାବହ ହୋଇଉଠିବ, ସାବଧାନ ।''

ରାବଣ ଅଟ୍ଟହାସ୍ୟ କରି କହିଲା, "ରେ ଅର୍ବାଚୀନ ! କାହା ସହିତ କଥାବାର୍ତ୍ତା କରୁଛୁ ତୁ ବୋଧହୁଏ ଜାଣିନାହୁଁ , ମୁଁ ତ୍ରିପୁର ବିଜୟୀ ଲଙ୍କେଶ୍ୱର ରାବଣ । ସ୍ୱର୍ଗର ଦେବତାମାନେ ମୋର ଗୋତି-ଶ୍ରମିକ ପରି ସେବା କରୁଛନ୍ତି । ଏପର୍ଯ୍ୟନ୍ତ ମୋ ଇଚ୍ଛା ବିରୁଦ୍ଧରେ କେହି କିଛି କରିବାର ଦୁଃସାହସ କରି ନାହାନ୍ତି । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିପୁରରେ ମୋ ଆଗରେ ଦମ୍ଭଧରି ଠିଆ ହେବାକୁ କେହି ସାହସ କରନ୍ତି ନାହିଁ । ତୁ ବାମନ ହୋଇ ଚନ୍ଦ୍ରଧରିବାର ସ୍ୱପ୍ନ ଛାଡ଼ିଦେ । ଲଙ୍କାଧିପତି ରାବଣକୁ ପରିଣତି ସଚେତନ କରାଇବାର ଦୁଃସାହସକୁ ମୁଁ ପ୍ରଶଂସା କରୁଛି । ତୁରନ୍ତ ମୋ ସମ୍ମୁଖରୁ ଦୂର ହୋଇଯା । ଏ ଅମୂଲ୍ୟ ରତ୍ନ ରାଜ-ଅନ୍ତଃପୁର ମଣ୍ଡନ କରିବ । ଆଶ୍ରମ ପରି ଏକ ନୀରସ ପରିବେଶରେ ଜୀବନ ବିତାଇବା ପାଇଁ ଏହାର ଜନ୍ମ ନୁହେଁ । ଏତିକି କହି ରାବଣ ମନ୍ଦୋଦରୀଙ୍କ ଦକ୍ଷିଣ ହସ୍ତକୁ ଧରି ଟାଣି ନେବାକୁ ଲାଗିଲା । ବାଳୀ ମଧ୍ୟ ମନ୍ଦୋଦରୀଙ୍କ ବାମ ହସ୍ତ ଟାଣି ଧରି ରାବଣର ଉଦ୍ୟମକୁ ପ୍ରତିହତ କରିବାରେ ଲାଗିଲେ । ମଝିରେ ରହିଗଲେ ଅନ୍ତଃସତ୍ତ୍ୱା ମନ୍ଦୋଦରୀ । ଟଣାଟଣି ଭିଡ଼ାଭିଡ଼ିରେ ତାଙ୍କୁ ଅତ୍ୟନ୍ତ କଷ୍ଟହେଲା ଓ ସେ ପ୍ରସବ-ଯନ୍ତ୍ରଣାରେ ଅସ୍ଥିର ହୋଇ ଉଠିଲେ । ଅଳ୍ପ ସମୟ ପରେ ସେ ଏକ ପୁତ୍ର-ସନ୍ତାନ ପ୍ରସବ କଲେ । ଉପସ୍ଥିତ କ୍ଷେତ୍ରରେ ବାଳୀ ବା ରାବଣ କେହି କର୍ତ୍ତବ୍ୟ ନିର୍ଦ୍ଧାରଣ କରି ନପାରି ହତବାକ୍ ହୋଇ ରହିଗଲେ ।

ଆଶ୍ରମ ଅଭ୍ୟନ୍ତରରେ ଏ ପ୍ରକାର ସଂଘର୍ଷର ସମ୍ବାଦ ପାଇଁ ମାତଙ୍ଗ ତୁରନ୍ତ ଆସି ଘଟଣା ସ୍ଥଳରେ ଉପସ୍ଥିତ ହେଲେ । ସବିଶେଷ ଅବଗତ ହେବା ପରେ ସେ ନିଜକୁ କ୍ଷମା କରି ପାରିନଥିଲେ । ବାଳୀ ଓ ମନ୍ଦୋଦରୀଙ୍କ କାର୍ଯ୍ୟକୁ ସେ ବହୁତ ଘୃଣା କଲେ ସତ; ମାତ୍ର ଉପସ୍ଥିତ କ୍ଷେତ୍ରରେ ସମସ୍ୟାର ସମାଧାନକୁ ଅଗ୍ରାଧିକାର ଦେବାକୁ ଯାଇ କହିଲେ, "ରାବଣ ମନ୍ଦୋଦରୀକୁ ଗ୍ରହଣ କରିବେ ଓ ବାଳୀ ନବଜାତ ସନ୍ତାନଟିକୁ ଗ୍ରହଣ କରିବ । ଏହାହିଁ ଉପସ୍ଥିତ ସମସ୍ୟାର ସରଳସମାଧାନ । ଉଭୟେ ଏହାକୁ ମାନିନେଇ ଆଶ୍ରମର ଶାନ୍ତି ଅବ୍ୟାହତ ରଖିବା ଉଚିତ ।"

ତାହାହିଁ ହେଲା । ରାବଣ ମନ୍ଦୋଦରୀକୁ ଓ ବାଳୀ ନବଜାତକଟିକୁ ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ ଏହି ସନ୍ତାନଟି ବାଳୀପୁତ୍ର ମହାବୀର ଅଙ୍ଗଦ ନାମରେ ପରିଚିତ ହୋଇଥିଲା ।

ମନ୍ଦୋଦରୀ ଲଙ୍କେଶ ରାବଣର ପାଟରାଣୀ ହେବାର ଗୌରବ ଲାଭ କରିଥିଲେ । ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ଧର୍ମପତ୍ନୀ ସୀତାଙ୍କୁ ଅପହରଣ କରି ଆଣିଥିବା ଅପରାଧରେ ରାବଣ ମୃତ୍ୟୁ ବରଣ କଲା । ମନ୍ଦୋଦରୀ ବୈଧବ୍ୟ ଯନ୍ତ୍ରଣା ଭୋଗ କଲେ । ମାତ୍ର ଏ ଦୁଃଖ ତାଙ୍କୁ ଅଧିକକାଳ ସହ୍ୟ କରିବାକୁ ପଡ଼ିନଥିଲା । ସେ ତାରାଙ୍କ ପରି ରାବଣାନୁଜ ବିଭୀଷଣଙ୍କୁ ପୁନର୍ବିବାହ କରି ପୁଣି ଲଙ୍କାରେ ପାଟ ରାଣୀର ମାନ୍ୟତା ଲାଭ କରିଥିଲେ । ପୂର୍ବ ସ୍ୱାମୀଙ୍କ ସ୍ମୃତି ତାଙ୍କ ମାନସପଟରୁ ଧୀରେ ଧୀରେ ଅପସାରିତ ହୋଇ ଯାଇଥିଲା ।

ପ୍ରଥମରେ ବାଳୀ, ଦ୍ୱିତୀୟରେ ଲଙ୍କାପତି ରାବଣ, ତୃତୀୟରେ ଦେବର ବିଭୀଷଣଙ୍କ ଅଙ୍କଶାୟିନୀ ରମଣୀ ମନ୍ଦୋଦରୀଙ୍କ ନାମ ସ୍ମରଣ କଲେ ମହାପାତକ ବିନଷ୍ଟ ହେବାର ମହା-ବାକ୍ୟ ରଚିତ ହୋଇଛି । ମୁଁ ତ ନିର୍ଣ୍ଣାୟକ ନୁହେଁ । ସିଦ୍ଧାନ୍ତରେ ଉପନୀତ ହେବା ମୋ ଶକ୍ତିର ବହିର୍ଭୁତ । ସବୁ ଘଟଣା ଉତ୍ତମ ରୂପେ ହୃଦୟଙ୍ଗମ କରି ମନ୍ଦୋଦରୀଙ୍କ ନାରୀ-ସତ୍ତା, ସତୀତ୍ୱ ଓ ମହନୀୟତା ସଂପର୍କରେ ଆପଣମାନେ ନିଷ୍ପତ୍ତି ଗ୍ରହଣ କରନ୍ତୁ । ଏଥିରେ ମୋର ତିଳେମାତ୍ର ଆପତ୍ତି ନାହିଁ ।

**କୁନ୍ତୀ-** ଏଥର ମୁଁ ମୋ ନିଜ କଥା କହିବାକୁ ଆରମ୍ଭ କରିବି । ଯେଉଁ ପାଞ୍ଚଜଣଙ୍କ ନାମ ସ୍ମରଣ କଲେ ମହାପାପ ବିଦୂରିତ ହୁଏ, ସେମାନଙ୍କ ମଧ୍ୟରେ ମୋ ନାମ ମଧ୍ୟ ଅଛି । ମାତ୍ର ମୋ ଜୀବନର ଗତିପଥ ଅନ୍ୟ ମାନଙ୍କ ଠାରୁ ଭିନ୍ନ ଓ ଏକାନ୍ତ ବନ୍ଧୁର । ନିଜ କାହାଣୀ ବୋଲି ଲଜ୍ଜା ବା ସଂକୋଚ କରିବି ନାହିଁ । ଅନୁରୋଧ ଆପଣମାନେ ଧୈର୍ଯ୍ୟହରା ନହୋଇ ଶୁଣନ୍ତୁ ।

କୁନ୍ତଳ ରାଜ୍ୟକୁ ଦତ୍ତକ-କନ୍ୟା ଭାବରେ ଆସିଥିବା କଥା ଆଗରୁ କହିଛି । ସେଠାରେ ରହି ମୁଁ ବଡ଼ ହେଲି । ଅତ୍ୟନ୍ତ ସୁଖ ସୌଭାଗ୍ୟରେ ଦିନ ଗୁଡ଼ିକ ମୋର କଟି ଯାଉଥିଲା । କୁନ୍ତଳରେ କୁମାରୀ ଥିବା ଅବସ୍ଥାରେ ମୁଁ ଗର୍ଭବତୀ ହୋଇ ସନ୍ତାନର ଜନନୀ ହୋଇଛି । ଆତ୍ମ ସମ୍ମାନ, ରାଜପରିବାରର ମହତ୍ତ୍ୱ, ଲଜ୍ଜା ଓ ସର୍ବୋପରି ସମାଜର ରକ୍ତ-ଚକ୍ଷୁକୁ ଭୟ କରି ନବ-ଜାତ ଶିଶୁ ସନ୍ତାନଟିକୁ ପ୍ରବହମାନ ନଦୀ ସ୍ରୋତରେ ବିସର୍ଜନ କରି ଉଆସକୁ ଫେରିଆସିଛି, ଶୁଦ୍ଧପୂତ, ସତୀ, ସାଧ୍ୱୀ ରାଜ-ନନ୍ଦିନୀ ରୂପେ । ନାରୀ ଭାବରେ ନିଜକୁ ମୁଁ ଆଦୌ କ୍ଷମା କରି ପାରିନଥିଲି । ନାରୀ ତ ନୁହେଁ ଜଣେ ପିଶାଚିନୀ ବୋଲି ମନେକରି

ନିଜକୁ ବହୁତ ଘୃଣା କରିଛି । ମୋ ଜୀବନର ସେଇ ଅଶ୍ଳୀଳ କାହାଣୀକୁ ଅତ୍ୟନ୍ତ ସତର୍କତାର ସହିତ ସଂବୃତ କରିରଖିଥିଲି ।

ଯଥା ସମୟରେ ମୋର ବିବାହ ହେଲା । ମୁଁ ହସ୍ତିନା ନରେଶ ମହାରାଜ ପଣ୍ଡୁଙ୍କୁ ବିବାହ କରି ପାଟରାଣୀର ଗୌରବ ଅର୍ଜନ କଲି । ମାତ୍ର ଦୈବ ଯୋଗରୁ ମୁଁ ଆଜୀବନ ବନ୍ଧ୍ୟା ରହିବାକୁ ବାଧ୍ୟ ହେଲି । ଋଷି କିମନ୍ଦଙ୍କ କ୍ରୂର ଅଭିଶାପ ମୋ ଜୀବନକୁ ବ୍ୟସ୍ତ ବ୍ୟାକୁଳ କରି ପକାଇଲା । ଏହାର ସବିଶେଷ ବିବରଣୀ ମୁଁ ସମୟ କ୍ରମେ ବର୍ଣ୍ଣନା କରିବି ।

ସ୍ୱାମୀଙ୍କ ସହିତ ମିଳିତ ହୋଇ ସନ୍ତାନର ଜନନୀ ହେବାର ସୁଯୋଗ ମୋ ପକ୍ଷରେ ସ୍ୱପ୍ନ ହୋଇଗଲା । କୁଳରକ୍ଷା ପାଇଁ ସ୍ୱାମୀଙ୍କ ବ୍ୟଗ୍ରତା ଓ ବିଷର୍ଣ୍ଣ ବଦନ ମୋ ହୃଦୟରେ ଆଲୋଡ଼ନ ସୃଷ୍ଟି କରିବାରେ ଲାଗିଲା । କିଂକର୍ତ୍ତବ୍ୟ ଅବସ୍ଥାରେ ଆମେ ଦୁହେଁ ବୁଦ୍ଧିଶୂନ୍ୟ ହୋଇ ପଡ଼ିଲୁ ।

ଦିନପରେ ଦିନ ଯେତେ ଗଡ଼ି ଯାଉଥାଏ, ସ୍ୱାମୀଙ୍କର ଉତ୍କଣ୍ଠା ଓ ହତାଶା ସେହି ପରିମାଣରେ ବୃଦ୍ଧି ପାଇବାରେ ଲାଗିଥାଏ । ଶେଷକୁ ତାଙ୍କ ଧୈର୍ଯ୍ୟର ବନ୍ଧ ଦୁର୍ବଳ ହୋଇ ଭାଙ୍ଗି ପଡ଼ିଲା । ଅନନ୍ୟୋପାୟ ହୋଇ ସେ ମୋତେ ଅନ୍ୟ ପୁରୁଷଙ୍କ ସଂସର୍ଗରେ ସନ୍ତାନ ଉତ୍ପାଦନ ପାଇଁ ବାରମ୍ବାର ଅନୁରୋଧ କଲେ । ମୁଁ କୁଳରକ୍ଷା ପାଇଁ ସେଥିରେ ସମ୍ମତ ହୋଇ ତିନିଜଣ ଅନ୍ୟ ପୁରୁଷଙ୍କୁ ଦେହଦାନ କରି ତିନିଗୋଟି ପୁତ୍ର ସନ୍ତାନର ଜନନୀ ହୋଇଥିଲି । ସ୍ଥୂଳତଃ ମୁଁ ପାଞ୍ଚଜଣ ପୁରୁଷଙ୍କ ସହିତ ସଂପର୍କ ସ୍ଥାପନ କରି ପଞ୍ଚକଲ୍ୟାଣୀ ବୋଲାଇଛି । କୁମାରୀ ଜୀବନର ନିନ୍ଦନୀୟ ଘଟଣାକୁ ଗୋପନ ରଖି ମୁଁ ରାଜମହିଷୀ ଓ ରାଜମାତାର ଗୌରବ ବିମଣ୍ଡିତା ହୋଇ ପାରିଛି । ମୁଁ ମୋ ସ୍ୱାମୀ-ଦେବତାଙ୍କୁ ପ୍ରତାରିତ କରି ସମାଜ ଆଖିରେ ଧୂଳି ଦେବାକୁ ଚେଷ୍ଟା କରିଛି । ଖାଲି ମୁଁ ନୁହେଁ, ମୋ ପରିସ୍ଥିତିରେ ଅନ୍ୟ ଯେ କେହି ମଧ୍ୟ ଏହାହିଁ କରିଥାନ୍ତା । ନିନ୍ଦା, ଅପବାଦ ଓ ଭର୍ତ୍ସନାକୁ କେହି ଜାଣିଶୁଣି ଆମନ୍ତ୍ରଣ କରେ ନାହିଁ । ସତ୍ୟ ପ୍ରକାଶ କରିଦେଇଥିଲେ, ହୁଏତ ରାଜରାଣୀ ପରିବର୍ତ୍ତେ ମୁଁ ରାଜରାସ୍ତାର ଭିକାରୁଣୀ ହୋଇ ବୁଲିବା ସାର ହୋଇଥାନ୍ତା ।

ଆଶ୍ଚର୍ଯ୍ୟ ଲାଗେ ହସ୍ତିନା ରାଜବଂଶରେ ପରମ୍ପରା କ୍ରମେ ଏ ପ୍ରକାର ନିନ୍ଦନୀୟ କାର୍ଯ୍ୟ ଅବ୍ୟାହତ ରହି ଆସିଛି । ଆଗରୁ ମୋ ଶାଶୁଙ୍କ ଶାଶୁ

ସତ୍ୟବତୀଙ୍କ କଥା କହିଛି । ମୋ ଦୁଇଟିଯାକ ଶାଶୁ ଦେଢଶୁରଙ୍କ ସହିତ ଶାରିରୀକ ସଂପର୍କ ସ୍ଥାପନ କରି ପୁତ୍ରବତୀ ହୋଇଥିଲେ । ତାଙ୍କ ପରେ ମୋ ପାଳି ପଡ଼ିଲା । ଦୈବର ଘଟସୂତ୍ର ଯୋଗେ ମୁଁ ମଧ୍ୟ ମୋ ଶାଶୁ ଓ ଗୋସେଇଁ ଶାଶୁଙ୍କୁ ବଳି ପଡ଼ିଲି । ଏହା ଦୈବର ଅଲଙ୍ଘନୀୟ ଆଦେଶ ବ୍ୟତୀତ ଆଉ କ'ଣ ବା ହୋଇପାରେ ?

ଏଥର ମୋର ପ୍ରଥମ ଯୌବନର ବିଭିନ୍ନ ଘଟଣା ସଂପର୍କରେ କହିବାକୁ ଆରମ୍ଭ କରୁଛି । ଉଦାରଚେତା ମହାରାଜା କୁନ୍ତୀଭୋଜ ମୋର ଆନନ୍ଦ-ବର୍ଦ୍ଧନ ପାଇଁ ନାନା ପ୍ରକାର ସୁବ୍ୟବସ୍ଥା କରିଥାନ୍ତି । ବହୁ ବୟସୀ ମାନଙ୍କ ଗହଣରେ ମୋ ଦିନଗୁଡ଼ିକ ପାଣିପରି ବହି ଯାଉଥାଏ । ମୁଁ ରାଜ ଅନ୍ତଃପୁରର ପ୍ରାଚୁର୍ଯ୍ୟ ଭିତରେ ନିଜକୁ ହଜାଇ ଦେଇଥିଲି ।

ମହାରାଜା କୁନ୍ତୀଭୋଜ ଯେପରି ଉଦାର ସେହିପରି ଅତ୍ୟନ୍ତ ଅତିଥି ପରାୟଣ ମଧ୍ୟ ଥିଲେ । ସାଧୁ, ସନ୍ନ୍ୟାସୀ, ମୁନୀ ଓ ଋଷିମାନଙ୍କୁ ରାଜ-ଅତିଥି ଭାବରେ ଗ୍ରହଣ କରି ସେମାନଙ୍କର ଯଥୋପଯୁକ୍ତ ସତ୍କାର କରିବାକୁ ସେ ରାଜକାର୍ଯ୍ୟର ଏକ ମୁଖ୍ୟ ଅଙ୍ଗ ବୋଲି ବିଚାରୁ ଥିଲେ ।

ଉଆସ ମଧ୍ୟରେ ମୋର କିଛି ହେଲେ ଦାୟିତ୍ୱ ନଥାଏ । ସଖୀମାନଙ୍କ ଗହଣରେ ରଙ୍ଗ-ରସରେ ଲିପ୍ତ ହେବା, ଅରଣ୍ୟ ବିମଣ୍ଡିତ କୁନ୍ତଳ ରାଜ୍ୟର ପ୍ରାକୃତିକ ଶୋଭା ଉପଭୋଗ କରିବା, କାନନ ବିହାର ଓ ଜଳକ୍ରୀଡ଼ାରେ ମୋର ଅଧିକାଂଶ ସମୟ ଅତିବାହିତ ହୋଇ ଯାଉଥିଲା ।

ଦିନକର କଥା- ମହାରାଜା ମୋତେ ପାଖକୁ ଡାକି କହିଲେ, ''ପୁତ୍ରି, ଏଣିକି ତୁ ଆମ ପ୍ରାସାଦକୁ ଆସୁଥିବା ଅତିଥି ଓ ମୁନୀ ଋଷିମାନଙ୍କ ପରିଚର୍ଯ୍ୟା ଦାୟିତ୍ୱ ଗ୍ରହଣ କରିବୁ । ଏଥିରୁ ତୋତେ ଆନନ୍ଦ ମିଳିବା ସହିତ ବହୁ ମୂଲ୍ୟବାନ ଶିକ୍ଷା ମଧ୍ୟ ମିଳିବ । ତୋର ଭବିଷ୍ୟତ ଜୀବନ ସୁଖମୟ ହେବ ।''

ମୁଁ ଏଥିରେ ଅମତ ହେବାର କିଛି ନଥିଲେ ମଧ୍ୟ ମୁନୀ, ଋଷିଙ୍କ ପରିଚର୍ଯ୍ୟା କଥା ଶୁଣୁ ଶୁଣୁ ମୋ ଛାତି ଅଜଣା ଆଶଙ୍କାରେ ଥରି ଉଠିଲା । ମୁନୀ, ଋଷିମାନେ ବଡ଼ ବିଚିତ୍ର ପ୍ରକୃତିର । ପ୍ରତ୍ୟେକଙ୍କର ଖାଦ୍ୟ, ପେୟ ଠାରୁ ଆରମ୍ଭ କରି ଉପାସନା ପଦ୍ଧତି ଓ ସମୟ ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ । ମନଜାଣି ସତ୍କାର କରି ନପାରିଲେ ସେମାନେ ହଠାତ୍ ରୁଷ୍ଟ ହୋଇ ଉଠନ୍ତି ଏବଂ ଦୟା, ମାୟା,

କ୍ଷମା ଆଦି ଗୁଣକୁ ଭୁଲିଯାଇ ସାମାନ୍ୟ ଅପରାଧ ପାଇଁ ଅତି ଗୁରୁତର ଦଣ୍ଡଦେବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଦୈବାତ୍ କୌଣସି କାରଣରୁ ଏପରି ଘଟିଲେ ପିତାଙ୍କ ଅସମ୍ମାନ ହେବ ଓ ମୋର ସୁଖମୟ ଭବିଷ୍ୟତ ହୁଏତ ଦୁଃଖ ସାଗରରେ ଲୀନ ହୋଇଯିବ । ଆଉ ଆଗକୁ ନଭାବି ମୁଁ ସାହସର ସହିତ ଅତ୍ୟନ୍ତ ସାବଧାନ ହୋଇ ଏହି ଗୁରୁ-ଦାୟିତ୍ୱ ବହନ କଲି । କିଛି ଦିନ ଅଭ୍ୟାସପରେ ଆଉ ଅସୁବିଧା ହେଲା ନାହିଁ । ପରେ ପରେ ମୁଁ ନିୟମିତ ଭାବରେ ଦାୟିତ୍ୱ ତୁଲାଇ ପାରିଲି ।

ମୋର ବୟସ ବଢ଼ିବା ସହିତ ସମଗ୍ର ଶରୀର ବିକସିତ ହେବାକୁ ଲାଗିଲା । ତନୁ ମନରେ ଅପୂର୍ବ ପୁଲକ ଅନୁଭୂତ ହେଲା । ମୋର ଅଙ୍ଗଲତାର ସୌଷ୍ଠବ ଓ ନିତମ୍ବ-ଚୁମ୍ବୀ ଘନ କୁନ୍ତଳର ଶୋଭାକୁ ଲକ୍ଷ୍ୟ କରି ସଖୀମାନେ କେଜାଣି କେତେ କଥା କହିଯାଉଥାନ୍ତି । ମୁଁ ଲଜ୍ଜାବଶରୁ ମଥାନତ କରି ସେମାନଙ୍କ ହାସ ପରିହାସକୁ ଉପଭୋଗ କରୁଥାଏ । ବେଳେ ବେଳେ ମୃଦୁ ଭର୍ତ୍ସନାକରେ ସିନା, ଆଦୌ କ୍ରୋଧ ପ୍ରକାଶ କରେ ନାହିଁ ।

ପ୍ରସାଧନ ସମୟରେ ମୁଁ ମୋର ମୁଖଶ୍ରୀ ଅବଲୋକନ କରି ମୁଗ୍ଧ ହୋଇଯାଏ । ଚତୁରୀ ସଖୀମାନେ ନାନା ପ୍ରେମ କାହାଣୀର ଚଟୁଳ ବର୍ଣ୍ଣନା କରି ମୋ ମନକୁ ଅଧିକରୁ ଅଧିକ ଉଚ୍ଚାଟ କରିବାରେ ସହାୟତା କରୁଥାନ୍ତି । ଅଜ୍ଞାତରେ ମୋ ମନ ଗହନରେ ପ୍ରଣୟ-ବୀଜ ଅଙ୍କୁରିତ ହୋଇ ଧୀରେ ଧୀରେ ବୃଦ୍ଧି ପାଇବାରେ ଲାଗିଲା । ସଖୀମାନଙ୍କ ନିକଟରେ ମୋ ଦୁର୍ବଳତା ଅଛପା ରହିଲା ନାହିଁ । ଏତେ ଗୁଡ଼ିଏ ସଖୀଙ୍କ ଗହଣରେ ଥାଇ ମଧ୍ୟ ମୁଁ ନିଜକୁ ଏକାନ୍ତ ନିଃସଙ୍ଗ ମନେକଲି ।

ସଖୀମାନଙ୍କ ସହିତ ଖୁସିଗପ, ରଙ୍ଗରସ ଚାଲିଥିଲେ ମଧ ପ୍ରାସାଦକୁ ଆସୁଥିବା ମୁନୀଋଷି ମାନଙ୍କ ସେବା ଯତ୍ନରେ ମୁଁ ଏତେ ଟିକିଏ ବି ତ୍ରୁଟି କରୁ ନଥାଏ । ଅଭ୍ୟାସରେ ପଡ଼ିଯିବାରୁ ଅସୁବିଧା ମଧ୍ୟ ହେଉନଥାଏ । ଅତିଥି ସେବାରୁ ମୁଁ ଯଥେଷ୍ଟ ଶାନ୍ତି ଓ ଆନନ୍ଦ ଲାଭ କରୁଥାଏ ।

ଦିନକର କଥା- ହଠାତ୍ ଜଣେ ସନ୍ନ୍ୟାସୀ ପିତାଙ୍କୁ ସାକ୍ଷାତ କରିବା ଉଦ୍ଦେଶ୍ୟରେ ଉପସ୍ଥିତ ହୋଇଗଲେ । ଆଗରୁ ମୁଁ ବହୁ ମୁନୀ, ଋଷି, ସାଧୁ, ସନ୍ଥଙ୍କ ପରିଚର୍ଯ୍ୟା କରିଛି । ମାତ୍ର ଆଜି ଉପସ୍ଥିତ ହୋଇଥିବା ସନ୍ନ୍ୟାସୀ ଏକ ବ୍ୟତିକ୍ରମ ବୋଲି ମୋର ମନେ ହେଲା । ତାଙ୍କର ଉଜ୍ଜ୍ୱଳ ତାମ୍ରବର୍ଣ୍ଣର ଶରୀର ,

ପିଙ୍ଗଳବର୍ଣ୍ଣର ବିପୁଳ ଜଟାଭାର, ଏବଂ ନେତ୍ରଦ୍ୱୟରୁ ଉଦ୍‌ଗତ ଅପୂର୍ବ ତେଜ ମୋତେ ଭୟଭୀତ କରିପକାଇଲା । ଆଜି ପର୍ଯ୍ୟନ୍ତ କୁନ୍ତଳ ରାଜପ୍ରାସାଦକୁ ଆସିଥିବା ଅଗଣିତ ସାଧୁ, ସନ୍ନ୍ୟାସୀ ମାନଙ୍କ ଠାରୁ ଏ ମହାଭାଗ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ପରି ମନେହେଲା । ପରେ ଜାଣିଲି ଏ ମହାପୁରୁଷ ଉଗ୍ରତପା, କ୍ଷଣକୋପୀ ମହର୍ଷି ଦୁର୍ବାସା । ନାମ ଶୁଣୁ ଶୁଣୁ ମୋର ସର୍ବାଙ୍ଗ କମ୍ପିତ ହେବାରେ ଲାଗିଲା । ହୃତ୍‌ସ୍ପନ୍ଦନ ସ୍ଥିର ହୋଇ ଆସିଲା ପରି ଅନୁଭବ କଲି । ଅଜଣା ଆଶଙ୍କାରେ ମୁଁ ଅସ୍ଥିର ହୋଇ ପଡ଼ିଲି । ଆଦୌ ଦର୍ଶନ କରିନଥିଲେ ମଧ୍ୟ ଏ ମହାତପାଙ୍କ ବିଷୟରେ ଅନେକ କଥା ଶୁଣିଥିଲି । ସାମାନ୍ୟତମ ତ୍ରୁଟି ବିଚ୍ୟୁତି ମଧ୍ୟ ଦୁର୍ବାସା ସହ୍ୟ କରିପାରନ୍ତି ନାହିଁ । ଅଭିଶାପ ଦେବା ପୂର୍ବରୁ ସେ ଆଦୌ ଚିନ୍ତା ବି କରି ନଥାନ୍ତି । ମନୁଷ୍ୟଙ୍କ କଥା ଦୂରେ ଥାଉ ଦେବତାମାନେ ମଧ୍ୟ ଦୁର୍ବାସାଙ୍କ ନାମ ଶୁଣିଲା ମାତ୍ରେ ଭୟରେ ଥରହର ହୋଇ ଉଠନ୍ତି ।

ମହର୍ଷିଙ୍କ ପରିଚର୍ଯ୍ୟା ଦାୟିତ୍ୱ ନିଶ୍ଚୟ ମୋତେ ହିଁ ବହନ କରିବାକୁ ପଡିବ । ଏହି କଥା ଭାବି ମନ ମୋର ଅସ୍ଥିର ହେବାରେ ଲାଗିଲା । ଦୁର୍ବାସା ଅତୀତରେ ଅଭିଶାପ ଦେଇ ଜଣେ ନାରୀର ଭବିଷ୍ୟତକୁ କିପରି ମାଟିରେ ମିଶାଇ ଦେଇଥିଲେ, ସେକଥା ମନେ ପକାଇ ମୁଁ ଚମକି ପଡ଼ିଲି ।

ବିଚାରୀ ନିର୍ଦ୍ଦୋଷ ଶକୁନ୍ତଳା ଏହି ମହର୍ଷିଙ୍କ କୋପାନଳର ଶିକାର ହୋଇ ସାରାଜୀବନ ଜୀବନ୍ତ ଦଗ୍ଧ ହୋଇଥିଲେ । ସାମାନ୍ୟତମ ଚିନ୍ତା କରିଥିଲେ ଶକୁନ୍ତଳା ସଂପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ଉପଲବ୍ଧ ହୋଇଥାନ୍ତା । ମାତ୍ର ତାହା ସମ୍ଭବ ହୋଇ ପାରି ନଥିଲା । ଗୋଟିଏ ନିରୀହା ଅବଳାର ଜୀବନ ଜଳିପୋଡି ଛାରଖାର ହୋଇଗଲା ସିନା, ମହର୍ଷି ସେ ବିଷୟରେ କିଛି ହେଲେ ଚିନ୍ତା କରି ନଥିଲେ । ଯୌବନର ପ୍ରାରମ୍ଭରୁ ସନ୍ନ୍ୟାସିନୀର କଠୋର ଶୃଙ୍ଖଳାରେ ନିଜକୁ ଶୃଙ୍ଖଳିତ କରିଥିବା ଏହି ମହୀୟସୀ ମହିଳା ଆମ ବଂଶର ଆଦିମାତା ଦେବୀ ଶକୁନ୍ତଳା ।

ଷଡ଼ରିପୁ ଦମନ କରିଥିବା ବ୍ୟକ୍ତି ହିଁ ମହର୍ଷି ପଦବାଚ୍ୟ ହୁଅନ୍ତି । ମାତ୍ର ଅନେକ ମହର୍ଷି ପଞ୍ଚରିପୁ ଜୟ କରି କ୍ରୋଧ ରିପୁ ନିକଟରେ ଆତ୍ମ-ସମର୍ପଣ କରିଥିବା ପରି ମନେହୁଏ । କ୍ରୋଧ ପରି କୁତ୍ସିତ ରିପୁ ଦ୍ୱିତୀୟ ନାହିଁ । ଏହି ରିପୁର ଅଧୀନତା ସ୍ୱୀକାର କରିଥିବା ତାପସମାନେ ବେଳେ ବେଳେ ଅନ୍ୟର ସର୍ବନାଶ କରି ବସନ୍ତି । ମୋ ଜାଣିବାରେ ମହର୍ଷି ବଶିଷ୍ଠହିଁ ସମସ୍ତ ରିପୁଙ୍କ ଉପରେ ବିଜୟ ଲାଭ

କରିଥିଲେ। ବିଶ୍ୱାମିତ୍ର ବଶିଷ୍ଠଙ୍କର ଶତପୁତ୍ରଙ୍କୁ ଅତି ନିର୍ଦ୍ଦୟ ଭାବରେ ହତ୍ୟା କରିବା ପରେ ମଧ୍ୟ ବଶିଷ୍ଠ ଧୀର, ସ୍ଥିର ଓ ଅବିଚଳିତ ରହିଥିଲେ ଏବଂ ବିଶ୍ୱାମିତ୍ରଙ୍କ ପ୍ରତି ପୂର୍ବ ବାତ୍ସଲ୍ୟ ଅତୁଟ ରଖିଥିଲେ । ଧନ୍ୟ ମହର୍ଷି ବଶିଷ୍ଠ । ଧନ୍ୟ ତୁମର ମହନୀୟତା । ଆପଣହିଁ ପ୍ରକୃତ ମହର୍ଷି ପଦବାଚ୍ୟ ମହାପୁରୁଷ ।

ଋଷିମାନଙ୍କର ଅକାରଣ କ୍ରୋଧ କିପରି ଅନ୍ୟର ସର୍ବନାଶ କରିଥାଏ, ତାହାର ଅନ୍ୟ ଏକ ଉଦାହରଣ ନଦେଇ ରହିପାରୁ ନାହିଁ ।

ଋଷି ଜରତ୍କାରୁ ଜଣେ ଅସାଧାରଣ ତପସ୍ୱୀ ଭାବରେ ସର୍ବଜନ ବିଦିତ ଥିଲେ । ଏପରିକି ଚନ୍ଦ୍ର ସୂର୍ଯ୍ୟଙ୍କ ଗତିକୁ ସେ ନିଜ ନିୟନ୍ତ୍ରଣାଧୀନ କରି ରଖିଥିଲେ । ସମୟ କାହାକୁ ଅପେକ୍ଷା କରେ ନାହିଁ । ମାତ୍ର ଜରତ୍କାରୁଙ୍କୁ ସମୟ ଅପେକ୍ଷା କରିବାକୁ ବାଧ୍ୟ ହେଉଥିଲା । କୌଣସି କାରଣରୁ ଯଦି ସେ ମଧ୍ୟରାତ୍ରିରେ ସନ୍ଧ୍ୟା ଉପସନା କରନ୍ତି, ତେବେ ମଧ୍ୟରାତ୍ରି ମଧ୍ୟ ସନ୍ଧ୍ୟାରେ ପରିବର୍ତ୍ତିତ ହୋଇଯାଏ ।

ଏପରି ଏକ ଅସାଧାରଣ ଶକ୍ତିସମ୍ପନ୍ନ ମହାତପାଙ୍କୁ ପତିରୂପେ ବରଣ କଲେ ବାସୁକୀ ଭଗିନୀ ଜରତ୍କାରୀ । ଅତ୍ୟନ୍ତ ହର୍ଷ ଉଲ୍ଲାସରେ ପତି-ପତ୍ନୀ କାଳାତିପାତ କରୁଥାନ୍ତି । ଦିନେ ଋଷି କ୍ଳାନ୍ତ ହୋଇ ପତ୍ନୀଙ୍କ କୋଳରେ ମସ୍ତକ ରଖି ବିଶ୍ରାମ କଲେ । କ୍ରମେ ସନ୍ଧ୍ୟା ଉପାସନାର ସମୟ ଅତିକ୍ରାନ୍ତ ହେବାକୁ ବସିଲା । ତଥାପି ଋଷିଙ୍କ ନିଦ୍ରାଭଙ୍ଗ ହେଲା ନାହିଁ । ସନ୍ଧ୍ୟା ଉପାସନାର ସମୟ ଅତିକ୍ରାନ୍ତ ହୋଇଗଲେ ଋଷି ନିଶ୍ଚୟ ରୁଷ୍ଟ ହେବେ । ପୁନଶ୍ଚ ନିଦ୍ରିତର ନିଦ୍ରାଭଙ୍ଗ ମଧ୍ୟ ଏକ ଅପରାଧ । ଜରତ୍କାରୀ କର୍ତ୍ତବ୍ୟ ନିର୍ଦ୍ଧାରଣ କରି ପାରିଲେ ନାହିଁ । ଋଷିଙ୍କ ନିଦ୍ରାଭଙ୍ଗ ହେବାର କୌଣସି ଲକ୍ଷଣ ମଧ୍ୟ ପ୍ରକାଶ ପାଉନଥାଏ । ଏପରି ଉଭୟ ସଂକଟର ସମ୍ମୁଖୀନ ହୋଇ ସେ କିଛି ସ୍ଥିର କରି ପାରୁ ନଥାନ୍ତି । ରାତ୍ରି ହୋଇ ଗଲାଣି । ଉପାୟାନ୍ତର ନ ଦେଖି ସେ ସ୍ୱାମୀଙ୍କ ମସ୍ତକକୁ କୋଳରୁ ଉଠାଇ ନିଦ୍ରାଭଙ୍ଗ କରିବାର ଉପକ୍ରମ କଲେ ।

ବାସ୍, ଏତିକି କଥାରେ ଜରତ୍କାରୀଙ୍କ ସବୁକିଛି ଶେଷ ହୋଇଗଲା । ଋଷି ଅତି ରୁକ୍ଷ-କଣ୍ଠରେ କହିଲେ, ''ମୁଁ ତୁମର ସ୍ୱାମୀ, ମୋର ଆନନ୍ଦ ବର୍ଦ୍ଧନ ତୁମର କର୍ତ୍ତବ୍ୟ । ମୁଁ ଅତ୍ୟନ୍ତ କ୍ଳାନ୍ତ ହୋଇ ବିଶ୍ରାମ କରୁଥିବା ବେଳେ ତୁମେ ସେଥିରେ ବାଧା ଦେଇ ଗୁରୁତର ଅପ୍ରାଧ କରିଛ ।''

ଜରତ୍କାରୀ ଜଡ଼ ପ୍ରାୟ ହୋଇଗଲେ । ଭୟରେ ତାଙ୍କ ସର୍ବାଙ୍ଗ ଥରି ଉଠିଲା । ସେ କାକୁସ୍ଥ କଣ୍ଠରେ କହିଲେ, '' ପ୍ରଭୁ, ନିଦ୍ରାଭଙ୍ଗ କରିବା ବ୍ୟତୀତ ମୋର ଅନ୍ୟ ଉପାୟ ନଥିଲା । ସନ୍ଧ୍ୟା ଉତ୍ତୀର୍ଣ୍ଣ ହେବା ପରେ ମଧ୍ୟ ଆପଣଙ୍କ ନିଦ୍ରାଭଙ୍ଗ ହେଲା ନାହିଁ । ସନ୍ଧ୍ୟା ଉପାସନାର ସମୟ ଅତିବାହିତ ହୋଇଗଲେ ଆପଣ ମୋ ଉପରେ ବିରକ୍ତ ହୋଇଥାନ୍ତେ । ତେଣୁ ଅଗତ୍ୟା ମୁଁ ଆପଣଙ୍କ ସୁଖ ନିଦ୍ରାରେ ବାଧା ପହଞ୍ଚାଇଛି । ମୁଁ ଆପଣଙ୍କ ଧର୍ମପତ୍ନୀ । କୌଣସି ମନ୍ଦ ଉଦ୍ଦେଶ୍ୟ ରଖି ମୁଁ ଆପଣଙ୍କ ସୁଖଶାନ୍ତିରେ ବାଧା ଦେଇନାହିଁ । ମୋର ଏ ସାମାନ୍ୟ ଅପରାଧକୁ କ୍ଷମା କରି ଦିଅନ୍ତୁ ପ୍ରଭୁ !''

ଜଣେ ଅସହାୟ ଓ ଏକାନ୍ତ ଭୟକାତର ଅବଳାର କରୁଣ ନିବେଦନ ଋଷିଙ୍କ ପ୍ରାଣରେ ଆଦୌ ରେଖାପାତ କଲା ନାହିଁ । ତାଙ୍କ ରୋଷ ପ୍ରଶମିତ ହେବା ପରିବର୍ତ୍ତେ ବୃଦ୍ଧି ପ୍ରାପ୍ତ ହେବାରେ ଲାଗିଲା । ସେ କର୍କଶ କଣ୍ଠରେ କହିଲେ, ''ତୁମେ ମୋର ଧର୍ମପତ୍ନୀ ହେବାକୁ ନିତାନ୍ତ ଅଯୋଗ୍ୟ । ଯେଉଁ ସ୍ତ୍ରୀ ତା ସ୍ୱାମୀର ଶକ୍ତି, ସାଧନା ଓ ସିଦ୍ଧି ସଂପର୍କରେ ପୂର୍ଣ୍ଣ ଅବହିତ ନୁହେଁ, ସେ ଉପଯୁକ୍ତ ପତ୍ନୀର ମର୍ଯ୍ୟାଦା ଲାଭ କରିବାକୁ ହକ୍‌ଦାର ନୁହେଁ । ତୁମେ ଏ ପର୍ଯ୍ୟନ୍ତ ଜାଣିପାରିନାହଁ ଯେ ତୁମ ସ୍ୱାମୀଙ୍କୁ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଓ ସନ୍ଧ୍ୟା ସମସ୍ତେ ଅପେକ୍ଷା କରନ୍ତି । ଉପେକ୍ଷା ନୁହେଁ । ଏହାହିଁ ମୋ ସାଧନାର ସିଦ୍ଧି । ତେଣୁ ଏଇ ମୁହୂର୍ତ୍ତରୁ ତୁମ ସହିତ ମୋର ସମସ୍ତ ସଂପର୍କ ଛିନ୍ନ ହୋଇଗଲା ।''

ଜରତ୍କାରୀ ସାମାନ୍ୟ ନାରୀ ନଥିଲେ । ସେ ନାଗରାଜ ବାସୁକୀଙ୍କ ଭଗ୍ନୀ । ଇଚ୍ଛା କରିଥିଲେ ସେ ସ୍ୱାମୀଙ୍କ ଅନ୍ୟାୟ ଆଦେଶର ପ୍ରତିବାଦ କରି ପାରିଥାନ୍ତେ । ମାତ୍ର ସ୍ୱାମୀଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ନାରୀର ଧର୍ମ ନୁହେଁ । କେଉଁ ଅନାଦି କାଳରୁ ଶାସ୍ତ୍ରକାରମାନେ ନାରୀ ପାଇଁ, ପତ୍ନୀ ପାଇଁ ଯେଉଁ ନିୟମମାନ ପ୍ରଣୟନ କରିଛନ୍ତି, ସେହି ନୀତିବାକ୍ୟ ମାନଙ୍କୁ ମନେ ପକାଇ ଅନ୍ତଃସ୍ୱତ୍ୱା ଜରତ୍କାରୀ ଆଶ୍ରମ ପରିତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । ପୁରୁଷର ଯାବତୀୟ ଅନ୍ୟାୟ ଅତ୍ୟାଚାର ସହ୍ୟ କରିବା ପାଇଁ ନାରୀର ଜନ୍ମ । ପୁରୁଷ ପ୍ରଧାନ ସମାଜ ଯେଉଁ ନୀତି, ନିୟମ ପ୍ରଣୟନ କରିଛି, ତାହାରି ରଥ ଚକ୍ରତଳେ ନାରୀ ଯୁଗଯୁଗ ଧରି ନିଷ୍ପେସିତ ହୋଇ ମୂକ ପାଲଟି ଯିବାକୁ ବାଧ୍ୟ ।

ଅଳ୍ପଦିନ ପରେ ଅଭାଗିନୀ ପତି ପରିତ୍ୟକ୍ତା ଦୁଃଖିନୀ ଜରତ୍କାରୀ ଯେଉଁ ପୁତ୍ର-ସନ୍ତାନଟିକୁ ଜନ୍ମ ଦେଲେ, ପରବର୍ତ୍ତୀ କାଳରେ ସେ ମହର୍ଷି ଆସ୍ତିକ ନାମରେ ଜଗତ୍ ବିଖ୍ୟାତ ହୋଇଥିଲେ ।

ମୂଳ ବିଷୟକୁ ଛାଡ଼ି ମୁଁ ଅନେକ ଗୌରଚନ୍ଦ୍ରିକାର ଅବତାରଣା କରି ପକାଇଲିଣି । ସେଥିପାଇଁ କ୍ଷମା-ପ୍ରାର୍ଥନା କରୁଛି । ଏଥର ମୁଁ କେବଳ ମହର୍ଷି ଦୁର୍ବାସାଙ୍କ ସଂପର୍କରେ ସବିଶେଷ ବର୍ଣ୍ଣନା କରିବି ।

ପ୍ରଥମରୁ କହିଛି, ଦୁର୍ବାସାଙ୍କୁ ଦେଖି ଓ ତାଙ୍କର ଅତୀତ କାର୍ଯ୍ୟାବଳୀକୁ ସ୍ମରଣ କରି ମୁଁ ନିତାନ୍ତ ଶଙ୍କାକୁଳ ହୋଇ ପଡ଼ିଥିଲି । ତଥାପି ଧୈର୍ଯ୍ୟର ସହିତ ଅଭ୍ୟାସ-ଗତ ସେବାକୁ ପାଳନ କରିବାରେ ମନପ୍ରାଣ ଢାଳିଦେଲି । କୌଣସି ତ୍ରୁଟି ବିଚ୍ୟୁତି ନହେବା ପାଇଁ ମୁଁ ସତତ ସତର୍କ ରହିଥାଏ ।

ପିତା କୁନ୍ତୀଭୋଜ ଅପୁତ୍ରିକ ଥିବାରୁ ବାତ୍ସଲ୍ୟ ସୁଖ ଭୋଗରୁ ବଞ୍ଚିତ ଥିଲେ । ତାଙ୍କ ମନରେ ସୁଖ-ଶାନ୍ତି ଫେରାଇ ଆଣିବା ପାଇଁ ମୁଁ ଦତ୍ତକ କନ୍ୟା ରୂପେ ମଥୁରାରୁ କୁନ୍ତଳକୁ ଆସିଥିଲି । ମହାରାଜା ଓ ରାଣୀ ଆଶ୍ୱସ୍ତ ହୋଇଥିଲେ ସତ, କିନ୍ତୁ ଭାବୀ ଦାୟାଦର ଅଭାବ [redacted] ଅନୁଭବ କରୁଥାନ୍ତି । ଆଶାଥାଏ, ସାଧୁ, ସନ୍ଥ ଓ ମହାପୁରୁଷମାନଙ୍କ ପଦ-ରଜ ଦିନେ ନା ଦିନେ ତାଙ୍କ ବାସନା ଚରିତାର୍ଥ କରିବାରେ ସହାୟକ ହେବ । ଏଥିପାଇଁ ସେ ତାଙ୍କ ଉଆସର ଦ୍ୱାର ମୁନୀ ଋଷିମାନଙ୍କ ପାଇଁ ଚିର-ଉନ୍ମୁକ୍ତ ରଖିଥାନ୍ତି । ଅବଶେଷରେ ତାହାହିଁ ହେଲା ।

ମହର୍ଷିଙ୍କ ଅପାର କରୁଣା ଓ ଆଶୀର୍ବାଦର ଫଳସ୍ୱରୂପ ଆମ ଉଆସରେ କୁଆଁ କୁଆଁ ଶବ୍ଦ ଶୁଭିଲା । ସାରା ରାଜ୍ୟରେ ଆନନ୍ଦ ଉଲ୍ଲାସର ତରଙ୍ଗ ଖେଳିଗଲା । ଯେଉଁ ନୂତନ-ଅତିଥିଟି ଆମ ରାଜ-ଅନ୍ତଃପୁରକୁ ହର୍ଷ-ମୁଖର କରି ଦେଇଥିଲା, ତା'ର ନାମ ରଖାଗଲା-ପୁରୁଜିତ କୁନ୍ତୀଭୋଜ ।

ମହର୍ଷି ଦୁର୍ବାସା କୌଣସି ଏକ ସ୍ଥାନରେ ଦୀର୍ଘ ଦିନ ଅବସ୍ଥାନ କରନ୍ତି ନାହିଁ । ଆଶ୍ଚର୍ଯ୍ୟର କଥା- ଆମ ଉଆସରେ ଏହାର ବ୍ୟତିକ୍ରମ ଘଟିଥିଲା । ବୋଧହୁଏ ସେ ପିତାଙ୍କ ଅଭୀଷ୍ଟ ପୂରଣ ପରେ ହିଁ ଏ ସ୍ଥାନ ତ୍ୟାଗ କରିବାର ସିଦ୍ଧାନ୍ତ ଗ୍ରହଣ କରିଥିଲେ । ତାଙ୍କ ସଂପର୍କରେ ଯାହାକିଛି ଅନୁମାନ କରିହେବ ସିନା, ପ୍ରଶ୍ନକରି ନୁହେଁ ।

ଦୁର୍ବାସା ପିତାଙ୍କଠାରୁ ବିଦାୟ ଗ୍ରହଣ କରି ମୋ ପାଖକୁ ଆସିଲେ । ମୁଁ ତାଙ୍କ ଚରଣରେ ମସ୍ତକ ରଖି ସାଷ୍ଟାଙ୍ଗ ପ୍ରଣିପାତ କଲି । ସେ ମୋତେ ତଳୁ ଉଠାଇ କହିଲେ,-''ମୁଁ ତୋ ସେବା ଓ ପରିଚର୍ଯ୍ୟାରେ ଅତିଶୟ ପ୍ରୀତ । ତୋର ନିଷ୍କପଟ ପରିଚର୍ଯ୍ୟାହିଁ ମୋତେ ଏଠାରେ ଦୀର୍ଘ ସମୟ ବାନ୍ଧି ରଖିଥିଲା । ମୁଁ ଯାହାସବୁ କହୁଛି ସେ ସବୁକୁ ମନ ଦେଇ ଶୁଣ୍ ।

ମୁଁ ଦିବ୍ୟ -ଦୃଷ୍ଟିରେ ଦେଖି ପାରୁଛି- ତୋ ଜୀବନରେ ବହୁ ଝଡ଼, ଝଞ୍ଜା ଉତ୍ଥାନ, ପତନ ଓ ସଂଘର୍ଷ ସଂଘଟିତ ହେବ । ଏ ସବୁ ସତ୍ତ୍ୱେ ତୁ ଧୈର୍ଯ୍ୟ ଓ ସହନଶୀଳତାର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଭାରତ ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ସୁସନ୍ତାନବତୀ ହେବୁ । ମାତ୍ର ବିବାହିତ ସ୍ୱାମୀଙ୍କ ଔରସରୁ ନୁହେଁ । ମୁଁ ତୋତେ ଅଥର୍ବଶୀର୍ଷା ମନ୍ତ୍ର ଓ ଅଥର୍ବାଙ୍ଗୀରସ ମାଳା ପ୍ରଦାନ କରୁଛି । ଏହି ମାଳାଜପ ସହିତ ମନ୍ତ୍ର ପୁରଶ୍ଚରଣ କଲେ ତୁ ଦେବତା ମାନଙ୍କ ସହିତ ମଧ୍ୟ ସଂପର୍କ ସ୍ଥାପନ କରି ପାରିବୁ ।''

ଋଷି ଚାଲିଗଲେ, ମାତ୍ର ମୋ କୁମାରୀ ମନରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଦେଇଗଲେ, ତହିଁରେ ମୁଁ ଅତ୍ୟନ୍ତ ସନ୍ଦେହାଚ୍ଛନ୍ନ ହୋଇ ପଡ଼ିଲି । ମୋର ମାନସିକ ଅଶାନ୍ତି ବୃଦ୍ଧି ପାଇବାରେ ଲାଗିଲା ।

ଭାବିଲି ସଂସାରରେ ସମସ୍ତ ନାରୀ ବିବାହପରେ ସ୍ୱାମୀଙ୍କ ସଂସର୍ଗରୁ ସନ୍ତାନବତୀ ହୋଇଥାନ୍ତି । ମୁଁ ପରପୁରୁଷଙ୍କ ସହିତ ମିଳିତ ହୋଇ ସନ୍ତାନବତୀ ହେବି । ସ୍ୱାମୀଙ୍କ ବର୍ତ୍ତମାନରେ କେଉଁ କାରଣରୁ ମୁଁ ଏକ ବାରବନିତାର ଘୃଣ୍ୟ ପନ୍ଥା ଗ୍ରହଣ କରିବି ? ପର ପୁରୁଷ ସଂସର୍ଗ ନାରୀ ଜୀବନର ଚରମ ବିପର୍ଯ୍ୟୟ ଓ ଘୋର ଦୂଷଣୀୟ ଅଟେ । ଋଷିଙ୍କୁ ଏକଥା ପଚାରିବା ପାଇଁ ଇଚ୍ଛା କରିଥିଲି; ମାତ୍ର ଲଜ୍ଜା ମୋର କଣ୍ଠରୋଧ କଲା । କିପରି ବା ଏ ସବୁ କଥା ପଚାରି ଥାଆନ୍ତି ? ପୁଣି ଭାବିଲି:- ଯଦି ଏପରି ହୁଏ, ତେବେ ଏ ଆଶୀର୍ବାଦତ ଅଭିଶାପରୁ ବଳିପଡ଼ିବ । କିନ୍ତୁ ଋଷି ଅଭିଶାପ ଦେବାର କୌଣସି କାରଣ ମଧ୍ୟ ନଥିଲା । ଆସିବାଠାରୁ ଯିବା ପର୍ଯ୍ୟନ୍ତ ତାଙ୍କ ସ୍ନେହ ଆଦର ମୋ ମନରେ ଅଭୁଲା ସ୍ମୃତି ହୋଇ ରହିଛି । ନାଁ, ଏ ମୋର ଭ୍ରମ, ଋଷି କୌତୁକରେ ଏଣୁ ତେଣୁ କହି ପକାଇଛନ୍ତି ନିଶ୍ଚୟ । ଛାଡ଼, ମାଳା ଓ ମନ୍ତ୍ରତ ଅଛି । ଆବଶ୍ୟକ ହେଲେ ପରୀକ୍ଷା କରିବାରେ ଅସୁବିଧା ହେବ ନାହିଁ ।

ସଖୀମାନଙ୍କ ଗହଣରେ ମୁଁ ପୁଣି ନିଜକୁ ହଜାଇ ଦେଲି । ରାଜ ଉଆସରେ ଅଭାବର ଦଂଶନତ ନଥାଏ, ବରଂ ଥାଏ ପ୍ରାଚୁର୍ଯ୍ୟର ଅସରନ୍ତି ଭଣ୍ଡାର । ସେଇ ପ୍ରାଚୁର୍ଯ୍ୟ ଭିତରେ ନିଜକୁ ହଜାଇ ଦେଇ ମୁଁ ଆମୋଦ ପ୍ରମୋଦରେ ଦିନ ଗୁଡ଼ିକ ବିତାଇବାରେ ଲାଗିଲି । ଧୀରେ ଧୀରେ ମାଳା ବା ମନ୍ତ୍ରକଥା ପ୍ରାୟ ଭୁଲିଗଲି ।

ମୁଁ ଅପରୂପ ରୂପବତୀ ଏକ ଯୁବତୀ ରାଜକନ୍ୟା । ମୋ ମନଗହନରେ ବେଳେ ବେଳେ ନାନା ଅହେତୁକ ଆଲୋଡ଼ନ ସୃଷ୍ଟି ହୁଏ । କେତେ ଅବାସ୍ତବ କଳ୍ପନା ବିଳାସରେ ନିଜକୁ ହଜାଇ ଦେଇ ମୁଁ ଉଲ୍ଲସିତ ହୋଇଉଠେ । ଅଗ୍ନିରେ ଘୃତ ଆହୁତି ପରି ବୟସ୍ୟାମାନେ ପ୍ରେମ ଓ ପ୍ରଣୟର କେତେଯେ ଚଟୁଳ କାହାଣୀ ବର୍ଣ୍ଣନା କରନ୍ତି ତା'ର ଇୟତା ନଥାଏ । ଅଧିକାଂଶ ସମୟରେ ଅନ୍ୟ ରାଜ-କୁମାରୀ ମାନଙ୍କର ସ୍ୱୟଂବର, ବିବାହ-ଉତ୍ସବ, ଏପରିକି ମଧୁ-ଶଯ୍ୟାର ନିଖୁଣ ବର୍ଣ୍ଣନା କରି ସେମାନେ ବେଶ୍ ଆମୋଦିତ ହେବା ସହିତ ମୋ ଅବଚେତନ ମନରେ ଏକ ଝଡ଼ ସୃଷ୍ଟି କରିଥାନ୍ତି । ମୁଁ ସେ ସବୁ ବର୍ଣ୍ଣନା ଶୁଣି ମନେ ମନେ ଖୁବ୍ ଆନନ୍ଦିତ ହେଉଥାଏ ।

ପ୍ରତ୍ୟେକ ଯୁବତୀ ପକ୍ଷରେ ତାର ବୟଃସନ୍ଧିହିଁ ଅତି ବିପଦପୂର୍ଣ୍ଣ । ଏହି ସମୟରେ ଆବେଗ ଓ ବିବେକ ମଧ୍ୟରେ ସଂଘର୍ଷ ସୃଷ୍ଟି ହୁଏ । ଯେଉଁଠି ବିବେକ ହାରିଯାଏ, ସେଇଠି ସୃଷ୍ଟି ହୋଇଯାଏ ଦୁଃଖ ଓ ମନସ୍ତାପର ଗଭୀର ସାଗର । କ୍ଷଣିକ ଆମୋଦ ଲାଗି ସାରାଜୀବନ ଅକଥନୀୟ ମର୍ମ-ବେଦନା ଓ ପଶ୍ଚାତ୍ତାପରେ ତିଳତିଳ ହୋଇ ଦଗ୍ଧ ହେବାରେ ଲାଗେ । ସ୍ଥିର ବିଚାର, ଓ ବିବେକର ଆହ୍ୱାନକୁ ଉପେକ୍ଷା କଲେ ମଣିଷ କିପରି ବିପନ୍ନ ହୁଏ ଏହାର ପ୍ରମାଣ ସ୍ୱରୂପ ଜଣେ ରାଜକୁମାରୀଙ୍କ ଉଦାହରଣ ଯଥେଷ୍ଟ ହେବ ।

ରାଜଜେମା ସୁକନ୍ୟା । ଅନିନ୍ଦ୍ୟ ସୁନ୍ଦରୀ ରୂପବତୀ ଯୁବତୀ । ଅଗଣିତ ରାଜପୁତ୍ର ତାଙ୍କ ପାଣି ଗ୍ରହଣ ପ୍ରୟାସୀ ହେବା ସ୍ୱାଭାବିକ । କିଏ ସେହି ଭାଗ୍ୟବାନ୍, ସ୍ୱୟଂବର ସଭାରେ ଯାହାଙ୍କ କଣ୍ଠରେ ସୁକନ୍ୟାଙ୍କ ବରଣମାଳା ଶୋଭା ପାଇବ ? ସେଥିପାଇଁ ପ୍ରତ୍ୟାଶୀ ରାଜପୁତ୍ରଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଥାଏ । ସୁକନ୍ୟା ମଧ ଉପଯୁକ୍ତ ଜୀବନସାଥୀ ନିର୍ଣ୍ଣୟ କରି ଜୀବନକୁ ପୂର୍ଣ୍ଣ ପ୍ରାଣରେ ଉପଭୋଗ କରିବାର ସୁନେଲି ସ୍ୱପ୍ନରେ ବିଭୋର ହୋଇ ଉଠିଥିଲେ । ମାତ୍ର ହେଲା କ'ଣ ? ସାମାନ୍ୟ ଅସାବଧାନତା ଓ ସ୍ଥିର ବିଚାର ବୁଦ୍ଧିର ଅଭାବ ଲାଗି ସେ ସାରାଜୀବନ ଅକଥନୀୟ ଦୁଃଖ ଓ ଯନ୍ତ୍ରଣାରେ ଦଗ୍ଧ ହୋଇଥିଲେ । ସୁକନ୍ୟାଙ୍କ ଚରିତ୍ର ଅତ୍ୟନ୍ତ ନିର୍ମଳ ଥିଲା । ତାଙ୍କ ସହିତ ଆମ୍ଭମାନଙ୍କୁ ତୁଳନା କରାଯାଇ ପାରେ ନାହିଁ । ସେ ଯେଉଁ ତ୍ୟାଗର ଆଦର୍ଶ ଦେଖାଇଲେ ଓ ନିଜର ଅସାବଧାନତା ପାଇଁ ଅତି ଗୁରୁତର ଦଣ୍ଡକୁ ଅମ୍ଲାନ ବଦନରେ ଆଦରି ନେଲେ

ତାହା ଅନ୍ୟ କାହା ପକ୍ଷରେ ସମ୍ଭବ ନୁହେଁ । ତାଙ୍କର ଚାରିତ୍ରିକ ସ୍ଖଳନ ଆଦୌ ନଥିଲା । ସେ ଥିଲେ ଜଣେ ଆଦର୍ଶ ନାରୀ ଓ ପ୍ରାତଃ ସ୍ମରଣୀୟା ମହୀୟସୀ ମହିଳା ।

ଦିନକର ଘଟଣା- ସୁକନ୍ୟା ସଖୀମାନଙ୍କ ଗହଣରେ ଅରଣ୍ୟ ଭ୍ରମଣ କରୁ କରୁ ଗୋଟିଏ ଉଇହୁଙ୍କା ନିକଟରେ ପହଞ୍ଚିଲେ । ହୁଙ୍କା ଭିତରୁ ଦୁଇଟି ଉଜ୍ଜ୍ୱଳ ପଦାର୍ଥ ବାହାରକୁ ଜକଜକ ହୋଇ ଦିଶିଲା । କ'ଣ ଏପରି ଦେଖାଯାଉଛି ଜାଣିବା ପାଇଁ ସମସ୍ତେ କୌତୂହଳୀ ହୋଇ ଉଠିଲେ । ଉତ୍ତମ ରୂପେ ଚିନ୍ତା କରିବାକୁ କାହାକୁ ସମୟ ମିଳିଲା ନାହିଁ । ଯୁବତୀ-ସୁଲଭ ଚପଳତାର ବଶବର୍ତ୍ତୀ ହୋଇ ସୁକନ୍ୟା ଏକ ତୀକ୍ଷ୍ଣ କୁଶାଗ୍ରରେ ଉକ୍ତ ଉଜ୍ଜ୍ୱଳ ବିନ୍ଦୁ ଦୁଇଟିକୁ ବିଦ୍ଧ କରିଦେଲେ ।

ହାୟ, ଅପରିଣାମ ଦର୍ଶିତାର କି ବିଷମୟ ପରିଣତି ହେଲା । ହୁଙ୍କା ମଧ୍ୟରୁ ଧାର ଧାର ହୋଇ ରକ୍ତ ଝରିବାରେ ଲାଗିଲା । ସମସ୍ତେ ଭୀତତ୍ରସ୍ତ ହୋଇ ପରସ୍ପରକୁ ଚାହିଁ ରହିଲେ ସିନା କାହାରି ପାଟିରୁ କଥା ବାହାରିଲା ନାହିଁ ।

ସଖୀମାନେ ହୁଙ୍କାକୁ ଭାଙ୍ଗିଦେବାପରେ ଯାହା ଦେଖିଲେ, ତହିଁରେ ସେମାନଙ୍କର ବିସ୍ମୟର ସୀମା ରହିଲା ନାହିଁ । ଓଃ, ଏକଅଣ ହେଲା ! ପଦ୍ମାସନରେ ବସି ଯୋଗସାଧନା କରୁଛନ୍ତି ଜଣେ ଋଷି । ପରେ ଜଣାଗଲା ମହର୍ଷି ଚ୍ୟବନ ଦୀର୍ଘକାଳ ପାନାହାର ତ୍ୟାଗ କରି କଠୋର ସାଧନା କରୁଥିବା ସମୟରେ ଉଇମାନେ ହୁଙ୍କା କରି ତାଙ୍କ ଶରୀରକୁ ଆବୃତ୍ତ କରି ଦେଇଥିଲେ । କେବଳ ଋଷିଙ୍କ ଚକ୍ଷୁଦୁଇଟି ହୁଙ୍କାର ରନ୍ଧ୍ରଦେଇ ପଦାକୁ ଜକଜକ ହୋଇ ଦେଖା ଯାଉଥିଲା । ଅସହ୍ୟ ଯନ୍ତ୍ରଣାରେ ଛଟପଟ ହୋଇ ଚ୍ୟବନଙ୍କ ଧ୍ୟାନ ଭଙ୍ଗ ହେଲା । ମହର୍ଷିଙ୍କ ଏ ଦୁଃଖଦ ଅବସ୍ଥା ଦେଖି ସୁକନ୍ୟା ଭୟରେ ଥରିବାକୁ ଲାଗିଲେ । ଚତୁର୍ଦ୍ଦିଗ ତାଙ୍କୁ ଅନ୍ଧକାର ଦେଖାଗଲା । ବିଳମ୍ବ ହେଲେ କି ଅଘଟଣ ଘଟିବ କଳ୍ପନା କରି ନପାରି ସେ ତତ୍‌କ୍ଷଣାତ୍ ଋଷିଙ୍କ ପାଦତଳେ ପଡ଼ି ଅତ୍ୟନ୍ତ ଆକୁଳ କଣ୍ଠରେ ପ୍ରାର୍ଥନା କଲେ,- "ହେ ମହାମନା, ହେ ସ୍ଥିତପ୍ରଜ୍ଞ ! ଦାସୀର ଅଜ୍ଞାନକୃତ ଅପରାଧ ମାର୍ଜନା କରନ୍ତୁ । ଆପଣ ତ୍ରିକାଳଦର୍ଶୀ ଉଦାରଚେତା ମହାପୁରୁଷ । କୌତୂହଳ ବଶରେ ବିବେକ ଶୂନ୍ୟ ହୋଇ ମୁଁ ଆପଣଙ୍କୁ ଯେଉଁ ଅକଥନୀୟ ଯନ୍ତ୍ରଣାରେ ଜର୍ଜରିତ କରି ପକାଇଛି, ସେଥିପାଇଁ ମୁଁ ଏକାକିନୀ ଦାୟୀ । ଆପଣ ଅଭିଶାପ ଦେଇ ମୋତେ ଭସ୍ମ କରିଦିଅନ୍ତୁ । ତାହାହିଁ ହେବ ମୋ ଅପରିଣାମ

ଦର୍ଶିତାର ସମୁଚିତ ଦଣ୍ଡ । ଆପଣ ବର୍ତ୍ତମାନ ଅନ୍ଧ । ଅନ୍ୟର ସାହାଯ୍ୟ ବିନା ପାଦେ ହେଲେ ଅଗ୍ରସର ହେବା ଆପଣଙ୍କ ପକ୍ଷରେ ଏକାନ୍ତ ଅସମ୍ଭବ । ମୋ କୃତକର୍ମର ପ୍ରାୟଶ୍ଚିତ ସ୍ୱରୂପ ମୁଁ ନିଜକୁ ଆଜୀବନ ଆପଣଙ୍କ ଚରଣରେ ଦାସୀ ରୂପେ ଉତ୍ସର୍ଗ କରୁଛି । ଦୟାକରି କ୍ରୋଧ ପ୍ରଶମିତ କରିବା ହୁଅନ୍ତୁ ।''

ମହର୍ଷି ବାସ୍ତବତାକୁ ଉପଲବ୍ଧି କରି ଜାଣିଲେ- ସୁକନ୍ୟାଙ୍କ କଥାରେ କୌଣସି ଛଳନାର ଆଭାସ ମଧ୍ୟ ନାହିଁ । ଅଜ୍ଞାନକୃତ ଅପରାଧ ସର୍ବଥା ମାର୍ଜନୀୟ । ନିଜର ଅନ୍ଧ ଅବସ୍ଥାରେ ସାହାଯ୍ୟ କରିବା ଓ ସେବା ଶୁଶ୍ରୂଷା କରିବା ପାଇଁ ଋଷି ସୁକନ୍ୟାଙ୍କୁ ପତ୍ନୀ ରୂପେ ଗ୍ରହଣ କରିଥିଲେ । ଅଲିଅଳ ରାଜଜେମାଙ୍କର ଭବିଷ୍ୟତର ସୁନେଲି ସ୍ୱପ୍ନ ନିମିଷକ ମଧ୍ୟରେ ଧୂଳିସାତ୍ ହୋଇଗଲା । ଉଦ୍ଦାମ ଯୌବନର ପ୍ରଥମ-ସୋପାନରୁ ସେ ଅତିବୃଦ୍ଧ, ଶୁକ୍ଳକେଶ, ଲୋଳିତ ଚର୍ମା, ଚକ୍ଷୁହୀନ ଚ୍ୟବନଙ୍କୁ ପତିରୂପେ ଗ୍ରହଣ କରି ଆଶ୍ରମ ବାସିନୀର କଠୋର ଜୀବନ ଯାପନ କରିବାକୁ ବାଧ୍ୟ ହୋଇଥିଲେ ।

ଆଗରୁ କହିଛି ସୁକନ୍ୟାଙ୍କ ପରି ମହୀୟସୀ ମହିଳାଙ୍କ ସହିତ ମୁଁ ଆଦୌ ତୁଳନୀୟ ନୁହେଁ ।

ମୁଁ ଗୋପନରେ ଯାହା କରିଛି, ତାହା ପାପ । ମୁଁ ମୋର କୃତକର୍ମ ପାଇଁ ନିଜକୁ କ୍ଷମା କରି ପାରୁନାହିଁ । ମୋ ପରି ଆଉ କେତେଜଣଙ୍କ ଚରିତ୍ର ଅନୁଧ୍ୟାନ କରି ମଧ୍ୟ ମୁଁ ନିଜକୁ ସାନ୍ତ୍ୱନା ଦେଇ ପାରି ନଥିଲି । କେବଳ ସତ୍-ସାହସର ଅଭାବ ମୋତେ ପଦେ ପଦେ ବାଧା ଦେଇଥିଲା ।

ବୈଦିକ ଯୁଗର ଜଣେନାରୀ ସ୍ୱକୃତ ଅପକର୍ମର ନିର୍ଭୀକ ବର୍ଣ୍ଣନା କରିଥିବା କଥା ମୁଁ ଜାଣେ । ମାତ୍ର ତାଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ମୁଁ ସାହସ ସଞ୍ଚୟ କରି ପାରିନଥିଲି ।

ଜବଲା ଜଣେ ଅତି ଦରିଦ୍ର ନାରୀ । ତାଙ୍କର ଏକମାତ୍ର ପୁତ୍ର ସତ୍ୟକାମର ବିଦ୍ୟାଧ୍ୟୟନ ବୟସ ହୋଇ ଯିବାରୁ ସେ ପୁତ୍ରଟିକୁ ନେଇ ଗୁରୁଙ୍କ ଆଶ୍ରମକୁ ଗଲେ ଓ ଶିକ୍ଷାଦେବାର ଦାୟିତ୍ୱ ଗ୍ରହଣ କରିବାକୁ ପ୍ରାର୍ଥନା କଲେ । ଗୁରୁ ବାଳକଟିର ପିତୃ ପରିଚୟ ପଚାରନ୍ତେ ଜବଲା ନିଃସଙ୍କୋଚରେ କହିଲେ- ''ମହାଭାଗ, ମୁଁ ସତ୍ୟ ପ୍ରକାଶ କରିବାକୁ ଭୟ କରୁନାହିଁ । ଆପଣ ମୋ ଜୀବନର କରୁଣ-କାହାଣୀ ଶୁଣିବା ପରେ ଯାହା ଉଚିତ ବିଚାରିବେ, ତାହାହିଁ ମୋର ଭାଗ୍ୟଲିପି ବୋଲି ଧରିନେବି ।''

''ହେ ଋଷିଶ୍ରେଷ୍ଠ, ମୁଁ ଏକ ଅସହାୟା ନାରୀ । ଦାରିଦ୍ର୍ୟ ନିପୀଡିତ ଜୀବନ କିପରି ଯନ୍ତ୍ରଣା ଦାୟକ, ତାହା ଜଣେ ଦରିଦ୍ରହିଁ ଅନୁଭବ କରିଥିବ ସିନା ଅନ୍ୟ ପକ୍ଷରେ ତାହା ଆଦୌ ସମ୍ଭବପର ନୁହେଁ । ଉଦର ପୋଷଣର ଅନ୍ୟ ଉପାୟ ନଦେଖି ମୁଁ ପ୍ରତ୍ୟହ କେତେକ ଋଷି ଆଶ୍ରମରେ କିଛି କିଛି କାମ କରିଥାଏ । ମୋ ଦାରିଦ୍ର୍ୟ ଓ ଅସହାୟତାର ସୁଯୋଗ ନେଇ ବହୁ ଋଷି ଓ ଋଷିକୁମାର ମୋ ସହିତ ଦୈହିକ ସଂପର୍କ ସ୍ଥାପନ କରିଥିଲେ । ବହୁ ଋଷି ସଂଭୁକ୍ତା ଜଣେ ନାରୀ ତା' ପୁତ୍ରର ପ୍ରକୃତ ପିତୃ ପରିଚୟ କିପରି ଦେଇ ପାରିବ ? ଯାହା ନିରାଟ ବାସ୍ତବ, ତାହା ମୁଁ ନିଃସଙ୍କୋଚରେ ପ୍ରକାଶ କରିଛି । ଏଣିକି ଆପଣ ବିଚାର କରି ଯାହା ନିଷ୍ପତ୍ତି ଦେବେ ମୁଁ ତାକୁ ଗ୍ରହଣ କରିବାକୁ ଆଦୌ ଆପତ୍ତି କରିବି ନାହିଁ । ମୋ ପୁତ୍ରର ପିତୃ ପରିଚୟ ଅଜ୍ଞାତ ସତ, ମାତ୍ର ମୁଁ ତା'ର ଜନ୍ମଦାତ୍ରୀ ଜନନୀ ବୋଲି କେହି ଅସ୍ୱୀକାର କରିପାରିବେ ନାହିଁ ।''

ଜଣେ ଅସହାୟା ଅବଳାର ନିର୍ଭୀକ ସତ୍ୟ ପ୍ରକାଶ ଓ ବଚନର ଦୃଢତା ଋଷିଙ୍କ ହୃଦୟକୁ ଦ୍ରବୀଭୂତ କରିଦେଲା । ସେ ଜବଳାକୁ ଚାହିଁ କହିଲେ- ''ଚିନ୍ତିତ ହୁଅ ନାହିଁ । ତୁମ ପୁତ୍ର ଅଧ୍ୟୟନରୁ ବଞ୍ଚିତ ହେବ ନାହିଁ । ପ୍ରକୃତ ପିତୃ ପରିଚୟ ନଥିଲେ ମଧ୍ୟ ସେ ତୁମ ନାମ ଅର୍ଥାତ୍ ଜବଳାର ପୁତ୍ର ଜାବାଳୀ ନାମରେ ସର୍ବତ୍ର ପରିଚିତ ହେବ । ଆଜିଠାରୁ ତୁମ ପୁତ୍ରର ନାମ ହେବ ସତ୍ୟକାମ ଜାବାଳ ।''

ଏ କଥାରେ ଅବତାରଣା କରିବାର ଉଦ୍ଦେଶ୍ୟ ଏହିକି ମୁଁ ଜବଳାଙ୍କ ପରି ପ୍ରକୃତ ସତ୍ୟକୁ ସାହସର ସହିତ ପ୍ରକାଶ କରିଦେବାକୁ ଇଚ୍ଛା କରି ମଧ ପାରିନଥିଲି । ତେଣୁ ସାରା ଜୀବନଟା ମୋର ହା, ହୁତାଶ ଓ ମର୍ମଦାହରେ କଟିଗଲା ।

ଏଥର ଆଉ ଅଧିକ ବିଳମ୍ବ ନକରି ମୁଁ ମୋ ନିଜ କଥା ନିଃସଙ୍କୋଚରେ ପ୍ରକାଶ କରିବାକୁ ସାହସ ସଞ୍ଚୟ କରି ସାରିଲିଣି ।

ଶୁଣନ୍ତୁ ଯେଉଁ ମାଳା ଓ ମନ୍ତ୍ରର କଥା ମୁଁ ଏକ ପ୍ରକାର ପାସୋରି ପକାଇଥିଲି କେଜାଣି କାହିଁକି ତା'ର ସତ୍ୟତା ପରୀକ୍ଷା କରିବା ପାଇଁ ମୋ ମନରେ ବାରମ୍ବାର ଅହେତୁକ କୌତୂହଳ ସୃଷ୍ଟି ହେବାରେ ଲାଗିଲା । କ୍ରମେ ମୁଁ ଅତ୍ୟନ୍ତ ଆଗ୍ରହୀ ହୋଇ ଉଠିଲି । ମନର ଚଞ୍ଚଳତା ଏପରି ବଢ଼ିବାରେ ଲାଗିଲା ଯେ ମୁଁ ନିଜକୁ ଆୟତରେ ରଖିପାରିବା ସମ୍ଭବପର ହେଲା ନାହିଁ ।

ଦିନେ ଶୁଦ୍ଧସ୍ନାନାନ୍ତେ ଗୃହ-ମଧ୍ୟକୁ ପ୍ରବେଶ କରି ବସ୍ତ୍ରାଦି ପରିଧାନ କଲି ।

ମହର୍ଷିଙ୍କ ପ୍ରଦତ୍ତ ମାଳା ଓ ମନ୍ତ୍ରର ବାସ୍ତବତା ପରୀକ୍ଷା କରିବା ପାଇଁ ମୁଁ ଅତ୍ୟନ୍ତ ବ୍ୟଗ୍ର ହୋଇ ଉଠିଲି । କ୍ରମେ ବ୍ୟଗ୍ରତା ବଢ଼ିବାରେ ଲାଗିଲା । ପରିଣତି ପ୍ରତି ସଚେତନ ନହୋଇ ମୁଁ ଯୁବତୀ ସୁଲଭ ପ୍ରଗଲ୍‌ଭତାରେ ପାଗଳ ହୋଇ ଗଲି ।

ବିଳମ୍ବ ସହ୍ୟ ହେଲା ନାହିଁ । ହାତରେ ମାଳାଟି ଧରିଲି । କେଉଁ ଦେବତାଙ୍କୁ ଆହ୍ୱାନ କରିବି ଏଇ କଥା ଚିନ୍ତା କରୁଥିବା ବେଳେ ଚକ୍ଷୁ ସମକ୍ଷରେ ଉଦୀୟମାନ ବାଳସୂର୍ଯ୍ୟଙ୍କୁ ଦେଖିଲି ଓ ସେହି ମହା ତେଜୋଦ୍ଦୀପ୍ତ ଦେବତାଙ୍କ ଉଦ୍ଦେଶ୍ୟରେ ମନ୍ତ୍ର ଉଚ୍ଚାରଣ ଆରମ୍ଭ କରିଦେଲି । ଜପ ଶେଷ ହେବା ପରେ ମୋ ଜୀବନରେ ଯେଉଁ ଅଘଟଣ ଘଟିଗଲା, ତାହା ସ୍ମରଣ କଲାମାତ୍ରେ ଏବେ ମଧ୍ୟ ହୃତ୍‌କମ୍ପ ଜାତ ହେଉଛି ।

ଦେଖିଲି- ଝରି ଆସୁଥିବା କନକ କିରଣ ଏକ ଅପୂର୍ବ ସୁନ୍ଦର ଦିବ୍ୟ ଦେବ ମୂର୍ତ୍ତିରେ ରୂପାନ୍ତରିତ ହୋଇଗଲା । ଦେବତାଙ୍କ ମସ୍ତକର କନକ ବଳୟ ଓ କର୍ଣ୍ଣ ଯୁଗଳର ମକର କୁଣ୍ଡଳ ତାଙ୍କ ସୌନ୍ଦର୍ଯ୍ୟକୁ ବହୁଗୁଣିତ କରିଥାଏ । ମୋ ବାସଗୃହର ଅଭ୍ୟନ୍ତର ଅକସ୍ମାତ ଅପୂର୍ବ ସୁଗନ୍ଧରେ ଆମୋଦିତ ହୋଇ ଉଠିଲା । ମୁଁ ଏକାନ୍ତ ଭାବରେ ହତ ଚକିତ ହୋଇ ଏ ସବୁ କ'ଣ ହୋଇ ଯାଉଛି ଭାବି- ପାରିଲି ନାହିଁ । ମୋର ଚକ୍ଷୁ ଆପେ ଆପେ ମୁଦ୍ରିତ ହୋଇଗଲା । କିଛି ସମୟପରେ ଚକ୍ଷୁ ଖୋଲି ଦେଖିଲି ସେହି ତେଜୋଦ୍ଦୀପ୍ତ ଦେବତା ଉଭୟ ହସ୍ତ ପ୍ରସାରଣ କରି ମୋ ଆଡ଼କୁ ଆଗେଇ ଆସୁଛନ୍ତି । ଯୁଗପତ୍ ଲଜ୍ଜା ଓ ଭୟ ମୋତେ ହତ୍‌ବାକ୍ କରି ପକାଇଲା । ମୁଁ କାତର କଣ୍ଠରେ ଅତ୍ୟନ୍ତ ବିନୟର ସହିତ ପ୍ରାର୍ଥନା କଲି,- ''ପ୍ରଭୁ, ମୋର ଅଜ୍ଞାନକୃତ ଅପରାଧ ମାର୍ଜନା କରନ୍ତୁ । କୌତୂହଳର ବଶବର୍ତ୍ତୀ ହୋଇ ମୁଁ ଯେଉଁ ଅପରାଧ ଅର୍ଜନ କରିଛି ସେଥିପାଇଁ କ୍ଷମା ପ୍ରାର୍ଥନା କରୁଛି । ମହର୍ଷିଙ୍କ ପ୍ରଦତ୍ତ ମନ୍ତ୍ର ଓ ମାଳାର ସତ୍ୟତା ପରୀକ୍ଷା କରିବାକୁ ଯାଇ ମୁଁ ଗୁରୁତର ପାପଭାଗୀ ହୋଇ ପଡ଼ିଛି ଏବଂ ଏଥିପାଇଁ ଗଭୀର ଭାବରେ ଅନୁତପ୍ତ ମଧ୍ୟ । ମୁଁ ଏ ପର୍ଯ୍ୟନ୍ତ ବିବାହ କରିନାହିଁ । ବିବାହ ପୂର୍ବରୁ ପୁରୁଷ ସହିତ ମିଳିତ ହେବା ନାରୀ ପକ୍ଷରେ ଘୋର ଦୂଷଣୀୟ । ଆପଣଙ୍କୁ ମୁଁ ଅଧିକ କ'ଣ କହିବି ? ଗୋଟିଏ କୁମାରୀ କନ୍ୟାର ପବିତ୍ରତା ଓ ନାରୀତ୍ୱକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଆପଣଙ୍କ ଶରଣ ଭିକ୍ଷା କରୁଛି ।

ସୂର୍ଯ୍ୟଦେବ ସ୍ଥିର ଚିତ୍ତରେ ମୋର ଆକୁଳ ନିବେଦନ ଶୁଣୁଥାନ୍ତି । ମୁଁ ନୀରବ ହେବାପରେ ସେ ଆଶ୍ୱାସନା ଦେଇ କହିଲେ, ''ମହର୍ଷିଙ୍କ ମାଳା ଓ ମନ୍ତ୍ରର ଅସାଧାରଣ ଶକ୍ତି ସଂପର୍କରେ ମୁଁ ପୂର୍ଣ୍ଣ ଅବହିତ ଅଛି । ବର୍ତ୍ତମାନ ମନ୍ତ୍ରର ଅଧୀନ ହୋଇ ମୁଁ ନିଜସ୍ୱ ଶକ୍ତି ହରାଇ ବସିଛି । ତୁମ ସହିତ ମିଳିତ ନହୋଇ କୌଣସି ମତେ ଫେରି ଯାଇ ପାରିବି ନାହିଁ । ତେଣୁ ତୁମେ ଭୟ ତ୍ୟାଗ କରି ମୋ ସହିତ ମିଳିତ ହୁଅ । ଅନ୍ୟଥା ଆମ ଦୁହିଁଙ୍କର ଘୋର ଅନିଷ୍ଟ ହେବ ।''

ଦେବତାଙ୍କ କଥା ଶୁଣିବାମାତ୍ରେ ମୋ ସର୍ବାଙ୍ଗ ଥରିବାରେ ଲାଗିଲା । ମୁଁ ହତଭାଗିନୀ ନିଜ ହାତରେ ମୋର ସର୍ବନାଶର ପଥ ପରିଷ୍କାର କରିଦେଲି । ହାୟ, ବର୍ତ୍ତମାନ ଉପାୟ କ'ଣ ? କିଛି ସ୍ଥିର କରି ନପାରି ଭୟ ବିଜଡିତ କଣ୍ଠରେ କହିଲି, ''ପ୍ରଭୁ, ଜାଣୁଛି ମୋ ଭୁଲ୍‌ର ଆଉ ପ୍ରାୟଶ୍ଚିତ ନାହିଁ । ଆପଣଙ୍କ ସହିତ ସଂପର୍କ ସ୍ଥାପନ କଲେ ମୁଁ ପତିତା ରୂପେ ଗଣ୍ୟ ହେବି । ସମାଜ ମୋତେ ବାରବନିତା କହି ଅଙ୍ଗୁଳି ନିର୍ଦ୍ଦେଶ କରିବ । ଏସବୁକୁ ସହ୍ୟ କରିବା ଅପେକ୍ଷା ଆତ୍ମହତ୍ୟା ସହସ୍ର ଗୁଣରେ ଶ୍ରେୟସ୍କର ହେବ ।''

ସୂର୍ଯ୍ୟ ଦେବତା ମୋତେ ପ୍ରସନ୍ନ ଚିତ୍ତରେ ଆଲିଙ୍ଗନ କରି କହିଲେ, ''କଲ୍ୟାଣି, ଭୟ ବା ସଙ୍କୋଚ କରନାହିଁ । ମୁଁ ଆଶୀର୍ବାଦ କରୁଛି ତୁମେ ମୋତେ ଦେହଦାନ କଲେ ମଧ୍ୟ ତୁମର କନ୍ୟା ଭାବ ଦୂଷିତ ହେବ ନାହିଁ । ବହୁ ବିଳମ୍ବ ହୋଇଗଲାଣି । ଶୀଘ୍ର ମୋ ସହିତ ମିଳନ ସୁଖ ଅନୁଭବ କରି ଆନନ୍ଦିତ ହୁଅ । ତୁମ ସହିତ ମୋର ଏ ମିଳନ ଏକାନ୍ତ ଗୋପନୀୟ ରହିବ ।''

ମୁଁ ଆଉ କିଛି କହିବା ପୂର୍ବରୁ ସେ ମୋତେ ତାଙ୍କ ପ୍ରଶାନ୍ତ ବକ୍ଷରେ ନିବିଡ ଭାବରେ ଜଡାଇ ଧରି ମୋର ଅଧର ଏବଂ ଗଣ୍ଡଦେଶରେ ବାରମ୍ବାର ଚୁମ୍ବନର ରେଖା ଆଙ୍କି ଦେବାରେ ଲାଗିଲେ । ମୋର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଆସିଲା । କି ଏକ ଅନନୁଭୂତ ପୁଲକ ପ୍ରବାହରେ ମୋର ଶରୀର ଉଲ୍ଲସିତ ହେବାକୁ ଲାଗିଲା । ତନୁ ମନରେ ଅପୂର୍ବ ଉନ୍ମାଦନା ଅନୁଭବ କରି ମୁଁ ବାହ୍ୟ-ଜ୍ଞାନ ଶୂନ୍ୟ ହୋଇ ପଡ଼ିଲି । ମୋର ଚକ୍ଷୁଦ୍ୱୟ ଆପେଆପେ ମୁଦ୍ରିତ ହୋଇଗଲା ।

ପର ମୁହୂର୍ତ୍ତରେ ଦେଖିଲି ମୋର ସର୍ବାଙ୍ଗ ସ୍ୱେଦ ଜର୍ଜରିତ । ସୁସଜ୍ଜ କବରୀ ସଂପୂର୍ଣ୍ଣ ଅବିନ୍ୟସ୍ତ । ଅଙ୍ଗବସ୍ତ୍ର ମଧ ଏକାନ୍ତ ଅସଂଜତ । ମୁଁ ପ୍ରକୃତିସ୍ଥ ହୋଇ ବସ୍ତ୍ର ସଜାଡି ନେଲି । ଦେବତା ସହାସ୍ୟ ବଦନରେ କହିଲେ ବିଦାୟ ଦେବୀ । ମୁଁ ଆଉ

ଅଧିକ ସମୟ ଏଠାରେ ବିତାଇବା ସମ୍ଭବପର ନୁହେଁ । ମନେରଖ, ମୋର ଏ ମିଳନ କଦାପି ନିଷ୍ଫଳ ହେବ ନାହିଁ । ଅଚିରେ ତୁମେ ନିଶ୍ଚୟ ପୁତ୍ରବତୀ ହେବ ।''

ଶେଷ ପଦକ କଥାରେ ମୋର ସବୁ ଶେଷ ପାଇଗଲା । ପାଦତଳରୁ ମାଟି ଖସି ଖସି ଯିବାପରି ଅନୁଭବ କଲି । ଭାବିଲି ମୁଁ ରସାତଳ ଗାମୀ ହୋଇଯିବି । ସେପରି ହୋଇଥିଲେ ବରଂ କୃତକର୍ମ ପାଇଁ ଏତେ ଦୁଃଖ ଏତେ ଲାଞ୍ଛନା ଓ ମର୍ମଦାହ ସାରାଜୀବନ ଭୋଗକରି ନଥାନ୍ତି ।

ଦେବତାଙ୍କ ସହିତ ମିଳିତ ହୋଇ କୁମାରୀ ଅବସ୍ଥାରେ ଗର୍ଭବତୀ ହେବି; ଏକଥା ସ୍ମରଣ କଲାମାତ୍ରେ ମୋ ସମଗ୍ର ଶରୀର ଥରି ଉଠୁଥାଏ । ଲଜ୍ଜା, ଅପମାନ, ନିନ୍ଦା ଓ ମୋ ପିତାମାତାଙ୍କ ଅବସ୍ଥା ସ୍ମରଣ କରି ମୁଁ ଯନ୍ତ୍ରଣା ଜର୍ଜରିତ ହୋଇ ଉଠିଲି । ଉପାୟ ସ୍ଥିର କରି ନପାରି ମୁଁ ପାଗଳ ପରି ହୋଇଗଲି ।

କିଛି ସମୟ ନୀରବରେ ବସିବା ପରେ ଭାବିଲି ଗର୍ଭ ଲକ୍ଷଣତ ଲୁଚାଇବାର ନୁହେଁ । ଶତ ଚେଷ୍ଟା ସତ୍ତ୍ୱେ ଏହା ଆପେ ଆପେ ପ୍ରକଟିତ ହୋଇ ଉଠିବ । ବର୍ତ୍ତମାନ ଆଉ ଉପାୟ ନାହିଁ । ସେଇ ପରମ କାରୁଣିକ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ମଥାନତ କରି କହିଲି, ''ହେ ଦୟାମୟ, ମୋତେ ଏ ଘୋର ସଂକଟରୁ ଉଦ୍ଧାର ପାଇବାର ବାଟ ବତାଇ ଦିଅନ୍ତୁ । ଏହାପରେ ମୋର ଆଉ କିଛି କରିବାର ନଥିଲା ।

ଦିନପରେ ଦିନ ଗଡ଼ି ଚାଲିଥାଏ । କିଛି ହେଲେ ଗର୍ଭଲକ୍ଷଣ ପ୍ରକାଶ ନପାଇବାରୁ ପ୍ରଭୁ ମୋ ଆର୍ତ୍ତ ଆବେଦନ ଗ୍ରହଣ କରିଛନ୍ତି ଭାବି ତାଙ୍କୁ କୋଟି କୋଟି ପ୍ରଣତି ନିବେଦନ କରିବାରେ ଲାଗିଲି । କ୍ରମେ ମୋ ମନରୁ ଅତୀତର ସେ ସ୍ମୃତି ଲିଭିଲିଭି ଆସିଲା ଓ ମୁଁ ଆଶ୍ୱସ୍ତ ହେବାରେ ଲାଗିଲି । ଅଜ୍ଞାତରେ ମୋ ଗର୍ଭରେ ସୂର୍ଯ୍ୟଦେବଙ୍କ ତେଜ ଧୀରେ ଧୀରେ ବିକଶିତ ହେବାରେ ଲାଗିଥାଏ । ଏକଥା ମୁଁ ନିଜେ ଅନୁଭବ କରି ପାରୁ ନଥିବା ବେଳେ ଅନ୍ୟମାନେ ବା ଜାଣିବେ କିପରି ? ଶୁଣିଥିଲି- ଦେବ କନ୍ୟାମାନଙ୍କର ଗର୍ଭ ଲକ୍ଷଣ ପ୍ରକାଶ ପାଏନାହିଁ । ମୁଁ ଦେବକନ୍ୟା ନୁହେଁ । ତଥାପି ଦେବତାଙ୍କ ସଙ୍ଗଲାଭ କରିଥିବାରୁ ବୋଧହୁଏ ମୋର ମଧ୍ୟ ଗର୍ଭଲକ୍ଷଣ ଆଦୌ ଦୃଷ୍ଟ ହେଲାନାହିଁ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ କିଛି ହେଲେ ଜାଣିପାରି ନଥିଲି ।

ଠିକ୍ ପ୍ରସବ ସମୟରେ ଅବ୍ୟବହିତ ପୂର୍ବରୁ ମୁଁ ସାମାନ୍ୟ ଗର୍ଭ ଯନ୍ତ୍ରଣା

ଅନୁଭବ କଲି । ପୂର୍ବରୁ ପ୍ରସବ ସମ୍ବନ୍ଧୀୟ ଅଭିଜ୍ଞତା ନଥିଲା । ତେଣୁ ବର୍ତ୍ତମାନ ଯେଉଁ ଯନ୍ତ୍ରଣା ଅନୁଭୂତ ହେଉଛି ତାହା ଯେ ନିଶ୍ଚିତ ଗର୍ଭ ଯନ୍ତ୍ରଣା ଏକଥା ମୁଁ ବା ଜାଣିବି କିପରି ? କ୍ରମେ ଯନ୍ତ୍ରଣାର ତୀବ୍ରତା ବୃଦ୍ଧି ପାଇବାରୁ ମୁଁ ଏକାନ୍ତ ଭାବରେ ଭୟତ୍ରସ୍ତା ହୋଇ ଉଠିଲି । ଉପସ୍ଥିତ କ୍ଷେତ୍ରରେ ଉଆସ ଆଦୌ ନିରାପଦ ନୁହେଁ ଜାଣି ମୁଁ ଅରଣ୍ୟଶୋଭା ଦର୍ଶନର ଛଳନା କରି ବିଶ୍ୱସ୍ତ ସଖୀ ସହିତ ତୁରନ୍ତ ଅନ୍ତପୁରରୁ ନିଷ୍କ୍ରାନ୍ତ ହେଲି ।

ବହୁଦିନ ଧରି ଯେଉଁ କଥାକୁ ଅତି ଗୋପନ ରଖିଥିଲି ଆଜି ସେ କଥାଟି ସଖୀକୁ କହିବାକୁ ବାଧ୍ୟ ହେଲି । କାରଣ ମୋର ଅନ୍ୟକିଛି ଚାରା ମଧ୍ୟ ନଥିଲା । ଉତ୍ତରରେ କିଛି କହିବା ଆଗରୁ ସେ ମୋତେ ଅରଣ୍ୟର ଏକ ନିଭୃତ ସ୍ଥାନକୁ ନେଇଗଲା । କ୍ରମେ ଯନ୍ତ୍ରଣାର ଗତି ବୃଦ୍ଧି ପାଇବାରେ ଲାଗିବାରୁ ସଖୀଟି ମୋତେ ସାନ୍ତ୍ୱନା ଦେବା ସହିତ ମୋ ସର୍ବାଙ୍ଗରେ ହସ୍ତ ସଞ୍ଚାଳନ କରିବାରେ ଲାଗିଲା ।

ଅଳ୍ପ ସମୟ ପରେ ପୁତ୍ର-ସନ୍ତାନଟିଏ ଜନ୍ମଲାଭକଲା । ସନ୍ତାନବତୀ ହେବା ନାରୀ ପକ୍ଷରେ ସମ୍ମାନ ଓ ଗୌରବର ପ୍ରତୀକ ହେଉଥିବା ବେଳେ ମୋ ମନ୍ଦ କପାଳକୁ ସେ ଗୌରବ ଏକ କଳଙ୍କର ବୋଝ ରୂପେ ମୋ ମୁଣ୍ଡକୁ ତଳକୁ ନୁଆଇଁ ଦେଲା । ମୁଁ ଜନନୀ ହୋଇ ମଧ୍ୟ ଆନନ୍ଦିତ ହୋଇ ପାରି ନଥିଲି । ଉପସ୍ଥିତ କ୍ଷେତ୍ରରେ କର୍ତ୍ତବ୍ୟ ନିର୍ଦ୍ଧାରଣ ମୋ ପକ୍ଷରେ ଏକ ଦୁରୂହ ସମସ୍ୟା ରୂପେ ଦେଖା ଦେଲା ।

ମନରେ ଅସରନ୍ତି ଆଶଙ୍କା ଓ ଭୟ । କୋଳରେ ନବଜାତ ଶିଶୁ ସନ୍ତାନର କମନୀୟ ମୁଖ-ମଣ୍ଡଳ ନିରୀକ୍ଷଣ କରି କ୍ଷଣକ ପାଇଁ ମୁଁ ସବୁକିଛି ଭୁଲି ଗଲି । ମୋର ମାତୃ-ହୃଦୟ କି ଏକ ଅପୂର୍ବ ପୁଲକରେ ପୂର୍ଣ୍ଣ ହୋଇ ଉଠିଲା । ମୁଁ ଶିଶୁଟି ମୁଖରେ ବାରମ୍ବାର ଚୁମ୍ବନ ଦେବାରେ ଲାଗିଲି । ମୋତେ ସବୁ କିଛି ଆନନ୍ଦମୟ ବୋଧ ହେଲା ।

ନବଜାତ ଶିଶୁଟି ମୋ କୋଳରେ ଥାଇ ଆଖପାଖର ବନଭୂମିକୁ ଆଲୋକିତ କରି ପକାଉଥାଏ । ଅପୂର୍ବ ସୁଷମା ବିମଣ୍ଡିତ ଏହି ନବଜାତକର ଶରୀରରେ ହୀରକ କବଚ ଓ କର୍ଣ୍ଣରେ ମକର କୁଣ୍ଡଳର ଚିହ୍ନ । ନୀଳ-ପଦ୍ମନିଭ ଆୟତ ନେତ୍ର ଯୁଗଳର ଅପୂର୍ବ ଶୋଭା ମୋତେ ସମ୍ମୋହିତ କରିପକାଇଥାଏ । ମୁଁ ଆଉ କିଛି ନଭାବି ଶିଶୁଟିର ଅପୂର୍ବ ଶୋଭାକୁ ନିର୍ନିମେଷ ନୟନରେ ଚାହି ରହିଥିଲି ।

ମହାଭାରତରେ ଏହାକୁ ଲକ୍ଷ୍ୟକରି କୁହାଯାଇଛି-

ଆମୁକ୍ତ କବଚ ଶ୍ରୀମାନ୍
ଦେବ ଗର୍ଭଃ ଶ୍ରୀୟାନ୍ୱିତ
ସହଜ କବଚ ବିଭ୍ରତ୍
କୁଣ୍ଡଳ ଜ୍ୟୋତିତାନନଃ-

ଶିଶୁଟିର ଅପୂର୍ବ ସୌନ୍ଦର୍ଯ୍ୟ ଯେ କୌଣସି ବ୍ୟକ୍ତିର ହୃଦୟକୁ ସ୍ନେହ, ଶ୍ରଦ୍ଧା ଓ ମମତା-ସିକ୍ତ କରି ପକାଇବ । ମର୍ତ୍ତ୍ୟର କୌଣସି ନାରୀ ଏପରି ଅପୂର୍ବ ସୁଷମା ଓ ଦିବ୍ୟ ଆଭୂଷଣ ବିମଣ୍ଡିତ ସନ୍ତାନର ଜନନୀ ହେବାର ଗୌରବ ଅର୍ଜନ କରି ନଥିବେ । ହାୟ- ଏ ସ୍ୱର୍ଗୀୟ ବିଭୂତି, ଏ ଅମୂଲ୍ୟ ସଂପଦ ମୋ ପାଇଁ କଳଙ୍କର ଟୀକା ହୋଇ ରହିଯିବ ସିନା !''

ସଖୀଟି ହତବାକ୍ ହୋଇ କିଛି ସମୟ ମୋତେ ଚାହିଁବା ପରେ କହିଲା,- ଆବଶ୍ୟକ ହୋଇଥିଲେ ମୁଁ ମୋର ଏ ଛାର ଜୀବନ ତୁମ ପାଇଁ ଉତ୍ସର୍ଗ କରି ଦେଇଥାନ୍ତି । ସର୍ବଦା ପାଖେ ପାଖେ ଛାଇ ପରି ରହିଛି, ଅଥଚ ତୁମେ ମୋତେ ଆଦୌ ବିଶ୍ୱାସ କଲନାହିଁ । ଯେଉଁ କଥାଟିକୁ ଅତି ଯତ୍ନରେ ଗୋପନୀୟ ରଖିଥିଲ, ତାହା ଆଜି ମୋରି ଆଖି ଆଗରେ ଆତ୍ମ ପ୍ରକାଶ କରି ମୋ ପ୍ରତି ତୁମର ଅକୃତ୍ରିମ ବିଶ୍ୱାସ ଓ ଶ୍ରଦ୍ଧାର ପରିଚୟ ଦେଇ ସାରିଲାଣି । ଆରମ୍ଭରୁ ସୂଚନା ପାଇଥିଲେ ଏବେ ତୁମର ଏ ଶୋଚନୀୟ ଦୁର୍ଦ୍ଦଶା ଦେଖିବାକୁ ମିଳିନଥାନ୍ତା । ବର୍ତ୍ତମାନ ସଂପୂର୍ଣ୍ଣ ବୁଡିଯିବା ବେଳେ କ'ଣ କରିବି ମୋତେ କିଛି ବୁଦ୍ଧି ଦେଖାଯାଉନାହିଁ । ଅଧିକ ସମୟ ଅରଣ୍ୟରେ ରହିବା ମଧ୍ୟ ଆମ ପକ୍ଷରେ ନିରାପଦ ନୁହେଁ । ମୋ ମତରେ ଏଠାରେ ଶିଶୁଟିକୁ ତ୍ୟାଗ କରି ଆମେ ତୁରନ୍ତ ଉଆସକୁ ପ୍ରତ୍ୟାବର୍ତ୍ତନ କରିବା । ଅଧିକ ବିଳମ୍ବ ହେଲେ ଘଟଣାଟି ଆଉ ଲୁଚି ରହିବ ନାହିଁ ।''

ସଖୀ ମୁହଁରୁ ଏପରି ନିଷ୍ଠୁର କଥା ଶୁଣି ମୁଁ ଉତ୍ତେଜିତ ହୋଇ ଉଠିଲି । ପରିସ୍ଥିତି ପ୍ରତି ଅନ୍ଧ ହୋଇ କହିଲି- ''ତୁମେ ମାନେ ଇତର ଶ୍ରେଣୀର ନାରୀ । ସନ୍ତାନ ପ୍ରସବ କରି ତାକୁ ହତ୍ୟା କରିବା ତୁମ ପକ୍ଷରେ ବିଳାସ ହୋଇପାରେ, ମାତ୍ର ମୁଁ ମୋର ଏ ଅମୂଲ୍ୟ ଧନକୁ ବଣର ହିଂସ୍ର ଜନ୍ତୁଙ୍କ ଆହାର ପାଇଁ କଦାପି ତ୍ୟାଗ କରି ପାରିବି ନାହିଁ । ମୋର ମାନ, ମହତ୍, ଇଜ୍ଜତ ଓ ସାମାଜିକ ସମ୍ମାନ ବିନିମୟରେ ମୁଁ ଏହି ଦେବତାର ଆଶୀର୍ବାଦକୁ ନିଶ୍ଚୟ ରକ୍ଷା କରିବି ।''

ଉପସ୍ଥିତ କ୍ଷେତ୍ରରେ ସଖୀଟି ମୋ ମାନସିକ ଅବସ୍ଥାକୁ ବେଶ୍ ହୃଦୟଙ୍ଗମ କରି ପାରୁଥିଲା । ତା' ପ୍ରତି କରିଥିବା ଅଶାଳୀନ ମନ୍ତବ୍ୟ ପ୍ରତି ମଧ୍ୟ ସେ ଗୁରୁତ୍ୱ ଆରୋପ କରୁ ନଥିଲା । ଟିକିଏ ରହି ସେ କହିଲା,- ''ଜେମା, ମାନବେତର ପଶୁ ମଧ୍ୟ ତା'ର ଜନ୍ମିତ ସନ୍ତାନ ପ୍ରତି ଏକାନ୍ତ ମମତାମୟୀ ହୋଇ ଉଠିଥାଏ । ଜୀବନକୁ ବାଜି ଲଗାଇ ସେ ତା ସନ୍ତାନର ସୁରକ୍ଷା କରିବାକୁ କୁଣ୍ଠିତ ହୁଏ ନାହିଁ । ତୁମେତ ମାନବୀ, ପୁଣି ସାଧାରଣ ମାନବୀ ନୁହଁ, ରାଜଜେମା, ବିଦ୍ୟା, ବୁଦ୍ଧି, ସ୍ନେହ ଓ ମମତା ଆଦି ସକଳ ସଦ୍‌ଗୁଣରେ ବିମଣ୍ଡିତା ଏକ ଆଦର୍ଶ ନାରୀ । ତୁମକୁ ମୋ ପରି ଜଣେ ଇତର ଶ୍ରେଣୀର ଦାସୀଟାଏ କି ପରାମର୍ଶ ଦେଇ ପାରିବ ?

କେବଳ ଏତିକି କହୁଛି,- ''ପରିସ୍ଥିତି ପ୍ରତି ଅନ୍ଧ ହୋଇ ମମତା, ସ୍ନେହ ବା ବାତ୍ସଲ୍ୟ ପଛରେ ଧାଇଁଲେ ତୁମେ ଝୁଣ୍ଟି ପଡ଼ିବ । ହାତ ଗୋଡ଼ ଖଣ୍ଡିଆ ହୋଇଯିବ । ଯେଉଁ ଘାଆ ସୃଷ୍ଟି ହେବ, ତାହାର ଉପଶମ ପାଇଁ କୌଣସି ମଲମ ବା ପ୍ରଲେପ ଆଦୌ କାର୍ଯ୍ୟକାରୀ ହେବ ନାହିଁ । ବର୍ତ୍ତମାନ ତୁମକୁ ଏ ନବ ଜାତକର କମନୀୟ ମୁଖ-ମଣ୍ଡଳ ବିମୁଗ୍ଧ କରି ପକାଇଛି । ମୋତେ କିନ୍ତୁ ଏହାର ପରବର୍ତ୍ତୀ ପରିସ୍ଥିତିର ବିକଟ ଦୃଶ୍ୟ ଜଳଜଳ ହୋଇ ଦେଖା ଗଲାଣି । ମୋ କଥା ନମାନିଲେ ଝଡ଼ ଉଠିବ, ପ୍ରଳୟ ହେବ । ସେଇ ଝଡ଼ରେ ମୁଁ, ତୁମେ ଓ ଆହୁରି ଅନେକ ନିର୍ଦ୍ଦୋଷ ଲୋକ ଦୂରକୁ- ବହୁଦୂରକୁ କୁଟାଖିଅ ପରି ଉଡ଼ିଯିବେ । ରକ୍ଷା କରିବାକୁ କେହି ଆଗେଇ ଆସିବେ ନାହିଁ । ଆସିଲେ ମଧ୍ୟ କିଛି କରି ପାରିବେ ନାହିଁ । ସେତେବେଳକୁ ଏ ମମତା, ଏ ସ୍ନେହ ଓ ବାତ୍ସଲ୍ୟର ଚିହ୍ନବର୍ଣ୍ଣ ବି ନଥିବ । ଖାଲି ଥିବ-ଲାଞ୍ଛନା, ଅପମାନ ଓ ସାମାଜିକ ତାଡ଼ନା । ନୀରବ ଅଶ୍ରୁ ମୁଞ୍ଚନ ଓ ମର୍ମଦାହକୁ ପାଥେୟ କରି ମୃତବତ୍ ବଞ୍ଚି ରହିବାକୁ ପଡ଼ିବ । ସତ କହୁଛି, ମୁଁ ଆଉ ଆଦୌ ଅପେକ୍ଷା କରିବା ପାଇଁ ପ୍ରସ୍ତୁତ ନୁହେଁ । ଏଥର ମୋ କଥା ପ୍ରତି ଧ୍ୟାନ ଦିଅ । ସମୟ ଆମ ପାଇଁ ଅପେକ୍ଷା କରିବ ନାହିଁ ।

ଶୁଣ, ବିବାହିତା ନାରୀ ପକ୍ଷରେ ସନ୍ତାନ ଏକ ଆଶୀର୍ବାଦ ତଥା ଗୌରବର ପ୍ରତୀକ । ସମାଜ ଏହି ସନ୍ତାନକୁ ସ୍ୱୀକୃତି ଦେଇଥାଏ । ଚିନ୍ତାକରି କହ ତୁମେ କାହାର ବିବାହିତା ପତ୍ନୀ ? ସମାଜ ତୁମ ବିବାହକୁ ସ୍ୱୀକୃତି ଦେଇଛି ତ ? କେଉଁ ସ୍ୱୟଂବରରେ ତୁମେ ମନୋମତ ପତି ବରଣ କରିଥିଲ ? ଏ ନବ-ଜାତ ଶିଶୁଟିର ପିତୃ ପରିଚୟ କ'ଣ ? ଯଦି ମୋ ପ୍ରଶ୍ନ ଗୁଡ଼ିକର ଯଥାର୍ଥ ଉତ୍ତର

ତୁମ ପାଖରେ ଅଛି, ତେବେ ନିଶ୍ଚିନ୍ତ ମନରେ ପୁତ୍ର-ସ୍ନେହରେ ନିଜକୁ ହଜାଇ ଦିଅ । ଯଦି ଉତ୍ତର ଦେବାକୁ ଅକ୍ଷମ, ତେବେ ଅପତ୍ୟ ସ୍ନେହରେ ଅନ୍ଧହୋଇ ନିଜର ସୁନ୍ଦର ଭବିଷ୍ୟତକୁ ଜାଣିଶୁଣି ନଷ୍ଟ କରି ପକାଅ ନାହିଁ । ପୁନଶ୍ଚ ତୁମର ଏ ଅବିବେକୀତା ଅନ୍ୟ ଅନେକଙ୍କର ମୁଣ୍ଡ-ବ୍ୟଥାର କାରଣ ନହେଉ ଏହାହିଁ ମୋର ପରାମର୍ଶ ।''

ମୁଁ କିଛି ଶୁଣିବା ଅବସ୍ଥାରେ ନଥିଲି । କି ଏକ ଅଜଣା ମାଦକତା ମୋର ପ୍ରାଣକୁ ପୁଲକିତ କରିବାରେ ଲାଗିଥାଏ । ମୁଁ ଭଲ ମନ୍ଦ ବିଚାର କରିବାର ଶକ୍ତି ହରାଇ ବସିଥିଲି । ସଖୀର କଥା ଗୁଡ଼ାକ ମୋତେ ଅତ୍ୟନ୍ତ ଶ୍ରୁତିକଟୁ ବୋଧ ହେଲା । ହଠାତ୍ କହି ଉଠିଲି,- ''ମୋ ଅନ୍ତରରେ ଛପି ରହିଥିବା ମାତୃତ୍ୱ ଆଜି ଆତ୍ମ ପ୍ରକାଶ କରି ମୋ ଆଖି ଆଗରୁ ସକଳ ନିନ୍ଦା ଅପବାଦକୁ ପଛକୁ ଠେଲି ଦେଲାଣି । ମୁଁ ସମାଜକୁ ଭୟ କରେ ନାହିଁ । ରାଜ ଅନ୍ତଃପୁରର ଭୋଗ ବିଳାସ ମଧ୍ୟ ମୋର ଲୋଡ଼ା ନାହିଁ । ଲୋକେ ମୋ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତୁ । ତଥାପି ମୁଁ ମୋ ନିଷ୍ପତ୍ତିରୁ ଟଳିବାକୁ ପ୍ରସ୍ତୁତ ନୁହେଁ । ସର୍ବସ୍ୱ ବିନିମୟରେ ମୁଁ ମୋର ଏହି ଅମୂଲ୍ୟ ବିଭୂତିକୁ ନିଶ୍ଚୟ ରକ୍ଷା କରିବି । ଏହାହିଁ ମୋର ଶେଷ ନିଷ୍ପତ୍ତି ।''

ମୋ କଥା ଗୁଡ଼ାକ ସଖୀକୁ ବିଚଳିତ କରି ପକାଇଲା । ସେ ଉତ୍ତେଜିତ କଣ୍ଠରେ କହିଲା,- ''କଥାରେ ଅଛି ବିନାଶ କାଳେ ବିପରୀତ ବୁଦ୍ଧି । ତା' ନହୋଇଥିଲେ, ରମଚନ୍ଦ୍ରଙ୍କ ପରି ମହାପୁରୁଷଙ୍କ ବୁଦ୍ଧିଭ୍ରମ ହୋଇ ନଥାନ୍ତା । ଦେଖୁଛି ବର୍ତ୍ତମାନ ତୁମର ସେଇ ଅବସ୍ଥା ଆସି ଯାଇଛି । ତୁମେ ଅମାବାସ୍ୟାର ଘନ-ତମିସ୍ରାକୁ ଶୀତଳ-ଜ୍ୟୋତ୍ସ୍ନା ବୋଲି ମନେକରିବାକୁ ଆରମ୍ଭ କଲଣି । ଏକଥା ଭୁଲିଗଲେ ଚଳିବ ନାହିଁ ଯେ ତୁମେ ମଥୁରାର ପବିତ୍ର ଯଦୁବଂଶରେ ଜନ୍ମ ଲାଭ କରି ଦତ୍ତକ କନ୍ୟା ଭାବରେ କୁନ୍ତଳକୁ ଆସିଛ । ବର୍ତ୍ତମାନ ତୁମେ ଉଭୟ ରାଜବଂଶର ଯୋଗସୂତ୍ର । ଦୁଇଟି ଅତି ସମ୍ଭ୍ରାନ୍ତ ରାଜକୁଳର ଗରିମା-ମୟ ସ୍ୱାଭିମାନକୁ ମାଟିରେ ମିଶାଇ ଏକ ଅବୈଧ ସନ୍ତାନକୁ କୋଳରେ ଧରି କୁନ୍ତଳ ରାଜ-ରାସ୍ତାରେ ପଦଚାରଣ କରିବାକୁ ତୁମେ ଗୌରବ ବୋଲି ମନେ କରି ପାରିବତ ? ଯେତେ ସଫାଇ ଦେଇ ଇନ୍ଦ୍ର-ଚନ୍ଦ୍ର, ସବିତା, ବରୁଣଙ୍କ ନାମ ଉଚ୍ଚାରଣ କଲେ ମଧ୍ୟ ସମାଜ ଏହାକୁ ଜାରଜ ସନ୍ତାନ ବୋଲି କହିବାକୁ ଏତେ

ଟିକିଏ ବି ଦ୍ୱିଧା ପ୍ରକାଶ କରିବ ନାହିଁ । ଅଧିକନ୍ତୁ ତୁମକୁ କୁଳଟା, ବ୍ୟଭିଚାରିଣୀ ଓ ରାଜ ପରିବାରର କଳଙ୍କ ବୋଲି କହି ଘୋର ନିନ୍ଦା ରଟନା କରିବ । ଏ ସବୁକୁ ବିଚାର କରି ଶୀଘ୍ର ନିଷତ୍ତି ଗ୍ରହଣ କର । ସମୟ ବହୁତ କମ୍ ।''

ସଖୀର ପରାମର୍ଶ ଗୁଡ଼ିକ ପ୍ରତି ଅବହିତ ହୋଇ ଭାବିଲି,- ''କଥାଗୁଡ଼ିକ ଶାଣିତ ହେଲେ ମଧ୍ୟ ଉପେକ୍ଷଣୀୟ ନୁହେଁ । ଏକ ପକ୍ଷରେ ସ୍ନେହ, ମମତା, ଓ ବାତ୍ସଲ୍ୟ ଅପର ପକ୍ଷରେ ସମାଜ, ଅପବାଦ, ଲଜ୍ଜା ଏବଂ ଅପମାନର ପୁଞ୍ଜିଭୂତ ଆକ୍ରମଣ, ଏ ଉଭୟ ସଂକଟର ସମ୍ମୁଖୀନ ହୋଇ ମୁଁ କର୍ତ୍ତବ୍ୟ ନିର୍ଦ୍ଧାରଣ କରି ପାରୁ ନଥାଏ ।

ମୋ ନୀରବତା ଭଙ୍ଗ କରି ସଖୀଟି କହିଲା, ''ହେମା, ମୁଁ ତ ଛାର ଦାସୀଟାଏ । ଦାରିଦ୍ର୍ୟର ନିପୀଡ଼ନ ହିଁ ମୋତେ ଦାସୀ ହେବାକୁ ବାଧ୍ୟ କରିଛି । ତୁମର ଭୋଗ ବିଳାସ ଓ ପ୍ରାଚୁର୍ଯ୍ୟ ଦେଖି ମନେ ମନେ ତୁମପରି ସୁଖ-ସୌଭାଗ୍ୟ ପାଇବାକୁ ବାସନା ଜାଗ୍ରତ ନହୋଇଛି ଏପରି ନୁହେଁ । ମାତ୍ର ବର୍ତ୍ତମାନ ମୋର ସେ ଭ୍ରମ ଦୂର ହୋଇ ଯାଇଛି । ଭାବୁଛି ଦାସୀଟିଏ ହୋଇ ରହିବା କୋଟିଗୁଣେ ଭଲ । ମୁଁ ଯେପରି ଅଛି ତାହାହିଁ ମୋ ପାଇଁ ଯଥାର୍ଥ । ମୁଁ ଯଦି ରାଜ-ନନ୍ଦିନୀ ହୋଇଥାନ୍ତି, ହୁଏତ ତୁମରିପରି ବେପରୁଆ ହୋଇ ଏକ ଅବୈଧ ସନ୍ତାନକୁ ଜନ୍ମ ଦେଇଥାନ୍ତି । ମୋର ବର୍ତ୍ତମାନ ଓ ଭବିଷ୍ୟତ ଉଭୟ ଜଳିପୋଡ଼ି ଭଷ୍ମ ହେବାକୁ ଯାଉଥିବା ବେଳେ ମୁଁ କିଛି ହେଲେ ଭାବି ପାରନ୍ତି ନାହିଁ । ଛାଡ଼, ବହୁତ କହି ସାରିଲିଣି । ଆଉ କହିବାକୁ ସମୟ ମଧ୍ୟ ନାହିଁ କି ତୁମଠାରୁ ସ୍ନେହ, ମମତା, ବାତ୍ସଲ୍ୟ ଆଦିର ବର୍ଣ୍ଣନା ଶୁଣିବା ପାଇଁ ମୁଁ ଏଠାରେ ଅଧିକ ସମୟ ରହିବାକୁ ଉଚିତ ମନେ କରୁନାହିଁ । ତୁମେ ତୁମର ଅମୂଲ୍ୟ ରତ୍ନକୁ କୋଳରେ ଧରି ସ୍ୱର୍ଗ-ସୁଖ ଅନୁଭବ କରୁଥାଅ । ମୁଁ ମୋ ଦରିଦ୍ରର ଭାଗ୍ୟ ନେଇ ଏଠାରୁ ତୁରନ୍ତ ଚାଲି ନଗଲେ ତୁମ ଲାଗି ମୁଁ ମଧ୍ୟ ସମାଜ-ପରିତ୍ୟକ୍ତା ହେବାର ସମ୍ଭାବନା ବହୁତ ବେଶୀ । ତୁମକୁ ପ୍ରବର୍ତ୍ତାଇ ପର-ପୁରୁଷ ସହିତ ଅବୈଧ ସଂପର୍କ ସ୍ଥାପନର ଯୋଗ-ସୂତ୍ର ବୋଲି ମୋ ନାମରେ ପ୍ରଚାର ଆରମ୍ଭ ହୋଇଯିବ । ତୁମର ବଡ଼ଘର, ବଡ଼ ଗୁମର କଥା । କିନ୍ତୁ ମୋ ପରି ଜଣେ ଦାସୀର ପୁରସ୍କାର ହେବ ପ୍ରାଣଦଣ୍ଡ । ସମ୍ଭୋଗ ସୁଖ ତୁମର । ବିନା ଦୋଷରେ ମରିବି ମୁଁ । ବାଃ, ବାଃ, କି ବିଚିତ୍ର ବିଚାର, ନା ଆଉ ନୁହେଁ, ମୁଁ ଯାଉଛି । ତୁମେ ଯାହା ଇଚ୍ଛା କରୁଛ କରୁଥାଅ ।''

ସଖୀର ବାକ୍ୟ ଗୁଡ଼ିକ ଅତ୍ୟନ୍ତ ଶ୍ରୁତିକଟୁ ହେଲେ ମଧ୍ୟ ତହିଁରେ ସତ୍ୟତା ଥିଲା । ଭାବିଲି, ସତରେ କ'ଣ ମୁଁ ମୋର ବର୍ତ୍ତମାନ ସିଦ୍ଧାନ୍ତରେ ଦୃଢ଼ ରହି ପାରିବି ? ନିନ୍ଦା, ଲୋକାପବାଦ ଓ ସାମାଜିକ ତାଡ଼ନା ଆଦିକୁ ମୁଣ୍ଡପାତି ସହ୍ୟ କରି ପାରିବି ? ପ୍ରାଣ-ପ୍ରିୟ ସନ୍ତାନଟିର ପିତୃ-ପରିଚୟ ଦେବାକୁ ମୁଁ ନିତାନ୍ତ ଅସମର୍ଥ ହେବି ନାହିଁକି ? ପୁଣି କୁମାରୀ-କନ୍ୟାର ମାତୃତ୍ୱକୁ କିଏ କେତେ ପ୍ରକାର ଚିତ୍ରଣ କରି ମୋତେ ଯନ୍ତ୍ରଣା ଜର୍ଜରିତ କରିବାରେ ଲାଗିବେ । ବର୍ତ୍ତମାନ ସର୍ବସ୍ୱ ହୋଇ ମୁଁ ମୋର ଭବିଷ୍ୟତକୁ ଜଳାଞ୍ଜଳି ଦେବା ବିବେକାନୁମୋଦିତ ହେବ ନାହିଁ । ନାରୀ-ଜୀବନ ବାସ୍ତବରେ ଅତ୍ୟନ୍ତ ଦୟନୀୟ । ଯେତେବେଳେ ତା' ସମ୍ମୁଖରେ ସତ୍ୟ ଓ ମର୍ଯ୍ୟାଦା ଉଭୟେ ଉପସ୍ଥିତ ହୁଅନ୍ତି, ସେତେବେଳେ ସେ ନିଃସଙ୍କୋଚରେ ସତ୍ୟକୁ ଉପେକ୍ଷା କରି ମର୍ଯ୍ୟାଦାକୁ ଅଗ୍ରାଧିକାର ଦେଇଥାଏ । ମୋ କ୍ଷେତ୍ରରେ ସନ୍ତାନ ସତ୍ୟ ହେଲେ ମଧ୍ୟ ମର୍ଯ୍ୟାଦା ସେ ସତ୍ୟକୁ କବଳିତ କରି ପକାଉଛି । ସତ୍ୟକୁ ଆଶ୍ରୟ କଲେ ମୋର ମାନ, ସମ୍ମାନ ଓ ବଂଶ ମର୍ଯ୍ୟାଦା ସବୁକିଛି ଧୂଳିସାତ୍ ହୋଇଯିବ । ଏଣୁ ଆଉ କାଳ ବିଳମ୍ବ ନକରି ସଖୀ ସହିତ ପରାମର୍ଶ କରିବା ଏକାନ୍ତ ବିଧେୟ ମନେକରି ବ୍ୟଥାଭରା କଣ୍ଠରେ କହିଲି,- ''ସଖୀ, ବିନା ଦୋଷରେ ତୋ ମନରେ ଆଘାତ ଦେଇ ଥିବାରୁ ମୁଁ ଗଭୀର ଅନୁତପ୍ତ । ବର୍ତ୍ତମାନ ଉପସ୍ଥିତ ବିପଦରୁ ରକ୍ଷା ପାଇବାର ଉପାୟ ଚିନ୍ତା କରିବା ନିତାନ୍ତ ପ୍ରୟୋଜନ ।''

ସଖୀଟି ଅଳ୍ପ ହସି କହିଲା,- ''ଜେମା, ତୁମର କଟୁକ୍ତି ବା ଅପମାନ ମୋ ମନରେ କୌଣସି ରେଖାପାତ କରି ନାହିଁ । ମୁଁ ଗରିବ, ରାଜ ଦ୍ୱାରରେ ଆଶ୍ରୟ ପ୍ରାର୍ଥିନୀ ଜଣେ ଅସହାୟା ଅବଳା । ନିଆଶ୍ରୀ ଲୋକର ଆତ୍ମ-ସମ୍ମାନ, ଇଜ୍ଜତ, ମହତ ଆଦି ଉଦର-ଜ୍ୱାଳା ସମ୍ମୁଖରେ ନିତାନ୍ତ ନିଷ୍ପ୍ରଭ । ଅପମାନ ତ ମୋ ପରି ଦରିଦ୍ରମାନଙ୍କର ଅଙ୍ଗଭୂଷଣ । ସେଥିପାଇଁ ଅଯଥାରେ ଦୁଃଖ କର ନାହିଁ । ତୁମେ ଉତ୍କ୍ଷିପ୍ତ ହେବାର କାରଣ ମୁଁ ଜାଣେ । କିନ୍ତୁ ନିରୁପାୟ । ସାମାନ୍ୟ କିଛି ସୁଯୋଗ ଥିଲେ, ମୁଁ ତୁମକୁ ପୁତ୍ର ଶୋକାତୁରା ହେବାକୁ କଦାପି ଦେଇନଥାନ୍ତି । ଦେଖୁଛି, ଆମ ଆଗରେ ଅନ୍ୟ ବିକଳ୍ପ ନାହିଁ । ଏହି ଲତା ଗୁଳ୍ମ ଆଚ୍ଛାଦିତ ଅରଣ୍ୟ ମଧ୍ୟରେ ଶିଶୁଟିକୁ ଛାଡ଼ିଯିବା ବ୍ୟତୀତ ମୁଁ ଆଉ କିଛି ଚିନ୍ତା କରିପାରୁ ନାହିଁ ।''

ସଖୀର ଏ ନିଷ୍ଠୁର ପ୍ରସ୍ତାବ ଶୁଣୁ ଶୁଣୁ ମୁଁ ପୁଣି କ୍ରୋଧ ଜର୍ଜରିତ ହୋଇ

ଉଠିଲି । ପର ମୁହୂର୍ତ୍ତରେ ନିଜକୁ ସଂଜତ କରି କହିଲି,- ''ଏ ଘୋର ବିପଦ ବେଳେ ତୁ ମୋର ଏକମାତ୍ର ଭରସା । ଏ ଅମୂଲ୍ୟ ସଂପଦଟିକୁ ଶ୍ୱାପଦ ସଂକୁଳ ଅରଣ୍ୟ ମଧ୍ୟରେ ଏକାକୀ ଛାଡ଼ିଯିବା କଥା ତୋ ତୁଣ୍ଡରୁ ବାହାରିଲା କିପରି ? ଅନୁରୋଧ କରୁଛି ତୁ ଅନ୍ୟ କିଛି ଉପାୟ ଚିନ୍ତାକର, ଯହିଁରେ ମୋ ପ୍ରାଣସଙ୍ଖାଳିଟି ଜୀବନରେ ରହିଯିବ ।''

ସଖୀ ମୋର ଅତ୍ୟନ୍ତ ବିମର୍ଷ ହୋଇ କହିଲା, ''ଜେମା, ମୋ କଥା ପାଇଁ ମୁଁ ଗଭୀର ଅନୁତପ୍ତ । ତଥାପି ଉପସ୍ଥିତ କ୍ଷେତ୍ରରେ କର୍ତ୍ତବ୍ୟ-ସଚେତନ ହୋଇ ମୁଁ ସେପରି କହିବାକୁ ବାଧ ହୋଇଥିଲି । ମୁଁ ଜଣେ ନାରୀ । ପ୍ରତ୍ୟେକ ନାରୀ ସ୍ନେହ, କରୁଣା, ଦୟା ଓ କ୍ଷମାର ମୂର୍ତ୍ତିମନ୍ତ ଅବତାର । ନାରୀହିଁ ନାରୀ ହୃଦୟର ବେଦନା ଗଭୀର ଭାବରେ ଉପଲବ୍ଧି କରିଥାଏ । ଏ ସବୁ ସତ୍ୱେ ମୁଁ ତୁମର, ମୋର ଓ ରାଜ ପରିବାରର ଆତ୍ମ-ସମ୍ମାନ ରକ୍ଷା କରିବା ପାଇଁ ଅଧିକ ସଚେତନ ହୋଇ ପଡ଼ିଛି । ସନ୍ତାନର ଜନ୍ମଦାତ୍ରୀ ତୁମେ । ଅସହ୍ୟ ଗର୍ଭ ଯନ୍ତ୍ରଣାକୁ ତୁମେ ହସି ହସି ସହ୍ୟ କରି ନେଇଛ । ସେଥିପାଇଁ ସାମାନ୍ୟତମ ବ୍ୟଥା ମଧ ମୁଁ ଅନୁଭବ କରିନାହିଁ । ଏକଥା ସତ୍ୟ । ମାତ୍ର ଏକଥା ମଧ ଅଧିକ ସତ୍ୟଯେ, ମୁଁ ଦୁର୍ବଳତା ପ୍ରକାଶ କରି ତୁମ ଚିନ୍ତା ସହିତ ନିଜକୁ ଜଡ଼ିତ କରିଦେଲେ ଅବସ୍ଥା ସାଂଘାତିକ ହୋଇଉଠିବ । ତେଣୁ ହୃଦୟର ନାରୀ-ସୁଲଭ ସକଳ ଦୁର୍ବଳତାକୁ ଅବଦମିତ କରି ମୁଁ ଉପସ୍ଥିତ କ୍ଷେତ୍ରରେ ପରିସ୍ଥିତିକୁ ସମ୍ଭାଳିବା ପାଇଁ ଗଭୀର ଭାବରେ ଚିନ୍ତାକୁଳ ଥିଲି ।

ମୁଁ ତୁମ ମାନସିକ ଅବସ୍ଥା ବିଷୟରେ ସଂପୂର୍ଣ୍ଣ ସଚେତନ । ତୁମ ଦୁଃଖରେ ଗଭୀର ଭାବରେ ଦୁଃଖିତ । ଜାଣିଜାଣି ଏପରି ଏକ ନିଷ୍ପାପ ଶିଶୁକୁ ବନ ମଧ୍ୟରେ ଏକାକୀ ଛାଡ଼ିଯିବା ପାଇଁ କୌଣସି ପିଶାଚିନୀ ମଧ ଇଚ୍ଛା କରିବ ନାହିଁ । ଆମ କଥା ତ ସ୍ୱତନ୍ତ୍ର । ତେବେ ଏହି କୋମଳ ପଦ୍ମ କଳିକାଟିର ଜୀବନ ରକ୍ଷା ପାଇଁ ମୁଁ ଅନ୍ୟ ଏକ ବିକଳ୍ପ ଚିନ୍ତା କରି ସାରିଲିଣି । ତେଣିକି ଭଗବାନ ହିଁ ଭରସା ।''

ଆଉ ଅଧିକ ସମୟ ନଷ୍ଟ ନକରି ସେ ଅରଣ୍ୟରୁ କିଛି ଲଟି ଆଣି ଅତି କ୍ଷିପ୍ରଗତିରେ ଏକ ପେଟିକା ନିର୍ମାଣ କରିବାରେ ଲାଗିଗଲା । ଅଳ୍ପ ସମୟ ମଧ୍ୟରେ ପ୍ରସ୍ତୁତ ପେଟିକାଟିରେ ଅନେକ ଗୁଡ଼ିଏ ସଜଫୁଟା ଫୁଲ ଆଣି ବିଛାଇ ଦେଲା । ଏକ ପୁଷ୍ପଶଯ୍ୟା ପ୍ରସ୍ତୁତ ହୋଇଗଲା । ମୁଁ କେବଳ ଚାହିଁ ରହିଥାଏ ।

ହଠାତ୍ ମୋ ଠାରୁ ଶିଶୁଟିକୁ ନେଇ ସେ ସେଇ ପୁଷ୍ପ ଶଯ୍ୟା ଉପରେ ଶୁଆଇ ଦେଲା ଏବଂ ତା ସୁନ୍ଦର ମୁହଁରେ ବାରମ୍ବାର ଚୁମ୍ବନ ଦେବାରେ ଲାଗିଲା । ଲକ୍ଷ୍ୟକଲି ସଖୀ ଆଖିରେ ଲୋତକର ବନ୍ୟା । ମୁଁ କିଛି ବୁଝିପାରୁ ନଥାଏ । ସେ ମୋତେ ଟାଣି ନେଇ କହିଲା- ''ସଖୀ, ଆଉ ସମୟ ନାହିଁ । ହୃଦୟର ସମସ୍ତ ସ୍ନେହ, ମମତା ଓ ଆଶୀର୍ବାଦ ଦେଇ ଏହି କୋମଳ କମଳ କଳିକାଟିକୁ ଶେଷଥର ପାଇଁ ଆଖି ପୁରାଇ ଦେଖିନିଅ ।''

ସେହି ସମୟରେ ମୋର ମାନସିକ ଅବସ୍ଥା ଅବର୍ଣ୍ଣନୀୟ, କଣ୍ଠ ବାଷ୍ପାକୁଳ, ନେତ୍ର ଦ୍ୱୟରୁ ଗଙ୍ଗା ଯମୁନାର ଅବାରିତ ସ୍ରୋତ । ଅନନ୍ୟୋପାୟ ହୋଇ ପୁଷ୍ପଶଯ୍ୟାରେ ଶାୟିତ ସେହି ଅପୂର୍ବ ଶିଶୁଟିର ମୁଖ, କପାଳ, ହସ୍ତ ଆଦିରେ ଅଜସ୍ର ଚୁମ୍ବନ ଆଙ୍କି ଦେବାରେ ଲାଗିଲି । ତା ସର୍ବାଙ୍ଗରେ ମୋର କମ୍ପିତ ହସ୍ତକୁ ବାରମ୍ବାର ଚାଳନା କରି ମୁଁ କେତେ ଯେ କଥା ଭାବିଗଲି ତା'ର ଇୟତା ନଥିଲା । ସମୟ ସଚେତନ ସଖୀଟି ମୋ ଠାରୁ ପେଟିକାଟି ନେଇ ନଦୀର ପ୍ରବହମାନ ସ୍ରୋତରେ ଭସାଇ ଦେଲା । ମୋର ପଲକ ପଡ଼ିଲା ନାହିଁ । ଭାସି ଭାସି ଯାଉଥିବା ପେଟିକାଟିକୁ ଅନାଇ ରହିଲି । ନଦୀ ଆଡୁ ମୁହଁ ଫେରାଇବାକୁ ଆଦୌ ଇଚ୍ଛା ହେଉନଥାଏ । ସତେ ଯେପରି ମୋ ପ୍ରାଣପକ୍ଷୀ ସେହି ପେଟିକା ସହିତ ଦୂରକୁ ଦୂରକୁ ଭାସି ଯାଉଛି ।

ହଠାତ୍ ସଖୀଟି ମୋତେ ହଲାଇ ଦେଇ କହିଲା,- ''ବହୁତ ହୋଇଗଲା, ଏବେ ଚଞ୍ଚଳ ଉଆସକୁ ଫେରିଯାଅ । ମୁଁ ଚମକି ପଡ଼ି ପ୍ରକୃତିସ୍ଥ ହୋଇଗଲି । ସଖୀକୁ କହିଲି, '' ଠିକ୍ କହିଛୁ, ମୁଁ ଏକାକୀ ଫେରିଯାଉଛି । ତୁ ମୋ ଧନ ପ୍ରତି ଦୃଷ୍ଟି ରଖି ନଦୀ ତୀରେ ତୀରେ ଅଗ୍ରସର ହେଉଥା । ପରେ ମୋତେ ଖବର ଦେବୁ ।''

ପ୍ରାସାଦରେ ପହଞ୍ଚି ମଧ୍ୟ ମୋ ପ୍ରାଣସତ୍ତାକୁ ସେହି ମଞ୍ଜୁଷା ସହିତ ଭସାଇ ଦେଇଥିବା ପରି ଅନୁଭବ କରିବାରେ ଲାଗିଲି । କାହାକୁ ବା କ'ଣ କହିବି ? ଉଆସରେ ଥିବା ଅଗଣିତ ଦାସୀ, ପରିବାରୀ କେହି ମୋ ମନ ଭିତରର ଗୋପନ ବେଦନା ସଂପର୍କରେ କିଛି ଜାଣି ପାରିବାର ସୁଯୋଗ ନଦେବା ପାଇଁ ମୁଁ ସର୍ବଦା ସତର୍କ ରହିଲି । ମୋର ନିତି ଦିନର ଚଳଣିରେ କେହି କିଛି ବ୍ୟତିକ୍ରମ ଲକ୍ଷ୍ୟ କରି ପାରିଲେ ନାହିଁ ।

ଦୁଇଦିନ ପରେ ସଖୀ ଆସି କହିଲା,- ‘‘ଜେମା, ଶୁଭ ଖବର । ମଂଜୁଷାଟି ଧୀରେ ଧୀରେ ଭାସି ଯାଇ ଆମ ରାଜ୍ୟ ସୀମା ପାରହେବା ପରେ ଅଙ୍ଗରାଜ୍ୟର ସୀମା ସ୍ପର୍ଶ କଲା । ଠିକ୍ ସେହି ସମୟରେ ଜଣେ ବ୍ୟକ୍ତି ନଦୀରେ ସ୍ନାନ କରୁଥିଲେ । ନାମ ଅଧିରଥ । ପେଟିକାଟି ଦୃଷ୍ଟିଗୋଚର ହେବାମାତ୍ରେ ସେ କୌତୂହଳୀ ହୋଇ ତାକୁ ଜଳରୁ ଉଠାଇ ଆଣିଲେ । ତନ୍ମଧ୍ୟସ୍ଥ ସୁକୋମଳ ତେଜୋଦ୍ଦୀପ୍ତ ଶିଶୁଟିକୁ ଦେଖି ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସଂପୂର୍ଣ୍ଣ ଆର୍ଦ୍ର ପରିଧେୟ ବସ୍ତ୍ର ପ୍ରତି ଦୃଷ୍ଟିନଦେଇ । ସେ ଅତ୍ୟନ୍ତ କ୍ଷିପ୍ର ଗତିରେ ଗୃହକୁ ଗମନ କଲେ । ହାତରେ ପେଟିକା, ମୁହଁରେ ଅପୂର୍ବ ଉଲ୍ଲାସ । ପିନ୍ଧା ବସନରୁ ଧାର ଧାର ପାଣି ବହି ଯାଉଥାଏ । କୌଣସି କଥା ପ୍ରତି ଦୃଷ୍ଟି ନଦେଇ ସେ ରାଧା, ରାଧା ତୁମେ କେଉଁଠି ଅଛ ? ଶୀଘ୍ର ଆସି ଦେଖ । ଭଗବାନ ଏତେଦିନ ଆମ ଆକୁଳ ପ୍ରାର୍ଥନା ପୂରଣ କରିଛନ୍ତି । ଆଜି ମୁଁ ବହୁତ ଖୁସି । ଜୀବନରେ ଏପରି ଆନନ୍ଦ ମୁଁ କେବେ ଅନୁଭବ କରି ନଥିଲି । ଆଜିଠାରୁ ଆମେ ନିଃସନ୍ତାନ ବୋଲି କେହି କହି ପାରିବେ ନାହିଁ । ଧନ୍ୟ ପ୍ରଭୁ, ଧନ୍ୟ ତୁମର କରୁଣା । ଏ ଅଧମ ଅଧିରଥର ସହସ୍ର ପ୍ରଣାମ ଗ୍ରହଣ କରନ୍ତୁ ପ୍ରଭୁ ।’’

ମଞ୍ଜୁଷା ଭିତରେ ଥିବା ଶିଶୁ-ପୁତ୍ରଟିକୁ ଦେଖିବା ମାତ୍ରେ ରାଧାର ହୃଦୟ ସ୍ନେହ-ସିକ୍ତ ହୋଇ ଉଠିଲା । ସେ ତାର ଅପୂର୍ବ ରୂପ ଲାବଣ୍ୟରେ ଏପରି ତନ୍ମୟ ହୋଇ ଯାଇଥିଲା ଯେ କିପରି ଆଣିଲ, କେଉଁଠୁ ଆଣିଲ ଆଦି ପଚାରିବାକୁ ଭୁଲି ଯାଇ ତାକୁ ନିଜ ଛାତିରେ ଜଡାଇ ଧରିଲା । କି ଏକ ଅନନୁଭୂତ ପୁଲକରେ ତା’ର ଅନ୍ତର ଭରି ଉଠିଲା ।

ଅଧିରଥ ଗଦ୍‌ଗଦ୍ ହୋଇ ସମସ୍ତ ଘଟଣା କହିବା ପରେ ରାଧା ଜାଣିଲା ଯେ ଏ ଶିଶୁଟିକୁ କେହି ଦାବି କରିବାର ସମ୍ଭାବନା ନାହିଁ । ପତିପତ୍ନୀ ଦୁହେଁ ନିଜ-ଜନ୍ମିତ ପୁତ୍ରଠାରୁ ଅଧିକ ସ୍ନେହ ଆଦର ଦେଇ ତାକୁ ପ୍ରତିପାଳନ କରିବାରେ ଲାଗି ପଡ଼ିଲେ । ପିଲାଟିର ନାମ କରଣ ହେଲା ବସୁଷେଣ । ଏହି କଥାଟିକୁ ମହାଭାରତରେ ବର୍ଣ୍ଣନା କରାଯାଇଛି-

ତମୁତ୍ ସୃଷ୍ଟଂ ଜଳେ ଗର୍ଭଂ ରାଧାଭର୍ତ୍ତା ମହାଯଶାଃ
ରାଧାୟଃ କଳ୍ପୟ ମାସ ପୁତ୍ରଂସୋଽଧିରଥ ସ୍ତଦା ।

★ ★ ★ ★ ★ ★ ★ ★ ★ ★ ★

ଦମ୍ପତି ବସୁଷେଣେତି ଦିକ୍ଷୁ ସର୍ବାସ୍ତ୍ର ବିଶ୍ରୁତମ୍ ।

ସଖୀଠାରୁ ସୁ ସଂବାଦ ପାଇ ମନେ ମନେ ଅତ୍ୟନ୍ତ ଆନନ୍ଦିତ ହେଲି । ମୋ ଧନ ମାତୃ-ଉତ୍ସଙ୍ଗର ଉଷ୍ଣତା ତଥା ସ୍ନେହ ଶ୍ରଦ୍ଧାରୁ ବଞ୍ଚିତ ହୋଇ ନାହିଁ ଜାଣି ପରମତୃପ୍ତିଲାଭ କଲି ।ଧୀରେ ଧୀରେ ମୋ ହୃଦୟ ଶାନ୍ତ ହୋଇ ଆସିଲା ।

ଦିନପରେ ଦିନ ଗଡ଼ି ଚାଲିଥାଏ । କେଜାଣି କାହିଁକି ମୋ ଅଙ୍ଗଲତାରେ କେତେକ ପରିବର୍ତ୍ତନ ଲକ୍ଷ୍ୟ କଲି । ଶରୀର ପୃଥୁଳ ହୋଇ ଆସିଲା । ରଙ୍ଗ ମଧ୍ୟ ପ୍ରଭା-ହୀନ ହେଲା । ନିତମ୍ବ-ଲମ୍ବିତ କାକ-କୃଷ୍ଣ କବରୀ ତାମ୍ରାଭ ଦେଖାଗଲା । ବୟସ ମଧ୍ୟ ବଢିବାରେ ଲାଗିଥାଏ । ଅଧିକ ବିଳମ୍ବ ନକରି ପିତା ମୋର ବିବାହ ପାଇଁ ଆୟୋଜନ କଲେ । ବହୁ ରାଜପୁତ୍ର ସ୍ୱୟଂବର ସଭାରେ ସମବେତ ହେଲେ । ମୁଁ ସଖୀଙ୍କ ଗହଣରେ ଥାଇ ରାଜପୁତ୍ର ମାନଙ୍କୁ ନିରୀକ୍ଷଣ କରୁଥାଏ । ଚତୁରୀ ସଖୀ ଅନର୍ଗଳ ଭାବରେ ରାଜକୁମାର ମାନଙ୍କ ପ୍ରଶସ୍ତିଗାନରେ ମୁଖର ହୋଇ ଉଠୁଥାଏ । ଏପରି କହିବାରେ ତା'ର ଦକ୍ଷତାକୁ ପ୍ରଶଂସା ନକରି ରହି ପାରିଲି ନାହିଁ । ସମବେତ ରାଜକୁମାର ମାନଙ୍କ ମଧ୍ୟରୁ ମୁଁ ପଣ୍ଡୁଙ୍କ ପ୍ରତି ଏକାନ୍ତ ଆକୃଷ୍ଟ ହୋଇ ପଡ଼ିଲି । ପଣ୍ଡୁହିଁ ମୋତେ ସବୁଠାରୁ ସୁନ୍ଦର ପୁରୁଷ ରୂପେ ମନେ ହେଲେ । ମୁଁ ତାଙ୍କରି ଗଳାରେ ବରଣମାଳା ଲମ୍ବାଇ ଦେଲି । ମହାଭାରତରେ ଅଛି ।

ତତଃ କାମ ପରିତାଙ୍ଗୀ
ସକୃତ ପ୍ରଚଳ ମାନସା
ବ୍ରୀଡାମାନା ସ୍ରଜଂ କୁନ୍ତୀ
ରାଜ୍ଞ ସ୍କନ୍ଧେ ସମାସୃଜତ୍-

ସତ କହିବାକୁ ଗଲେ ବିବାହ ବେଦୀର ହସ୍ତଗ୍ରନ୍ଥି, ମଙ୍ଗଳ ସୂତ୍ର ଧାରଣ ଓ ସ୍ୱାମୀଙ୍କ ସହ ଅଗ୍ନିପ୍ରଦକ୍ଷିଣ କରିବା ନାରୀ ଜୀବନର ଅଭୁଲା ସ୍ମୃତି ହୋଇ ରହିଯାଏ ସାରା ଜୀବନ । ଉଲ୍ଲସିତ ଉତ୍ଫୁଲିତ ହୋଇ ଉଠେ କୁମାରୀ କନ୍ୟାର କୋମଳ ହୃଦୟ । ବିବାହ ବେଦୀରେ ପାଦଦେବା ବେଳେ ଚମକି ପଡ଼ିଲି । ଭାବିଲି ମୁଁ ଏବେ କ'ଣ କରିବାକୁ ଯାଉଛି ? ଅଗ୍ନିଙ୍କୁ ସାକ୍ଷୀରଖି ନିଜକୁ ଅକ୍ଷତ କୁମାରୀ ବୋଲି ଗର୍ବ କରି ପାରିବିତ ? ନା କଦାପି ନୁହେଁ । ତଥାପି ମୋତେ ସେପରି ଅଭିନୟ କରିବାକୁ ହେବ । ଟିକିଏ ଏପଟ ସେପଟ ହେଲେ ପରିଣାମ ଭୟାବହ ହୋଇ ଉଠିବ । ନାରୀ ସମ୍ମୁଖରେ ସତ୍ୟ ଓ ମର୍ଯ୍ୟାଦାର ପ୍ରଶ୍ନ ଉଠିଲେ ସେ ସତ୍ୟକୁ ହିଁ ଉପେକ୍ଷା କରିଥାଏ । ମୋ କ୍ଷେତ୍ରରେ ତାହାହିଁ ହେଲା । ସବୁ

କଥା ଭୁଲି ମୁଁ ନବବଧୂ ବେଶରେ ବେଦୀକୁ ଗଲି । ବିବାହ କାର୍ଯ୍ୟ ସଂପନ୍ନ ହୋଇଗଲା ।

ଏଥର ମୁଁ କୁନ୍ତଳର ସମସ୍ତ ସଂପର୍କ ତ୍ୟାଗ କରିବି । ସଖୀମାନଙ୍କ ଗହଣରେ ଅରଣ୍ୟ ଭ୍ରମଣ ଆଜିଠାରୁ ସ୍ୱପ୍ନ ହୋଇଯିବ । ମୁଁ ହେବି ହସ୍ତିନା ରାଜପ୍ରାସାଦର ମହାରାଣୀ-ମହାରାଜା ପଣ୍ଡୁଙ୍କର ଧର୍ମପତ୍ନୀ । ମନ ବ୍ୟଥିତ ହେଉଥାଏ । ପର ମୁହୂର୍ତ୍ତରେ ଭବିଷ୍ୟତର ସୌଭାଗ୍ୟ ଚିନ୍ତା କରି ମୁଁ ବହୁ ସୁଖ-ସ୍ୱପ୍ନର କଳ୍ପନା ମଧ୍ୟ କରୁଥାଏ ।

ଅଳ୍ପଦିନ ମଧ୍ୟରେ ମୁଁ ପ୍ରାସାଦର ସମସ୍ତଙ୍କଠାରୁ ସ୍ନେହ, ଶ୍ରଦ୍ଧା ଓ ଆଦର ଲାଭ କରି ପରମ ଶାନ୍ତିରେ ଦିନ କାଟିବାରେ ଲାଗିଲି । ବିଶେଷ କରି ମହାରାଜାଙ୍କର ଅକୃତ୍ରିମ ସ୍ନେହ-ସାଗରରେ ବୁଡିରହି ଅପାର ଆନନ୍ଦ ଅନୁଭବ କରୁଥାଏ । ଅଳ୍ପ କେତେ ବର୍ଷର ଯୁଗ୍ମ-ଜୀବନ, ପ୍ରୀତି ପ୍ରଣୟର ପବିତ୍ର ଫଲ୍ଗୁସ୍ରୋତ ମୃତ୍ୟୁପରେ ମଧ୍ୟ ମୋ ହୃଦୟରୁ ଲିଭି ପାରୁନାହିଁ ।

ପ୍ରାଚୁର୍ଯ୍ୟ ଓ ସୁଖ-ସ୍ୱାଛନ୍ଦ୍ୟ ମଧରେ ହଜିଯାଇ ମୁଁ ମୋର ସେହି କାଳିମାମୟ ଅତୀତକୁ ଭୁଲି ଯାଇଥିଲି କିଛି କାଳପାଇଁ । ଭାବିଥିଲି ଭୁଲି ଯିବାହିଁ ବିଜ୍ଞତା । ଅତୀତର ଅନୁସ୍ମରଣରେ ନିଜର ବର୍ତ୍ତମାନ ଓ ଭବିଷ୍ୟତକୁ ନଷ୍ଟକରିଦେବା ଏକାନ୍ତ ଅବିବେକୀତା ଅଟେ । ମାତ୍ର ତାହା ସମ୍ଭବ ହୋଇ ପାରି ନଥିଲା । ମୁଁ ଶତଚେଷ୍ଟା କରି ମଧ୍ୟ ଅତୀତକୁ ସମ୍ପୂର୍ଣ୍ଣ ଭୁଲି ପାରିଲି ନାହିଁ । ପ୍ରାଚୁର୍ଯ୍ୟ ଓ ବିଳାସର ବକ୍ଷଚିରି ସେଇ କାଳିମାମୟ ଅତୀତ ବେଳେ ବେଳେ ମୋ ଆଗରେ ଉଭା ହୋଇ କହେ,- ଦେବତୁଲ୍ୟ ସ୍ୱାମୀଙ୍କୁ ତୁ ପ୍ରତାରିତ କରିଛୁ । ବାସ୍ତବତାର କଣ୍ଠରୋଧ କରି ଛଳନାର ଆଶ୍ରୟ ନେଇଛୁ । ସତ୍ୟ ଉପରେ ମିଥ୍ୟାର ବିଜୟ ଆଦୌ ସମ୍ଭବ ନୁହେଁ । ଦିନେ ନା ଦିନେ ଯେ କୌଣସି କାରଣରୁ ହେଉନା କାହିଁକି ଅସତ୍ୟର ଆବରଣ ଉନ୍ମୋଚିତ ହୋଇ ସତ୍ୟହିଁ ଆତ୍ମ-ପ୍ରକାଶ କରିବ । ସେତେବେଳେ ତୋ ଅବସ୍ଥା କ'ଣ ହେବ ଭାବିଛୁ ତ ! ଏ ସବୁକୁ ମୁଁ ସହ୍ୟ କରିପାରେ ନାହିଁ । ମୋର ସମଗ୍ର ଶରୀର କମ୍ପି ଉଠେ । ମୁଁ କ୍ଷଣକାଳ ଉପାୟ ଶୂନ୍ୟ ହୋଇ ପଡ଼େ । ମନକୁ ବୁଝାଇବାକୁ ଚେଷ୍ଟା କରେ । ମାତ୍ର ଯେତେଯାହା କଲେ ମଧ୍ୟ ମୁଁ ମାନସିକ ଦୁଶ୍ଚିନ୍ତାରୁ ମୁକ୍ତି ପାଇପାରୁ ନଥାଏ ।

ଆଗରୁ କହିଛି- ମହାରାଜ ଶାନ୍ତନୁଙ୍କ ପରେ ତାଙ୍କର ଦୁଇପୁତ୍ର ଅକାଳ ମୃତ୍ୟୁ ବରଣ କରିଥିବାରୁ ଦୁଇ ବିଧବା ପୁତ୍ରବଧୂ ନିଯୋଗ ଦ୍ୱାରା ଦୁଇଟି ପୁତ୍ର-

ସନ୍ତାନ ଲାଭ କରିଥିଲେ । ବଡ଼ ଧୃତରାଷ୍ଟ୍ର ଜନ୍ମ ସମୟରୁ ହିଁ ଦୃଷ୍ଟିହୀନ ଥିଲେ । ସାନଭାଇ ପଣ୍ଡୁଙ୍କର ରାଜସିଂହାସନ ପ୍ରାପ୍ୟ ନୁହେଁ । ଅଥଚ ଜନ୍ମାନ୍ଧ ଦେଢଶୁର ରାଜ୍ୟ ଶାସନ ପରି ଗୁରୁଦାୟିତ୍ୱ ଗ୍ରହଣ କରିବା ଏକାନ୍ତ ଅସମ୍ଭବ । ଏହି କାରଣରୁ ମନ୍ତ୍ରୀପରିଷଦ, ପଣ୍ଡିତ ମଣ୍ଡଳୀ ଓ ଉପଦେଷ୍ଟାମାନେ ମୋ ସ୍ୱାମୀ ରାଜ-ତିଳକର ଅଧିକାରୀ ହେବା ପାଇଁ ନିଷ୍ପତ୍ତି ଗ୍ରହଣ କଲେ । ସ୍ୱାମୀଙ୍କ ଅସାଧାରଣ ଶକ୍ତି, ରଣ ନିପୁଣତା ଓ ସର୍ବୋପରି ଅକୃତ୍ରିମ ପ୍ରଜା-ବତ୍ସଳତା ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ପକାଇଲା । ରାଜ୍ୟବାସୀ ମହାରାଜ ଶାନ୍ତନୁଙ୍କ ସହିତ ପଣ୍ଡୁଙ୍କୁ ତୁଳନା କରି ଅଜସ୍ର ପ୍ରଶଂସା କରିବାରେ ଲାଗିଲେ ।

ଦେଢଶୁର ଗାନ୍ଧାର ରାଜ-କନ୍ୟା ଗାନ୍ଧାରୀଙ୍କୁ ବିବାହ କରିଥିଲେ । ସ୍ୱାମୀଙ୍କ ଅନ୍ଧତ୍ୱକୁ ନିଜ ଆଖିରେ ନଦେଖିବା ପାଇଁ କିବା ଅନ୍ୟ କୌଣସି କାରଣରୁ ଗାନ୍ଧାରୀ ସବୁଦିନ ପାଇଁ ନିଜ ଆଖିରେ ପଟିବାନ୍ଧି ନିଜକୁ ଅନ୍ଧୁଣୀ କରି ଦେଇଥିଲେ । ଦେଢଶୁରଙ୍କ ସ୍ୱଭାବ ଆଦୌ ଭଲ ନଥିଲା । ସେ ମୋ ସ୍ୱାମୀଙ୍କ ପ୍ରଶଂସା ଆଦୌ ସହ୍ୟ କରି ପାରୁନଥିଲେ । ନିଜର ନ୍ୟାୟୋଚିତ ପ୍ରାପ୍ୟ ହସ୍ତିନା ସିଂହାସନରୁ ବଞ୍ଚିତ ହୋଇ ସେ ଈର୍ଷା ଓ ମର୍ମବେଦନାରେ ସର୍ବଦା ଜର୍ଜରିତ ହେଉଥିଲେ । ତା ସାଙ୍ଗକୁ ଦେଢଶୁରଙ୍କ ମାତା ଅମ୍ବିକା ନ୍ୟାୟତଃ ରାଜମାତାର ସମ୍ମାନ ପାଇବା କଥା । ମାତ୍ର ଭାଗ୍ୟର ବିଡ଼ମ୍ବନା ଯୋଗୁଁ ସାନ ଭଉଣୀ ଅର୍ଥାତ ମୋ ଶାଶୁ ଅମ୍ବାଳିକା ରାଜମାତା ହେବାର ଗୌରବ ଲାଭ କରିଥିଲେ । ଏକଥା ସତ୍ୟଯେ ଅମ୍ବିକା ଓ ଅମ୍ବାଳିକା ଏକ ମା' ପେଟର ଦୁଇ ଭଉଣୀ ଥିଲେ । ମାତ୍ର ଏକଥା ମଧ୍ୟ ଭୁଲିଯିବା ଉଚିତ ନୁହେଁ ଯେ ଦୁଇ ଭଉଣୀ ଦୁଇ ସଉତୁଣୀ ଭାବରେ ରହିଥିଲେ । ଭାଗ୍ୟର ଏହି କ୍ରୁର ଉପହାସକୁ ଅମ୍ବିକା ଆଦୌ ସହଜରେ ଗ୍ରହଣ କରି ପାରୁ ନଥିଲେ । ବରଂ ମାତା ଓ ପୁତ୍ର ଏକାନ୍ତ ଈର୍ଷା ଜର୍ଜରିତ ହୋଇ ମନେ ମନେ ଅତି ହିଂସ୍ର ଓ ପ୍ରତିଶୋଧ ପରାୟଣ ହୋଇ ଉଠିଲେ; ମାତ୍ର ବାହାରକୁ କିଛି ଜଣାଉ ନଥିଲେ । ଅଗ୍ନି ଦୀର୍ଘକାଳ ଭସ୍ମାଚ୍ଛାଦିତ ହୋଇ ରହି ନପାରିଲା ପରି ଆମକୁ ସବୁ ଗୋପନ ରହସ୍ୟ ଅବିଦିତ ରହିଲା ନାହିଁ । ତେଣୁ ମାତା ଅମ୍ବିକା ଓ ଦେଢଶୁରଙ୍କ ପ୍ରୀତିବର୍ଦ୍ଧନ ପାଇଁ ମୁଁ, ମୋ ସ୍ୱାମୀ ଏବଂ ମୋ ଶାଶୁ ଆପ୍ରାଣ ଚେଷ୍ଟା କରିବାରେ ଲାଗିଲୁ । ମାତ୍ର ସମସ୍ତେ ଅକୃତକାର୍ଯ୍ୟ ହୋଇଥିଲୁ । ଆମ ସେବା ଯତ୍ନ ବିପରୀତ ଫଳ ପ୍ରସବ କଲା ।

ତାଙ୍କ ଈର୍ଷାନଳରେ ଆମର ଯାବତୀୟ ଉଦ୍ୟମ ଘୃତାହୁତି ପରି ମନେ ହେଲା । ସ୍ୱାର୍ଥପରତା, ପରଶ୍ରୀକାତରତା ଏବଂ ଈର୍ଷା ମଣିଷକୁ କିପରି ସର୍ବନାଶ ଆଡ଼କୁ ଟାଣିନିଏ, ଧୃତରାଷ୍ଟ୍ରଙ୍କ ଜୀବନୀ ତା'ର ଏକ ଜ୍ୱଳନ୍ତ ନିଦର୍ଶନ ।

ରାଜ-ଅନ୍ତଃପୁର ଆମକୁ ଅଶାନ୍ତିର ଗନ୍ତାଘର ପରି ବୋଧ ହେବାରେ ଲାଗିଲା । ସବୁ ଥାଇ ସବୁ ପାଇ ମଧ୍ୟ କିଛି ନ ପାଇବା ପରି ମନେ ହେଲା । ତଥାପି ସେଇ ଅଶାନ୍ତି ମଧ୍ୟରେ ଚଳିବା ବ୍ୟତୀତ ଆମର ଅନ୍ୟ ଉପାୟ ନଥିଲା ।

ମହାରାଜ ପଣ୍ଡୁ ଅତ୍ୟନ୍ତ ଶିକାର ପ୍ରିୟ ଥିଲେ । ଅନେକ ସମୟରେ ସେ ଘନ ଅରଣ୍ୟ ମଧ୍ୟକୁ ଶିକାର ଉଦ୍ଦେଶ୍ୟରେ ଯାଇଥାନ୍ତି । ରାଜ-ଅନ୍ତଃପୁରରୁ ଅଧିକାଂଶ ସମୟ ସେ ବାହାରେ କଟାଇବାକୁ ଉଚିତ ମନେକରୁଥିଲେ । ବିବାହ ପରେ ମୁଁ କୁନ୍ତଳ ଛାଡ଼ି ହସ୍ତିନା ଆସିଲି । ଅନ୍ତଃପୁରର ଅସୂର୍ଯ୍ୟମ୍ପସ୍ୟା ଜୀବନ ଅନେକ ସମୟରେ ମୋତେ ଅସହ୍ୟ ବୋଧ ହେଉଥାଏ । ଚତୁର ସ୍ୱାମୀ ମୋର ମାନସିକ ଅବସ୍ଥାକୁ ଅତି ସହଜରେ ବୁଝିନେଲେ ଓ ମୋର ସନ୍ତୋଷ ବିଧାନ ଉଦ୍ଦେଶ୍ୟରେ ହସ୍ତିନା ରାଜ୍ୟର ନୈସର୍ଗିକ ଶୋଭା-ସମ୍ଭାରର ମନୋଜ୍ଞ ବର୍ଣ୍ଣନା କରି ମୋର ବିସ୍ମୃତ ପ୍ରାୟ ଅନୁଭୂତିକୁ ପୁନର୍ବାର ଜୀବନ୍ତ କରି ତୋଳିଲେ । ମହାରାଜାଙ୍କ ସହିତ କାନନ-ବିହାର ପାଇଁ ମୋତେ ଅନୁମତି ମିଳିଗଲା ।

ଏଣିକି ସ୍ୱାମୀ ଶିକାରକୁ ଯିବା ସମୟରେ ଅଧିକାଂଶ ସମୟ ମୋତେ ସଙ୍ଗରେ ନେଇଥାନ୍ତି । ଅରଣ୍ୟ ମଧ୍ୟରେ ସେ ମୋ ହାତଧରି ଆଗକୁ ଆଗକୁ ଚାଲୁଥିବା ବେଳେ ଅନେକ ପ୍ରୀତିପ୍ରଦ କଥା କହି ମୋତେ ଉଲ୍ଲସିତ କରୁଥାନ୍ତି । ମଝିରେ ମଝିରେ ଶିକାର କଥା ଭୁଲି ମୋତେ ନିବିଡ ଆଶ୍ଳେଷରେ ଜଡାଇ ଧରନ୍ତି । ଅରଣ୍ୟର ଶୋଭା ସାଙ୍ଗକୁ ଏ ଅକୃତ୍ରିମ ସ୍ନେହ ମୋତେ ଅଭିଭୂତ କରିପକାଉଥାଏ । ଲତାଗୁଳ୍ମ ଘେରା ନିବିଡ଼ ଅରଣ୍ୟର ବକ୍ଷ ଚିରି କଳ କଳ ନାଦରେ ବହି ଯାଉଥିବା ସ୍ରୋତସ୍ୱିନୀ ଜଳରେ ଭାସମାନ ଝରାଫୁଲ ଓ ଅଗଣିତ ପତ୍ରକୁ ଦେଖି ମୁଁ ହଠାତ୍ ଚମକି ପଡ଼େ । ମୋ ଅବଚେତନ ମନରେ ଝଡ଼ ସୃଷ୍ଟି ହୁଏ । ସୁପ୍ତ ମାତୃତ୍ୱ ବିଳାପ କରି ଉଠେ । କେଉଁ ହଜିଲା ଅତୀତର କରୁଣ ସ୍ମୃତି ମୋ ଚକ୍ଷୁ ସମକ୍ଷରେ ପୁଣି ଜୀବନ୍ତ ହୋଇ ଠିଆ ହୋଇଯାଏ । ପରକ୍ଷଣରେ ମୁଁ ନିଜକୁ ସଂଯତ କରିନିଏ ।

ଆଲୁଅ ପରେ ଅନ୍ଧାର ଆସେ । ନିରବଚ୍ଛିନ୍ନ ସୁଖ ବା ଦୁଃଖ କାହାର ଭାଗ୍ୟ ଲିପି ନୁହେଁ । ଦୁଃଖ ପରେ ସୁଖ ଓ ସୁଖ ପରେ ଦୁଃଖ ଭୋଗ କରିବା

ପ୍ରକୃତିର ଏକ ଚିରନ୍ତନ ନିୟମ । ତେଣୁ ପଣ୍ଡିତମାନେ କହିଛନ୍ତି- ଚକ୍ରବତ୍ ପରିବର୍ତ୍ତନ୍ତି, ସୁଖାନିତ ଦୁଃଖାନିଚ । ମୋ ଭାଗ୍ୟରୁ ହଠାତ୍ ସୁଖର ଦିନ ସରି ଆସିଲା । ତା' ବଦଳରେ ଭୋଗକଲି ଦୁଃଖ, ମାନସିକ ଅବସାଦ ଓ ପୁଞ୍ଜିଭୂତ ଅଶାନ୍ତିର ତୀବ୍ର ଜ୍ୱଳନ । ଉପସ୍ଥିତ କ୍ଷେତ୍ରରେ ମୁଁ କ'ଣ କରିବି କିଛି ସ୍ଥିର କରି ପାରିଲି ନାହିଁ । ମୋତେ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା ।

ଘଟଣାଟି ଶୁଣନ୍ତୁ-

ଭୀଷ୍ମଦେବ ମୋ ଶ୍ୱଶୁରଙ୍କ ବଡ଼ ଭାଇ । ହସ୍ତିନା ରାଜବଂଶର ଅଭିବୃଦ୍ଧି ଥିଲା ତାଙ୍କର ଲକ୍ଷ୍ୟ । ରାଜ ଉଆସ ଅନେକ ଶିଶୁଙ୍କ କଳରୋଳରେ ମୁଖରିତ ହେବା ପାଇଁ ସେ ମନେ ମନେ ଚିନ୍ତା କରୁଥାଆନ୍ତି । ତେଣୁ ମୋ ସ୍ୱାମୀଙ୍କ ପାଇଁ ସେ ଅନ୍ୟଏକ ପତ୍ନୀର ବ୍ୟବସ୍ଥା କରୁଥିବା ସଂବାଦରେ ମୁଁ ଚମକି ପଡ଼ିଲି । ଦୁଃଖରେ ମୋ ଛାତି ଫାଟିଗଲା ପରି ଅନୁଭୂତ ହେଲା । ଭାବିଲି ଆଜନ୍ମ ବ୍ରହ୍ମଚାରୀ ଭୀଷ୍ମଦେବ ବଂଶବୃଦ୍ଧି ପାଇଁ ଯାହା କରିବାକୁ ଯାଉଛନ୍ତି, ସେଥିରେ ମୋ ଦଶା କ'ଣ ହେବ, ସେ କଥା ତିଳେ ହେଲେ ଚିନ୍ତା କରୁନଥିବା ମୋତେ ବିସ୍ମିତ କରିପକାଇଲା । ବ୍ରହ୍ମଚାରୀ ଭାବରେ ଜୀବନ ବିତାଉଥିବା ଭୀଷ୍ମଦେବ ନାରୀ-ହୃଦୟର ବ୍ୟଥା ଅନୁଭବ କରନ୍ତେ ବା କିପରି ? ଜଣେ ନାରୀ ପାଇଁ ସପତ୍ନୀର ଉପସ୍ଥିତ କିପରି ବେଦନା ଦାୟକ ତାହା କେବଳ ଆଉ ଜଣେ ନାରୀହିଁ ଉପଲବ୍ଧି କରି ପାରିବ ସିନା- ପୁରୁଷ ନୁହେଁ । କୌଣସି ନାରୀ ସପତ୍ନୀର ଉପସ୍ଥିତ ସହ୍ୟ କରି ପାରେ ନାହିଁ । ଏକଥା ଆଜନ୍ମ ବ୍ରହ୍ମଚାରୀ ଭୀଷ୍ମଙ୍କ ଧାରଣାକୁ ଆସିବ କିପରି ?

କଥାର ସତ୍ୟତା ଜାଣିବା ପରେ ମୁଁ ଅତ୍ୟନ୍ତ ବିବ୍ରତ ହୋଇ ମହାରାଜାଙ୍କୁ ମୋ ମନକଥା ଜଣାଇଲି ଓ ଏ ପ୍ରକାର କାର୍ଯ୍ୟ ନ କରିବାକୁ ତାଙ୍କୁ ବାରମ୍ବାର ଅନୁରୋଧ କଲି । ମାତ୍ର ସବୁ ନିଷ୍ଫଳ ହେଲା । ସ୍ୱାମୀଙ୍କ ଠାରୁ ଉତ୍ତର ମିଳିଲା,- ''ଭୀଷ୍ମଦେବଙ୍କ ଇଚ୍ଛାକୁ ବିରୋଧ କରାଯାଇ ନପାରେ ।'' ଯାହାଙ୍କ ସମ୍ମୁଖରେ ଛିଡ଼ା ହେବା ପାଇଁ ମୋର ସାହସ ହୁଏ ନାହିଁ, ମୁଁ କିପରି ତାଙ୍କ ଇଚ୍ଛା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବି ? ଏହା ଆଦୌ ସମ୍ଭବ ନୁହେଁ । ସେ ଯାହା ଚାହୁଁଛନ୍ତି ତାହାହିଁ ହେବ । ସ୍ୱାମୀଙ୍କ ଉତ୍ତର ଶୁଣି ମୁଁ ଜାଣିଗଲି ଯେ ମୋ ଭାଗ୍ୟରୁ ସୁଖ, ଶାନ୍ତିର ଦିନ ସରିଆସିଲା । ପୁରୁଷ ପ୍ରଧାନ ସମାଜରେ ନାରୀ ସର୍ବଦା

ଅବହେଳିତ । ପୁରୁଷର ଦାସୀତ୍ୱ ହିଁ ତା'ର ଭାଗ୍ୟଲିପି । ସ୍ତ୍ରୀର ନିଜ ଇଚ୍ଛା ବୋଲି କିଛି ନାହିଁ । ପୁରୁଷ ହାତର କ୍ରୀଡନକ ଠାରୁ ସ୍ତ୍ରୀକୁ ଅଧିକ ସମ୍ମାନ ଦେବା ପାଇଁ ସମାଜ ଆଦୌ ଇଚ୍ଛୁକ ନୁହେଁ । 'ନାରୀନାଂ ଭୂଷଣଂ ଲଜ୍ୟା'- ବାକ୍ୟ ଦ୍ୱାରା - ସ୍ତ୍ରୀମାନଙ୍କୁ ସ୍ପଷ୍ଟ କିଛି କହିବାର ଅଧିକାରରୁ ଜାଣିଶୁଣି ବଞ୍ଚିତ କରାଯାଇଛି । ଅଥଚ୍ ପୁରୁଷ ମାନଙ୍କ ପାଇଁ ଲଜ୍ଜାର ଆବଶ୍ୟକତା ଉପଲବ୍ଧ ହୁଏ ନାହିଁ । ତେଣୁ ବିଧାନ କରି ଦିଆଗଲା- ପୁରୁଷ ଯେତେ ଇଚ୍ଛା ପତ୍ନୀ ଗ୍ରହଣ କରିପାରେ । ମାତ୍ର ସ୍ତ୍ରୀ ଅନ୍ୟ ପୁରୁଷକୁ ଚାହିଁ ଦେଲେ ବେଦ ଅଶୁଦ୍ଧ ହୋଇଯାଏ । ସ୍ତ୍ରୀର ଦ୍ୱିତୀୟ ବିବାହ ସମାଜରେ ଘୋର କଳଙ୍କ ଓ ପାପ ବୋଲି ବିବେଚିତ ହୋଇଥାଏ । କିନ୍ତୁ ପୁରୁଷର ଅନେକ ସ୍ତ୍ରୀ ଗ୍ରହଣକୁ ପୌରୁଷର ଆଖ୍ୟା ଦିଆ ଯାଏ । ଯାହା ପୁରୁଷ ପାଇଁ ଗୌରବ, ତାହା ସ୍ତ୍ରୀ ପାଇଁ କଳଙ୍କର ବାର୍ତ୍ତାବହ ବୋଲି ଅନେକ ଶାସ୍ତ୍ର ରଚନା କରାଯାଇଛି ।

ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ନୀରବରେ ଅଶ୍ରୁ ମୁଞ୍ଚନ ବ୍ୟତୀତ ମୋର ଅନ୍ୟକିଛି ଉପାୟ ନଥିଲା । ଭୀଷ୍ମଦେବଙ୍କ ଖିଆଲହିଁ ମୋର ସୁନାର ସଂସାରକୁ ପୋଡ଼ିଜାଳି ଧ୍ୱଂସ କରିଦେବ, ଏଥିରେ ମୋର ଆଉ ଅଣୁମାତ୍ର ସନ୍ଦେହ ରହିଲା ନାହିଁ ।

ଏ ବିବାହରେ ସ୍ୱାମୀଙ୍କର ପ୍ରଛନ୍ନ ସ୍ୱୀକୃତି ଥିବାର ଉପଲବ୍ଧି କରି ମୁଁ ତୀବ୍ର ମାନସିକ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲି । ମୋର ଯାହା ସମ୍ପୂର୍ଣ୍ଣ ଭାବରେ ପ୍ରାପ୍ୟ ସେଥିରୁ ଅନ୍ୟକୁ ଭାଗଦେବା କଥା ଚିନ୍ତା କଲା ବେଳକୁ ମୋ ଛାତି ଫାଟିଗଲା ପରି ଅନୁଭବ କଲି ।

ଉପାୟ ଶୂନ୍ୟ ହୋଇ ମୁଁ ଭଗବାନଙ୍କ ଶରଣାପନ୍ନ ହେଲି । ଭଗବାନ ମଧ୍ୟ ନିଷ୍ଠୁର ହୋଇ ଉଠିଲେ । ଯେହେତୁ ସେ ନିଜେ ଜଣେ ପୁରୁଷ । ପୁରୁଷର ନାରୀ ପ୍ରତି ଅବିଚାରକୁ ସେ ବୋଧହୁଏ ସମର୍ଥନ କରନ୍ତି । ଏହି ଧାରଣା କରିବା ବ୍ୟତୀତ ମୋର ଆଉ ଚାରା ବା କ'ଣ ଥିଲା !

ମହାରାଜାଙ୍କ ଦ୍ୱିତୀୟ ବିବାହ ସ୍ଥିର ହୋଇଗଲା । ବାସୀଫୁଲ ପ୍ରତି ଭ୍ରମର ଆକୃଷ୍ଟ ନହେଲା ପରି ନାରୀର ସୌନ୍ଦର୍ଯ୍ୟ ମଉଳିଗଲେ ପୁରୁଷ ନିଜ ଚେହେରା ଆଡ଼କୁ ଦୃଷ୍ଟି ନଦେଇ ନାରୀକୁହିଁ ଅଦରକାରୀ ବୋଲି ମନେ କରିଥାଏ । ଏତ ସଂସାରର ଚିରା-ଚରିତ ଗତି । ମୁଁ ବା କ'ଣ କରି ପାରିଥାନ୍ତି ।

ଶୁଣିଲି- ମଦ୍ରରାଜ୍ୟ ଅଧିପତି ଶଲ୍ୟଙ୍କ ଭଗ୍ନି ମାଦ୍ରୀଙ୍କ ସହିତ ମହାରାଜାଙ୍କ ଦ୍ୱିତୀୟ ବିବାହ ସ୍ଥିର ହୋଇଗଲା । ରୂପବତୀ ମାଦ୍ରୀଙ୍କ ବିବାହରେ ଆମ ପ୍ରଚଳିତ ପରମ୍ପରା ଅନୁସୃତ ହୋଇ ନଥିଲା । ମହାରାଜା ପଣ୍ଡୁ ବିପୁଳ ଧନରତ୍ନ ଓ ଅସୁମାରି ବିଭବ ବିନିମୟରେ ମାଦ୍ରୀଙ୍କ ପାଣି ଗ୍ରହଣ କଲେ ।

ଯଥା ସମୟରେ ମାଦ୍ରୀ ହସ୍ତିନା ରାଜ ପ୍ରାସାଦ ଅଳଂକୃତ କଲେ । ମୋ ଅଧିକାରରେ ଭାଗ ବସାଇବା ପାଇଁ ଆସିଥିବା ସୌଭାଗ୍ୟବତୀଟିକୁ ଥରେ ଉତ୍ତମ ରୂପେ ଦେଖିନେବା ପାଇଁ ମୋର ପ୍ରବଳ ଆଗ୍ରହ ଜାତ ହେଲା । ହୃଦୟର କୋହ ଓ ମନର ବ୍ୟଥାକୁ ଚାପିରଖି ମୁଁ ମାଦ୍ରୀଙ୍କ ନିକଟକୁ ଗଲି । ଦେଖିଲି ମାଦ୍ରୀ ଅସାମାନ୍ୟ ଲାବଣ୍ୟମୟୀ ଏକ ଯୁବତୀ ରତ୍ନ । ତାଙ୍କ ମୁଖ ମଣ୍ଡଳର ଯୌବନୋଜ୍ଜ୍ୱଳ ଅପୂର୍ବ ଶୋଭା ମୋତେ କ୍ଷଣକ ମଧ୍ୟରେ ବିମୋହିତ କରି ପକାଇଲା । ସେ ପରିପୂର୍ଣ୍ଣ ନାରୀତ୍ୱର ସକଳ ବିଭବ ବିମଣ୍ଡିତ ଅନାଘ୍ରାତ ଅଚୁମ୍ବିତ ବିକଚ କମଳଟିଏ ପରି ଶୋଭା ପାଉଥିଲେ । ମୁଁ ସପତ୍ନୀତ୍ୱ ଭୁଲି ତାଙ୍କ ରୂପମାଧୁରୀକୁ ମନେ ମନେ ପ୍ରଶଂସା କରିବାରେ ଲାଗିଲି ।

ଅଳ୍ପ ସମୟ ପରେ ମୁଁ ମୋ ଶୟନ କକ୍ଷକୁ ଫେରି ଆସିଲି । ହଠାତ୍ ମୋର ମାନସିକ ପରିବର୍ତ୍ତନ ହେଲା । ଭାବିଲି, ମାଦ୍ରୀର ଏ ରୂପ-ଯୌବନ, ଅପ୍ସରା ବିନିନ୍ଦିତ ମୁଖ-ମଣ୍ଡଳର ଅପୂର୍ବ ଶୋଭା ହିଁ ମୋର ଯାବତୀୟ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇ ଉଠିବ । ମାଦ୍ରୀର ସୌନ୍ଦର୍ଯ୍ୟ ଅଳ୍ପଦିନ ମଧ୍ୟରେ ମୋତେ ଏକ ଅଲୋଡ଼ା ଅନାବଶ୍ୟକ ନାରୀରେ ପରିଣତ କରିଦେବ । କ୍ରୋଧ, ଅସୂୟା ଓ ମାନସିକ ଯନ୍ତ୍ରଣାରେ ମୁଁ ଅସ୍ଥିର ହୋଇ ଉଠିଲି । କେବଳ ମାଦ୍ରୀ ଯୋଗୁଁ ହିଁ ମୋର ସବୁ ସୁଖ, ସବୁ ଆଶା ଧୂଳିସାତ୍ ହୋଇ ଯିବାର କଳ୍ପନାରେ ମୁଁ ଥରି ଉଠିଲି । ଏଇ ନବାଗତାଟି ମୋ ପାଇଁ ଏକ କ୍ରୁର ଅଭିଶାପ ବ୍ୟତୀତ ଆଉ କିଛି ନୁହେଁ ଏ ଧାରଣା ମୋତେ ଭୀତତ୍ରସ୍ତ କରି ପକାଇଲା । ମାଦ୍ରୀର ରୂପ ଓ ଯୌବନର ଜ୍ୟୋତି ମହାରାଜାଙ୍କୁ ଯେତିକି ଆହ୍ଲାଦିତ କରିବ, ତା'ଠାରୁ କାହିଁ କେତେଗୁଣରେ ମୋତେ ବେଦନାର୍ତ୍ତ କରି ପକାଇବ । ମୋ ଠାରୁ ମହାରାଜାଙ୍କୁ ଛଡାଇ ନେବା ପାଇଁ ମାଦ୍ରୀକୁ ଅଧିକ ସମୟ ଲାଗିବ ନାହିଁ । ଏଥିପାଇଁ ମୁଁ ଏକାନ୍ତ ଭାବରେ ଅସୂୟା ଜର୍ଜରିତ ହୋଇ ଉଠିଲି ।

ସପତ୍ନୀମାନଙ୍କ ଭାଗ୍ୟରେ ଯାହା ସଚରାଚର ଘଟିଥାଏ, ମୋ ପାଇଁ ତାହାର ବ୍ୟତିକ୍ରମ ହେବ କାହିଁକି ? ନାନା କଥା ଭାବି ମୁଁ ଛଟପଟ ହେବାରେ

ଲାଗିଲି । ମୋତେ ସବୁ କିଛି ବିଷପରି ବୋଧ ହେଲା । ଭାଗ୍ୟକୁ ନିନ୍ଦା କରିବା ଛଡ଼ା ମୋର ବା ଆଉ ଚାରା କ'ଣ ଥିଲା ? ମନକୁ ବୋଧ ଦେଇ ଅବସ୍ଥା ଲକ୍ଷ୍ୟ କରିବାକୁ ସ୍ଥିର କଲି ।

ବେଶୀ ଦିନ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ସପତ୍ନୀମାନଙ୍କ ବ୍ୟବହାର ସଂପର୍କରେ ମୋର ଯେଉଁ ଧାରଣା ଥିଲା, ଯେଉଁ ଆଶଙ୍କାରେ ମୁଁ ଚିନ୍ତାକୂଳ ହୋଇ ଉଠିଥିଲି, ତାହା ମୋର ଏକ ଭ୍ରମ ବୋଲି ପ୍ରମାଣିତ ହୋଇଗଲା । ମୁଁ ନିଜକୁ ଅପରାଧିନୀ ବୋଲି ଜାଣି ଘୋର ଲଜ୍ଜିତ ହୋଇ ପଡ଼ିଲି । ସତରେ ହିଂସା, ପରଶ୍ରୀକାତରତା ଏବଂ ଅସୂୟା ପରି ଘୃଣ୍ୟ ଶତ୍ରୁର କବଳିତ ହୋଇ ମଣିଷ ପଶୁଠାରୁ ମଧ୍ୟ ହୀନ ହୋଇଯାଏ । କିଛି ଅଘଟଣ ଘଟିବା ଆଗରୁ ତା'ର ପ୍ରତିକ୍ରିୟାର ଭୟାବହତା କଳ୍ପନା କରି ଅସ୍ଥିର ହୋଇ ଉଠିବାର ଜ୍ୱଳନ୍ତ ଉଦାହରଣ ମୁଁ ନିଜେ । ମନେ ମନେ ଖୁବ୍ ଲଜ୍ଜିତ ହୋଇ ମୋର ଅଳୀକ ଧାରଣାକୁ ଧିକ୍କାର କରିବାରେ ଲାଗିଲି । ମୁଁ ଯାହାକୁ ସର୍ପ ମନେକରି ସଂତ୍ରସ୍ତ ହୋଇ ଉଠିଥିଲି, ବାସ୍ତବରେ ତାହା ଏକ ସୁବାସିତ କୁସୁମର ମାଳାବୋଲି ପ୍ରମାଣିତ ହୋଇଗଲା । ମାଦ୍ରୀର ସରଳ, ସୁନ୍ଦର ବ୍ୟବହାର ମୋତେ ଅଭିଭୂତ କରି ପକାଇଲା । ମୁଁ ତା ନିକଟରେ ନିଜକୁ ଅତ୍ୟନ୍ତ ନ୍ୟୂନ ମନେକଲି ।

ମୋ ମନ ଅତ୍ୟନ୍ତ ସଂକୀର୍ଣ୍ଣ ଥିଲା । ସେଥିପାଇଁ ମୁଁ ମହାରାଜାଙ୍କୁ ମଧ୍ୟ ଭିନ୍ନ ଦୃଷ୍ଟିରେ ଦେଖୁଥିଲି । ମାତ୍ର ତାଙ୍କ ହୃଦୟ କେତେ ଉଦାର, ଚରିତ୍ର କେତେ ମହନୀୟ ତାହା କଳନା କରିବା ମୋ ପରି ଜଣେ ସ୍ୱାର୍ଥ ସର୍ବସ୍ୱ ନାରୀ ପକ୍ଷରେ ସଂପୂର୍ଣ୍ଣ ଅସମ୍ଭବ ଥିଲା । ମହାରାଜାଙ୍କ ଅମାୟିକ ଓ ନିଷ୍କପଟ ବ୍ୟବହାର ଆମ ଦୁହିଁଙ୍କ ପ୍ରତି ସମାନ ଭାବରେ ଅଭିପ୍ରେତ ଥିଲା । ମାଦ୍ରୀଙ୍କ ପ୍ରତି ସେ ସ୍ୱତଃ ଆକୃଷ୍ଟ ହୋଇ ପଡୁଥିଲେ ମଧ୍ୟ ଅତ୍ୟନ୍ତ ସତର୍କତା ଅବଲମ୍ବନ କରୁଥିଲେ । ମୋ ମନରେ ଲେଶମାତ୍ର ଦୁଃଖ ନହେବା ପାଇଁ ସେ ସତତ ଚେଷ୍ଟିତ ଥାଆନ୍ତି । ଏପରି ଦେବୋପମ ସ୍ୱାମୀଙ୍କୁ ସନ୍ଦେହ ଚକ୍ଷୁରେ ଦେଖି ମୁଁ ଯେଉଁ ଅପରାଧ ଅର୍ଜନ କରିଥିଲି ତାହା କ୍ଷମା କରିଦେବା ପାଇଁ ଈଶ୍ୱରଙ୍କ ନିକଟରେ ଅନେକ ପ୍ରାର୍ଥନା କରିଛି । ଦିନକୁ ଦିନ ଆମ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ବୃଦ୍ଧି ପାଇ ଆମେ ଦୁଇ ଭଉଣୀ ପରି ଚଳିବାକୁ ଲାଗିଲୁ । ମାଦ୍ରୀଙ୍କ ପ୍ରତି ଥିବା ଅହେତୁକ ଭ୍ରମ ଧାରଣା ଦୂର କରି ମୁଁ ପରମ ଶାନ୍ତି ଅନୁଭବ କଲି ।

ଅନେକ ଦିନ ଆମେ ବେଶ୍ ହସ ଖୁସିରେ କଟାଇ ଦେଲୁ । ଧୀରେ ଧୀରେ ପୂର୍ବର ଏକ ଅସନ୍ତୋଷ ଅଶାନ୍ତିର ରୂପ ପରିଗ୍ରହ କରିବାର ସୂଚନା ମିଳିଲା । ଆଗରୁ କହିଛି ମୋ ଦେଢ଼ଶ୍ୱଶୁର ଜନ୍ମାନ୍ଧ ଥିବାରୁ ସିଂହାସନ ଆରୋହଣ ପାଇଁ ଅଯୋଗ୍ୟ ବିବେଚିତ ହୋଇଥିଲେ । ମାତ୍ର ତାଙ୍କର ହୀନ ଚିତ୍ତବୃତ୍ତି ଏହି ସତ୍ୟକୁ ସ୍ୱୀକାର କରିବା ପାଇଁ ଆଦୌ ପ୍ରସ୍ତୁତ ନଥିଲା । ସିଂହାସନରୁ ବଞ୍ଚିତ ହେବା ପାଇଁ ସେ ଆଦୌ ଚାହୁଁ ନଥିଲେ । ଫଳରେ ମନ ମଧ୍ୟରେ କୁହୁଳୁଥିବା ଈର୍ଷା ଓ ଅସନ୍ତୋଷ କ୍ରମେ ଅଶାନ୍ତି ରୂପରେ ଆତ୍ମପ୍ରକାଶ କରିବାକୁ ଉପକ୍ରମ କଲା ।

ସ୍ୱାମୀ ମୋର ବହୁ ପୂର୍ବରୁ ଏ ବିଷୟରେ ଅବହିତ ଥାଇ ବଡ଼ଭାଇଙ୍କ ପ୍ରତି ଅତ୍ୟନ୍ତ ଉଦାରତା ଓ ଏକାନ୍ତ ଆନୁଗତ୍ୟ ପ୍ରଦର୍ଶନ କରି ଆସୁଥିଲେ । କିନ୍ତୁ ଫଳ କିଛି ହେଲା ନାହିଁ । ସମୟ ଗଡ଼ି ଚାଲିବା ସହିତ ଦେଢ଼ଶ୍ୱଶୁରଙ୍କ ଅଶାନ୍ତି ବଢ଼ି ଚାଲିଥାଏ । ବଡ଼ ଶାଶୁ ଅମ୍ବିକା ରାଜମାତାର ସମ୍ମାନରୁ ବଞ୍ଚିତା ହୋଇ ଆହତ ଫଣିନୀ ପରି କ୍ରୋଧ ଜର୍ଜରିତା ହୋଇ ରହିଥାନ୍ତି । ମାତା ପୁତ୍ର ଉଭୟଙ୍କ ଅଶାନ୍ତି ଆମ ସୁଖ ସଂସାରକୁ ଆନ୍ଦୋଳିତ କରିବାରେ ଲାଗିଲା । କ୍ଷମତାର ଲାଳସା ପବିତ୍ର ଭ୍ରାତୃତ୍ୱକୁ ଗ୍ରାସ କରିବାର ଉପକ୍ରମ ଆରମ୍ଭ ହୋଇ ଆସିଲା । ଭିନ୍ନ ଉପାଦାନରେ ଗଢା ମୋର ଦେଢ଼ଶ୍ୱଶୁର ଗୋପନ ବିଦ୍ରୋହର ସୂତ୍ରପାତ କରିବାରେ ଲାଗିଲେ । ଏ ସବୁ ଶୁଣି ଏକାନ୍ତ ସରଳ ପ୍ରାଣ ମୋ ସ୍ୱାମୀ ଅତ୍ୟନ୍ତ ବ୍ୟଥିତ ଓ ବିଚଳିତ ହୋଇ ଉଠିଲେ । ମଣିମୟ ରତ୍ନ ସିଂହାସନ ତାଙ୍କୁ କଣ୍ଟକିତ ଶଯ୍ୟାର ଯନ୍ତ୍ରଣା ଦେବାରେ ଲାଗିଲା । ସେ ରାଜ୍ୟ, ରାଜ ସଂପଦ ତଥା ରାଜ ମୁକୁଟକୁ ଧିକ୍କାର କରିବାରେ ଲାଗିଲେ । ଯେଉଁଠି ଭାଇ ଭାଇର ପବିତ୍ର ବନ୍ଧନ ଶତ୍ରୁତାର ରୂପ ନିଏ, ସେଠାରେ ବାସ କରିବା ଠାରୁ ଶ୍ୱାପଦ ସଂକୁଳ ଅରଣ୍ୟ ବାସହିଁ ଶ୍ରେୟସ୍କର ଭାବି ମହାରାଜା ମୃଗୟା ବାହାନାରେ ଅଧିକାଂଶ ସମୟ ଅରଣ୍ୟ ବିହାରକୁ ଶ୍ରେୟ ମନେକଲେ । ଏଥିରେ ମୂଳ ସମସ୍ୟାର ସମାଧାନ ନହେଲେ ମଧ୍ୟ ଆପାତଃ ଶାନ୍ତି ପାଇଁ ଉପଯୁକ୍ତ ମନେ ହେଲା । କଥାରେ ଅଛି:-

 କ୍ଷୀରରେ ଧୋଇବ ଖଣ୍ଡରେ ମୋହିବ
ଆଖୁ ଚାରିପାଖେ ରୋପିବ,
ମହୁଫେଣା ଧରି ନିତି ମାଜୁଥିଲେ
ନିମ୍ବ କି ମଧୁର ହୋଇବ ?

ଅଙ୍ଗାରକୁ ସହସ୍ରବାର ଧୋଇଲେ ମଧ ତହିଁରୁ ଶୁଭ୍ରତା କଦାପି ପ୍ରକଟିତ ହେବ ନାହିଁ ।

ମହାରାଜା ନିଜର ସାମୟିକ ଶାନ୍ତିପାଇଁ ଯେଉଁପନ୍ଥା ଗ୍ରହଣ କଲେ, ତାହା ଆମ ଦୁହିଁଙ୍କ ପକ୍ଷରେ ଦୁର୍ବିସହ ମନେ ହେଲା । ଏକଥା ଜାଣିପାରି ସେ ଆମକୁ ମଧ୍ୟ ସଙ୍ଗରେ ନେବା ପାଇଁ ବ୍ୟବସ୍ଥା କରିଦେଲେ । ଅରଣ୍ୟର ଶାନ୍ତ ଶୀତଳ ପରିବେଶ ଆମକୁ ଅଧିକ ପ୍ରୀତି-ପ୍ରଦ ମନେ ହେଲା ।

ଆମେ ପ୍ରାସାଦରୁ ଦୂରରେ ରହିଲୁ । ଆମ ଅନୁପସ୍ଥିତି ଦେଢ଼ଶ୍ଵଶୁରଙ୍କ ସନ୍ତପ୍ତ ହୃଦୟରେ ଚନ୍ଦନର ପ୍ରଲେପ ପରି ପ୍ରୀତିପ୍ରଦ ହୋଇ ଉଠିଲା । ସବୁଦିନ ପାଇଁ ଆମେ ଅରଣ୍ୟରେ ରହି ପାରିଲେ ସେ ପରମ ସନ୍ତୋଷ ଲାଭ କରନ୍ତେ । ତାଙ୍କର ଏ ଇଚ୍ଛା ପୂରଣ କରିବା ପାଇଁ ବନ ମଧ୍ୟରେ ଏକ ସୁନ୍ଦର ପ୍ରାସାଦ ନିର୍ମାଣ କରି ଆମେ ତିନିଜଣ ସେଠାରେ ଅବସ୍ଥାନ କରିବାରେ ଲାଗିଲୁ । କିଛିଦିନ ପାଇଁ ଉଆସର କଳୁଷିତ ବାତାବରଣରୁ ଦୂରରେ ରହି ଆମେ ଏକ ପବିତ୍ର ଆର୍ଷ ଜୀବନ ଯାପନ ଦ୍ୱାରା ଅପାର ଶାନ୍ତି ଅନୁଭବ କରିଥିଲୁ ।

ବିଧିର ବିଧାନ ଅନତିକ୍ରମଣୀୟ । ମଣିଷର ବିଦ୍ୟା, ବୁଦ୍ଧି ଓ ସତର୍କତା ଅଦୃଷ୍ଟ ଆଗରେ ମଥାନତ କରିବାକୁ ବାଧ୍ୟ ହୁଏ । ଗୋଟିଏ ଦିନର ଏକ ମର୍ମନ୍ତୁଦ ଦୁର୍ଘଟଣା ଆମ ସାଂସାରିକ ଜୀବନରେ ଏପରି ଏକ ଅଲିଭା ରେଖା ଟାଣିଦେଲା ଯାହା ସ୍ମରଣ କଲେ ଦେହ ଥରି ଉଠୁଛି । ଆମେ ବିନାଦୋଷରେ କଣ୍ଟକିତ ରାସ୍ତାର ପଥିକ ହେବାକୁ ବାଧ୍ୟ ହେଲୁ । ଜୀବନର ସମସ୍ତ ସୁଖ, ଶାନ୍ତି ଓ ଆନନ୍ଦ ମୁହୂର୍ତ୍ତକ ମଧ୍ୟରେ ଶେଷ ପାଇଗଲା । ଇଚ୍ଛା ନଥିଲେ ମଧ ପ୍ରକାଶ ନକରି ରହି ପାରୁନାହିଁ ।

ଦିନକର ଘଟଣା- ମହାରାଜା ଧନୁର୍ବାଣ ହସ୍ତରେ ଅରଣ୍ୟକୁ ଗଲେ । ଶିକାର ଉଦ୍ଦେଶ୍ୟରେ ଇତଃସ୍ତତଃ ବିଚରଣ କରୁ କରୁ ମୈଥୁନରତ ଏକ ମୃଗଦମ୍ପତ୍ତି ତାଙ୍କର ଦୃଷ୍ଟି ଗୋଚର ହେଲେ । ପଣ୍ଡୁ ଦୟାର ଅବତାର, ବିବେକୀ ଓ ଅତ୍ୟନ୍ତ ବିଚାରବନ୍ତ ଥିଲେ । କେଜାଣି କାହିଁକି ସେ ଆଗପଛ କିଛି ଚିନ୍ତା ନକରି ହଠାତ୍ ମୈଥୁନରତ ମୃଗଦମ୍ପତ୍ତିଙ୍କୁ ଶରସନ୍ଧାନ କରିଦେଲେ ।

କିନ୍ତୁ ହାୟ, ମହାରାଜ ହରିଣ-ହରିଣୀ ଜ୍ଞାନରେ ଯାହାଙ୍କୁ ଶରବିଦ୍ଧ କରିଥିଲେ, ବାସ୍ତବରେ ସେ ଥିଲେ ଋଷିକୁମାର କିମିନ୍ଦ ଓ ତାଙ୍କ ଧର୍ମପତ୍ନୀ । ଏ ଦୁହେଁ କେଜାଣି କେଉଁ କାରଣରୁ ମୃଗଚର୍ମାବୃତ୍ତ ହୋଇ ମୈଥୁନରତ ଥିଲେ ତାହା

ଜାଣିବା କଷ୍ଟ ।  ରମଣ-ବ୍ୟାପୃତ ଅବସ୍ଥାରେ ପଶୁ ପକ୍ଷୀଙ୍କୁ ମଧ୍ୟ ହତ୍ୟା କରାଯିବା ନିଷିଦ୍ଧ ଥିବା ବେଳେ ଅତ୍ୟନ୍ତ ପ୍ରଜ୍ଞାବାନ୍ ନୀତିନିଷ୍ଠ ଧର୍ମାତ୍ମା ପଣ୍ଡୁଙ୍କର ଏପରି ଅମାନୁଷିକ ନିଷ୍ଠୁର କାର୍ଯ୍ୟ କରିବା ପାଇଁ ହାତ ଗଲା କିପରି ? ଏ ସବୁ ସେଇ ଦାରୁଣ ବିଧିର କ୍ରୂର ଉପହାସ ବ୍ୟତୀତ ଆଉ କିଛି ନୁହେଁ । ମଣିଷ କଥା ଦୂରେ ଥାଉ ଦେବତାମାନେ, ଏପରିକି ପ୍ରବାଦ ପୁରୁଷ ରାମଚନ୍ଦ୍ର ମଧ୍ୟ ଏହି ନିଷ୍ଠୁର ନିୟତିର କଷାଘାତରେ ଜର୍ଜରିତ ହୋଇ ପଡ଼ିଥିଲେ । ତାଙ୍କର ଜ୍ଞାନ ବୁଦ୍ଧି, ବିବେକ ସବୁକିଛି ବିଧି ନିକଟରେ ଏକାନ୍ତ ନିଷ୍ପ୍ରଭ ହୋଇ ପଡ଼ିଥିଲା । ତେଣୁ ପଣ୍ଡିତମାନେ କହିଛନ୍ତି-

ନ ବିଧି ଗ୍ରସତେ ପ୍ରଜ୍ଞା,
ପ୍ରଜ୍ଞାନୁଗ୍ରସତେ ବିଧିଃ ।

ଅତି ପ୍ରଜ୍ଞାବାନ, ବିବେକୀ ବ୍ୟକ୍ତି ମଧ୍ୟ ଅନତିକ୍ରମଣୀୟ ବିଧିର ବିଧାନ ଆଗରେ ମସ୍ତକ ଅବନତ କରିବାକୁ ବାଧ୍ୟ ହୁଅନ୍ତି । ପଣ୍ଡୁଙ୍କ ପକ୍ଷରେ ତାହାହିଁ ଘଟିଲା । କ୍ରୂର ନିୟତି ନିକଟରେ ସେ ବୁଦ୍ଧି ବିବେକ ଶୂନ୍ୟ ହୋଇ ପଡ଼ିଲେ । ମହାଜନ ମାନେ ଯଥାର୍ଥରେ କହିଛନ୍ତି-   ପ୍ରାୟ ସମାପନ୍ନ  ବିପତ୍ତିକାଳେ
ଧୀୟୋଽପି ପୁଂସା ମଳିନା ଭବନ୍ତି ।

କହିବା ନିଷ୍ପ୍ରୟୋଜନ ଯେ ଏହି ଶରସନ୍ଧାନହିଁ ମହାରାଜାଙ୍କ ସର୍ବଶେଷ ମୃଗୟା ଓ ଆମ ସୁଖମୟ ଜୀବନର ଅନ୍ତିମ ଯବନିକା ହୋଇଗଲା ।

ମୋର କଣ୍ଠରୋଧ ହୋଇ ଯାଉଛି । କିପରି ସେ ଭୟାବହ ଘଟଣା ବର୍ଣ୍ଣନା କରିବି ଭାବି ପାରୁ ନାହିଁ । ଶରବିଦ୍ଧ ହୋଇ ଋଷି କିମିନ୍ଦ ଚିତ୍କାର କରି କହିଲେ:- କିଏରେ ତୁ ପାଷାଣ୍ଡ ? ମୁଁ ମିଳନ ସୁଖ ଉପଭୋଗ କରୁଥିବା ଅବସ୍ଥାରେ ଶର ସନ୍ଧାନ କରି ମୋତେ ହତ୍ୟା କରିଦେଲୁ । ଧିକ୍ ତୋତେ, ଧିକ୍ ତୋର ପୌରୁଷକୁ । ତୁ ଆଜି ପଶୁଠାରୁ ମଧ୍ୟ ହୀନ ହୋଇ ପଡ଼ିଲୁ । ତୋ ପରି ପାପାଚାରୀ, ଅବିବେକୀ ବ୍ୟକ୍ତି ଏ ଧରା ପୃଷ୍ଠରେ ଦ୍ୱିତୀୟ ନଥିବେ ।'' ସେ ଆଉ ଅଧିକ କହି ନପାରି ଅସହ୍ୟ ଯନ୍ତ୍ରଣାରେ ଛଟପଟ ହେବାରେ ଲାଗିଲେ ।

ମହାରାଜାଙ୍କୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । ସେ କମ୍ପିତ କଣ୍ଠରେ କହିଲେ,- ''ହେ ମହାଭାଗ, ମୃଗ ଭ୍ରମରେ ମୁଁ ଆପଣଙ୍କୁ ଶର ସନ୍ଧାନ କରି ଦେଇଛି । ଆପଣ ତ୍ରିକାଳଦର୍ଶୀ । ମୋର ଏ ଅଜ୍ଞାନକୃତ ଅପରାଧ ମାର୍ଜ୍ଜନା କରି ମୋତେ କ୍ଷମା ପ୍ରଦାନ କରନ୍ତୁ । ଆପଣଙ୍କ ଚରଣରେ ମୋର ଏତିକି ପ୍ରାର୍ଥନା ।''

କିମିନ୍ଦ ଯନ୍ତ୍ରଣାରେ ଅସ୍ଥିର ହେବା ଅବସ୍ଥାରେ କହିଲେ,- ''ରେ ମୂର୍ଖ, ତୋ ପରି ହୀନ ପଶୁ ଆଦୌ କ୍ଷମାର ପାତ୍ର ନୁହେଁ । ପ୍ରଣୟାସକ୍ତ ଯେ କୌଣସି ପ୍ରାଣୀ ଅବଧ୍ୟ । ଏତିକି ଧାରଣା ଯାହାର ନାହିଁ ତାକୁ ମନୁଷ୍ୟ ବୋଲି କୁହାଯାଇ ନ ପାରେ । ମୁଁ ସନ୍ତାନପ୍ରାପ୍ତି ଉଦ୍ଦେଶ୍ୟରେ ଧର୍ମପତ୍ନୀ ସହିତ ରମଣ ଲିପ୍ତ ଥିବା ଅବସ୍ଥାରେ ତୁ ମୋର ସମସ୍ତ ଆଶା ଧୂଳିସାତ୍ କରିଦେଲୁ । ମୁଁ ଅଭିଶାପ ଦେଉଛି, ତୁ ସବୁ ଦିନ ପାଇଁ ରମଣ ସୁଖରୁ ବଞ୍ଚିତ ହେବୁ । ଯଦି କେବେ ପତ୍ନୀ ସହିତ ରମଣରତ ହେବୁ ତେବେ ସେହି ମୁହୂର୍ତ୍ତରେ ହିଁ ଏକ ଅଦୃଶ୍ୟ ଶର ତୋତେ ହତ୍ୟା କରିବ ।''

ମହାରାଜ ନିର୍ବାକ ପିତୁଳା ପରି ଜଡ଼ ପାଲଟିଗଲେ । ତାଙ୍କ ହସ୍ତପଦ ଶିଥିଳ ହୋଇ ପଡ଼ିଲା । ଧନୁର୍ବାଣ ତଳେ ଖସି ପଡ଼ିଲା । ଆସନ୍ନ ମୃତ୍ୟୁର ଅକଥନୀୟ ଯନ୍ତ୍ରଣାରେ ଛଟପଟ ହେଉଥିବା ଋଷି ଦମ୍ପତିଙ୍କ ଆଡକୁ ଚାହିଁ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲେ । ଅଳ୍ପ ସମୟପରେ ସେ ଦୁହିଁଙ୍କ ପ୍ରାଣବାୟୁ ଉଡ଼ିଗଲା ।

ବେଦନା ଜର୍ଜରିତ ହୋଇ ସ୍ୱାମୀ ଫେରି ଆସିଲେ । ତାଙ୍କର ବିଷର୍ଣ୍ଣ ବଦନ, ଅଶ୍ରୁପୂର୍ଣ୍ଣ ନୟନ, ଅଯତ୍ନ କେଶବାସକୁ ଲକ୍ଷ୍ୟ କରି ଅଜଣା ଆଶଙ୍କାରେ ମୁଁ ଶିହରୀ ଉଠିଲି । ମାଦ୍ରୀ ମଧ ଚକିତ ହୋଇ ଥରେ ମହାରାଜାଙ୍କୁ, ଥରେ ମୋ ଆଡ଼କୁ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁ ଦେଉଥାଏ । ମନରେ ଏପରି ଆଶଙ୍କା ସୃଷ୍ଟି ହୋଇ ଗଲା ଯେ କେହି କାହାକୁ କିଛି କହିପାରୁ ନଥାଉ ।

କ୍ରମେ ମୋର ଧୈର୍ଯ୍ୟଚ୍ୟୁତି ଘଟିଲା । ମୁଁ ବ୍ୟାକୁଳ ହୋଇ ଯାହା ପଚାରିଲି, ମହାରାଜା କୌଣସି ଉତ୍ତର ନଦେଇ କେବଳ ଅଶ୍ରୁପୂର୍ଣ୍ଣ କରୁଣ ଦୃଷ୍ଟିରେ ମୋ ଆଡ଼କୁ ଅନାଇ ରହିଲେ । ଓହୋ, କି କରୁଣ ସେ ଚାହାଣୀ ! ନିଜକୁ ନିତାନ୍ତ ଅସହାୟ ମନେ କରୁଥିବା ଜଣେ ସାଧାରଣ ଅପରାଧୀଠାରୁ ମହାରାଜାଙ୍କୁ ଭିନ୍ନ ବୋଲି ଭାବି ପାରିଲି ନାହିଁ । ସେ ନିଶ୍ଚୟ ଏକ ଅକ୍ଷମଣୀୟ ଅପରାଧ କରିପକାଇଛନ୍ତି ଏଧାରଣା ମୋର ଦୃଢ଼ ହୋଇଗଲା ।

କେତେ ସମୟ ବା ଏପରି ଯାଇଥାନ୍ତା ? ମହାରାଜା ମଥାନତ କରି କହିଲେ,- ''ଆଜିଠାରୁ ମୋର ସମସ୍ତ ସୁଖ ଓ ଭୋଗ ବିଳାସରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ଏହାହିଁ ଈଶ୍ୱରଙ୍କ ଇଚ୍ଛା ବୋଲି ଧରି ନେଇ କହୁଛି ଯେ, ମୁଁ ସନ୍ନ୍ୟାସ

ଗ୍ରହଣ କରିବି । ତୁମ ଦୁହିଁଙ୍କ ସହିତ ମୋର ଆଉ କୌଣସି ସଂପର୍କ ରହିବ ନାହିଁ ।'' ଏତିକି କହି ସେ ପୂର୍ବପରି ନୀରବ ରହିଲେ ସିନା, ମୋ ମୁଣ୍ଡରେ ବଜ୍ରପାତ ହୋଇଗଲା, ଅନ୍ତରାତ୍ମା ଚିତ୍କାର କରି ଉଠିଲା । ମହାରାଜା ଅତି ସହଜରେ ତାଙ୍କ ମନୋଭାବ ପ୍ରକାଶ କରିଦେଲେ, ମାତ୍ର କେଉଁ ଅପରାଧରୁ ତାଙ୍କ ଆଶ୍ରିତ ପତ୍ନୀ ଦ୍ୱୟଙ୍କୁ ଏପରି ନିଷ୍ଠୁର ଭାବରେ ପ୍ରତ୍ୟାଖ୍ୟାନ କରିବାର ନିଷ୍ପତ୍ତି ଗ୍ରହଣ କଲେ ତାହା ମୁଁ ଆଦୌ ଚିନ୍ତା କରି ପାରିଲି ନାହିଁ । ବ୍ୟଥାଭରା କଣ୍ଠରେ କହିଲି- ''ଆପଣ ଆମକୁ ଅଗ୍ନି ଓ ଦଶଦିଗପାଳଙ୍କୁ ସାକ୍ଷୀରଖି ବୈଦିକ ବିଧାନରେ ବିବାହ କରିଛନ୍ତି । ଆମେ ଯୁବତୀ । ଯୌବନ କାଳରେ ସ୍ୱାମୀହିଁ ସ୍ତ୍ରୀର ରକ୍ଷାକର୍ତ୍ତା । ଆପଣ ଯଦି ଏ ପ୍ରକାର ନିଷ୍ପତ୍ତିରେ ଅଟଳ ରହନ୍ତି, ତେବେ ଆମେ ଦୁହେଁ ଅଗତ୍ୟା ଆତ୍ମହତ୍ୟା କରିବାକୁ ବାଧ୍ୟ ହେବୁ । ଆପଣଙ୍କ ବିଚ୍ଛେଦ ଆମ ପକ୍ଷରେ ମୃତ୍ୟୁଠାରୁ ବଳି ଯନ୍ତ୍ରଣା ଦାୟକ ହୋଇ ଉଠିବ । ମହାଭାରତରେ ମୋର ଏହି କଥାକୁ ଲକ୍ଷ୍ୟ କରି ଲେଖାଯାଇଛି :- ଆଦ୍ୟୈବାବାଂ ପ୍ରହାସ୍ୟାବୋ

ଜୀବିତଂ ନାତ୍ର ସଂଶୟଃ

ଆମର ଆତ୍ମହତ୍ୟା ଜନିତ ପାପ ଲାଗି ଆପଣଙ୍କ ତପସ୍ୟା ବ୍ୟର୍ଥ ହେବ । ମୋର ଏକାନ୍ତ ପ୍ରାର୍ଥନା, ଆପଣ ଏ ନିଷ୍ଠୁର ନିଷ୍ପତ୍ତିର ପୁନର୍ବିଚାର କରନ୍ତୁ । ଯେ କୌଣସି ନିଷ୍ପତ୍ତି ତୁରନ୍ତ ଗ୍ରହଣ କରିବା ଉଚିତ ନୁହେଁ ବୋଲି ପଣ୍ଡିତମାନେ ସତର୍କ କରାଇ ଦେଇଛନ୍ତି । ପୁନଶ୍ଚ ଅପୁତ୍ରିକ ବ୍ୟକ୍ତି କୌଣସି ଧର୍ମାନୁଷ୍ଠାନ କରିବା ଶାସ୍ତ୍ର ବିରୁଦ୍ଧ ଅଟେ । ଆପଣ ପିଣ୍ଡଦାନ ଦ୍ୱାରା ଆପଣଙ୍କ ପିତୃ ପୁରୁଷଙ୍କୁ ନର୍କରୁ ଉଦ୍ଧାର କରିଛନ୍ତି । ମୁଁ ବା ମାଦ୍ରୀ କେହି ଏ ପର୍ଯ୍ୟନ୍ତ ସନ୍ତାନବତୀ ହୋଇ ପାରିନାହୁଁ । ଆପଣଙ୍କୁ ପିଣ୍ଡଦାନ କରିବ କିଏ ? ମୋ କଥାକୁ ଗ୍ରହଣ କଲେ ଆମ ସମସ୍ତଙ୍କର ମଙ୍ଗଳ ହେବ ।''

ମହାରାଜାଙ୍କ ଶରୀର କମ୍ପିତ ହେବାରେ ଲାଗିଲା । ସେ ଗଦ୍‌ଗଦ କଣ୍ଠରେ କହିଲେ,- ''କଲ୍ୟାଣୀ, ସ୍ୱକୃତ ପାପ ମୋତେ ଶତବୃଶ୍ଚିକର ଦଂଶନ ଜ୍ୱାଳାରେ ଜର୍ଜରିତ କରି ପକାଉଛି । ସମଗ୍ର ବିଶ୍ୱ ଆଜି ମୋ କୃତକର୍ମର ନିନ୍ଦା ରଟନାରେ ଚଳ୍‌ଚଞ୍ଚଳ । ମୋର ବିବେକ, ବୁଦ୍ଧି ଓ ପ୍ରଜ୍ଞା ସଂପୂର୍ଣ୍ଣ ନିସ୍ତ୍ରଭ । ମୁଁ ପଶୁଠାରୁ ହୀନ ହୋଇ ଯେଉଁ ମହାପାତକ, ଯେଉଁ ଘୃଣ୍ୟକର୍ମ କରିଛି ତାହା ଶୁଣିଲେ ତୁମେ ମଧ୍ୟ ମୋତେ କ୍ଷମା କରିବ ନାହିଁ ବରଂ ଘୃଣାରେ ନାସିକା କୁଂଚନ କରି ଉଠିବ ।

ବିଧିର ନିର୍ଦ୍ଦେଶ ଅନତିକ୍ରମଣୀୟ । ନିଷ୍ଠୁର ନିୟତି ମୋର ସକଳ ମାନବୀୟ ସଦ୍‌ଗୁଣକୁ ଗ୍ରାସକରି ମୋତେ ଏକ ଘୃଣ୍ୟ ପିଶାଚରେ ପରିଣତ କରି ଦେଇଛି । କାଲିର ହସ୍ତିନା ମହାରାଜା ଆଜି ଜଟାଜୁଟ ବିମଣ୍ଡିତ, ବଳ୍କଳ ପରିହିତ ସନ୍ନ୍ୟାସୀ ଭାବରେ ଦୁର୍ଗମ ଅରଣ୍ୟ ମଧ୍ୟରେ ଇତଃସ୍ତତଃ ବିଚରଣ କରିବେ । ରାଜକୀୟ ଭୋଗ ବିଳାସ, ବହୁମୂଲ୍ୟ ବସନ ଭୂଷଣ ଆଜିଠାରୁ ହସ୍ତିନା ନରପତି ପଣ୍ଡୁଙ୍କ ପକ୍ଷରେ ସ୍ୱପ୍ନ ହୋଇ ଯିବ ।''

ଆମେ ଦୁହେଁ ହତ୍‌ବାକ୍ ହୋଇ ପଡ଼ିଲୁ । କିଛି ପଚାରିବାକୁ ସାହସ ମଧ୍ୟ ହେଲା ନାହିଁ । ମୁଁ ଅତ୍ୟନ୍ତ ବ୍ୟାକୁଳ ହୋଇ ତାଙ୍କ ପାଦତଳେ ପଡ଼ି କାନ୍ଦିବାରେ ଲାଗିଲି । ମହାରାଜା ମୋତେ ତଳୁ ଉଠାଇ କହିଲେ,- ''ଭଦ୍ରେ, ଭବିତବ୍ୟର ଗତି ରୋଧ କରିବାକୁ ଦେବତାମାନେ ମଧ୍ୟ ସମର୍ଥ ନୁହନ୍ତି । ମୁଁ ତ ଛାର ମାନବ ମାତ୍ର ।''

ମୋର ସନ୍ଦେହ ଆଶଙ୍କାରେ ପରିଣତ ହେବାକୁ ଲାଗିଲା । ମୁଁ ଅତ୍ୟନ୍ତ ବ୍ୟାକୁଳ ହୋଇ କହିଲି,- ''ମହାରାଜ, ମୁଁ ଆପଣଙ୍କ ଧର୍ମପତ୍ନୀ । ମୋ ପାଖରେ ଆପଣଙ୍କର ଗୋପନୀୟ ହୋଇ କିଛି ନାହିଁ । ମାଦ୍ରୀ ବର୍ତ୍ତମାନ ଅର୍ଦ୍ଧମୃତ ଅବସ୍ଥାରେ । ଆଉ ଅଧିକ କାଳ ସନ୍ଦେହର ଆବର୍ତ୍ତରେ ନରଖି ଆମକୁ ବାସ୍ତବ ଘଟଣା ଜଣାନ୍ତୁ ।''

ମୋ ବ୍ୟାକୁଳ ପ୍ରାର୍ଥନାରେ ମହାରାଜାଙ୍କ ଧୈର୍ଯ୍ୟର ବାଲିବନ୍ଧ ଭୁଷୁଡ଼ି ପଡ଼ିଲା । ସେ ଆଉ ସମ୍ଭାଳି ନପାରି ଅରଣ୍ୟ ମଧ୍ୟରେ ଘଟିଥିବା ସମସ୍ତ ଘଟଣା ବର୍ଣ୍ଣନା କରି ଆମ ଦୁହିଁଙ୍କ ଆଡ଼କୁ ଅଶ୍ରୁପୂର୍ଣ୍ଣ ନୟନରେ ଅନାଇ ରହିଲେ । କେହି କାହାକୁ କିଛି କହି ପାରିଲୁ ନାହିଁ ।

ମାଦ୍ରୀ ମୋର ସପତ୍ନୀ । ତା'ର ବ୍ୟବହାର ଯେତେ ଅମାୟିକ ହେଲେ ମଧ ମୋ ସୁଖମୟ ସଂସାରରେ ସେ ଏକ ଅମଙ୍ଗଳ ଧୂମକେତୁ ରୂପେ ଦେଖା ଦେଇଛି, ଏକଥା ମୁଁ ଆଦୌ ଭୁଲି ପାରିନଥାଏ । ମହାରାଜାଙ୍କ ନିକଟରେ ତା'ର ଉପସ୍ଥିତି ମୋର ସହ୍ୟ ହୁଏ ନାହିଁ । ମାତ୍ର ମାଦ୍ରୀ ମୋ ମନୋଭାବର ସାମାନ୍ୟତମ ସୂଚନା ନପାଇବା ପାଇଁ ମୁଁ ସର୍ବଦା ସତର୍କ ରହିଥାଏ । ମହାରାଜାଙ୍କ ଦୃଷ୍ଟିରେ ଆମେ ଦୁହେଁ ଦୁଇ ଭଉଣୀ ହୋଇଥାଉ । କିନ୍ତୁ ସଂସାରର କୌଣସି ସ୍ଥାନରେ ଦୁଇ ସପତ୍ନୀଙ୍କ ମଧ୍ୟରେ ନିର୍ମଳ ପ୍ରେମ, ଶ୍ରଦ୍ଧା ବା ସ୍ନେହ କଦାପି ସମ୍ଭବ ହୋଇ

ନଥାଏ । ମୁଁ ଏ ନିୟମର ବ୍ୟତିକ୍ରମ ହୁଅନ୍ତି କିପରି ? କେବଳ ସବୁକଥା ଚଳାଇ ନେଉଥିଲି ମାତ୍ର । ମା'ଲକ୍ଷ୍ମୀ ଓ ଦେବୀ ସରସ୍ୱତୀ ଉଭୟେ ସପତ୍ନୀ । ଏ ଦୁହିଁଙ୍କ ମଧ୍ୟରେ ସର୍ବଦା ଅସୂୟା ବିଦ୍ୟମାନ ଥିବା କଥା ପୁରାଣରେ ବର୍ଣ୍ଣିତ ଅଛି । ମୁଁ ତ ଛାର ମାନବୀ ମାତ୍ର ।

ଘଟଣା ଚକ୍ରରେ ଆଜିଠାରୁ ଆମେ ଦୁଇ ସପତ୍ନୀ ସମଦଶାପନ୍ନ ହୋଇଗଲୁ । ଯେଉଁ ବିଶେଷ କାରଣରୁ ସପତ୍ନୀଙ୍କ ମଧ୍ୟରେ ହିଂସା, ଦ୍ୱେଷ, ପରଶ୍ରୀକାତରତା ଲାଗି ରହିଥାଏ, ତାହା ଆଜିଠାରୁ ସମ୍ପୂର୍ଣ୍ଣ ଦୂରୀଭୂତ ହୋଇ ଆମ ଦୁହିଁଙ୍କୁ ସମାନ କରିଦେଲା ।

ମୁଁ ମଥାନତ କରି କହିଲି,- "ମହାରାଜ, ଆପଣ ଏକାକୀ ତପଃ ସାଧନା ନକରି ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଆମ ଦୁହିଁଙ୍କୁ ସଙ୍ଗରେ ନିଅନ୍ତୁ । ଏହା କିଛି ନୂଆ କଥା ନୁହେଁ । ପୂର୍ବରୁ ଏ ପ୍ରଥା ପ୍ରଚଳିତ ଅଛି ।

ଅବାଭ୍ୟାଂ ଧର୍ମପତ୍ନୀଭ୍ୟାଂ. ,

ସହତସ୍ତୁ ତପୋ ମହତ୍ ।

ଗଭୀର ଦୁଃଖ ଓ ମର୍ମ ବେଦନାରେ ଜର୍ଜରିତ ମହାରାଜ ସଂପୂର୍ଣ୍ଣ ନିରୂପାୟ ହୋଇ ପଡ଼ିଥାନ୍ତି । ପ୍ରବଳ ସ୍ରୋତ ମୁଖରେ ଭାସି ଯାଉଥିବା ଜୀବଟିଏ ସାମାନ୍ୟ ତୃଣ ଖିଅକୁ ଆଶ୍ରା କଲାପରି ସେ ମୋ ପ୍ରସ୍ତାବରେ ନୀରବ ସମ୍ମତି ଜଣାଇଥିଲେ । ମୁଁ ଏକ ପ୍ରକାର ଆଶ୍ୱସ୍ତି ଅନୁଭବ କଲି ସବୁକଥା ମାଦ୍ରୀକୁ ଜଣାଇ ଦେଲି ।

ଏଥର ଆମେ ଏକ ନୂତନ ପଥରେ ଗତି କରିବା ପାଇଁ ସଂକଳ୍ପବଦ୍ଧ ହେଲୁ । କ୍ରମେ ଆମେ ହିମାଳୟର ବିଭିନ୍ନ ସ୍ଥାନ ଭ୍ରମଣ କରିବାରେ ଲାଗିଲୁ । ମୋର ଧାରଣା ଥିଲା- କୋମଳାଙ୍ଗୀ ମାଦ୍ରୀ ଅରଣ୍ୟର କଣ୍ଟକିତ ପଥରେ ଅତ୍ୟନ୍ତ କଷ୍ଟ ଅନୁଭ ବ ରିବ । ଏ ବୟସରେ ତା'ର ଯାହା କରଣୀୟ ନୁହେଁ, ବାଧ୍ୟ ହୋଇ ତାହା କରୁଥିବାରୁ ସେ ଅବସନ୍ନ ହୋଇ ପଡ଼ିବ । ମାତ୍ର ମୋର ସେ ଧାରଣା ଅଳୀକ ପ୍ରମାଣିତ ହୋଇଗଲା । ସଂକଳ୍ପରେ ଅବିଚଳିତ ବିଶ୍ୱାସ ସ୍ଥାପନ କରିପାରିଲେ ଅସାଧ୍ୟ ସାଧନ ହୋଇ ପାରେ, ଏହା ମାଦ୍ରୀର ଧୈର୍ଯ୍ୟ ଓ ସହନଶୀଳତାରୁ ପ୍ରମାଣିତ ହୋଇଗଲା ।

ଆମେ ଦୁହେଁ ତପସ୍ୱିନୀର ଜୀବନ ଯାପନ କରିବାରେ ମନପ୍ରାଣ ଢାଳିଦେଲୁ । ସତ୍‌ଚିନ୍ତା, ଈଶ୍ୱର ଉପାସନା, ଯଜ୍ଞ ଓ ସନ୍ନ୍ୟାସିନୀର ଯାବତୀୟ କାର୍ଯ୍ୟ କରିବାରେ ଆମର ସମୟ ଅତିବାହିତ ହେବାରେ ଲାଗିଲା । ଏ ସବୁ

ସତ୍ତ୍ୱେ ମୁଁ ଭୁଲିଯାଇ ନଥାଏ ଯେ, ମଣିଷର ମନ ଅତି ଚଞ୍ଚଳ ଓ ଅତିମାତ୍ରାରେ ଅବାଧ୍ୟ । ତାକୁ ସର୍ବଦା ନିଜ ଆୟତରେ ରଖିବା ଏକ ଅତ୍ୟନ୍ତ ଦୁରୂହ କାର୍ଯ୍ୟ । ନିରନ୍ତର ସାଧନା ଓ କଠୋର ତପଃଶ୍ଚରଣ ଦ୍ୱାରା ସିଦ୍ଧି ଲାଭ କରିଥିବା ମହର୍ଷିମାନଙ୍କର ପଦସ୍ଖଳନ ହେବାର ଦୃଷ୍ଟାନ୍ତ ବିରଳ ନୁହେଁ । ତେଣୁ ମୁଁ ସର୍ବଦା ସତର୍କ ରହିଥାଏ ।

ଜଣେ ନାରୀ ହିଁ ନାରୀ ହୃଦୟର ଦୁର୍ବଳତା ସଂପର୍କରେ ସଂପୂର୍ଣ୍ଣ ଅବହିତ ରହିବା ସ୍ୱାଭାବିକ । ବହୁ ସାଧ୍ୟ, ସାଧନା, ଧର୍ମ ଉପଦେଶ, ହୋମ ଓ ଯଜ୍ଞ ଆଦି ପବିତ୍ର ଅନୁଷ୍ଠାନ ମଧ୍ୟରେ ନିଜକୁ ହଜାଇ ଦେଇ ମାଦ୍ରୀଯେ ପୂର୍ଣ୍ଣ ତାପସୀରେ ପରିଣତ ହୋଇ ଯାଇଛି, ଏ ବିଶ୍ୱାସ ମୋର ଆଦୌ ନଥାଏ । ତେଣୁ ମୁଁ ତାକୁ ଗୋଡ଼େ ଗୋଡ଼େ ଜଗିଥାଏ । ଏକାକିନୀ ମହାରାଜାଙ୍କ ସାନ୍ନିଧ୍ୟଲାଭର ସୁଯୋଗ ଦିଏ ନାହିଁ । ମୋର ଏକମାତ୍ର କାମନା ଥାଏ ସବୁଯାଉ ପଛେ, ଆମ ସୀମନ୍ତର ସିନ୍ଦୂର ସଦା ଉଜ୍ଜ୍ୱଳ ରହୁ । ମହାରାଜା ଦୀର୍ଘଜୀବୀ ହୋଇ ରହିଥାନ୍ତୁ । ଦୈହିକ ସୁଖ ମୋ ପାଇଁ ଏକାନ୍ତ ମୂଲ୍ୟହୀନ ହୋଇ ପଡ଼ିଥାଏ । ମାତ୍ର ରୂପ-ଯୌବନର ଅସରନ୍ତି ଉତ୍ସ ମାଦ୍ରୀକୁ ମୁଁ ଆଦୌ ବିଶ୍ୱାସ କରି ପାରୁ ନଥାଏ । ସମାନ୍ୟତମ ଅସାବଧାନତା ସର୍ବନାଶର ପଥ ପରିଷ୍କାର କରିଦେବାର ଭୟ ମୋ ମନକୁ ସର୍ବଦା ଅସ୍ଥିର କରି ପକାଉଥାଏ ।

କିଛି ଦିନପରେ ଆମ ଆଶ୍ରମକୁ କେତେଜଣ ଋଷି ଆସିଥିଲେ । ଆଲୋଚନାରୁ ଜଣାଗଲା, ସେମାନେ ସମସ୍ତେ ସ୍ୱର୍ଗଯାତ୍ରା ପାଇଁ ଅନୁକୂଳ କରୁଥିବା ବାଟରେ ଆମ ଆଶ୍ରମରେ ଉପସ୍ଥିତ ହୋଇଥିଲେ । ମହାରାଜ ସେମାନଙ୍କ ସହିତ ଯିବା ପାଇଁ ଏକାନ୍ତ ଆଗ୍ରହୀ ହୋଇ ଉଠିବାରୁ ସେମାନେ ବାରଣ କରି କହିଲେ, ଅପେକ୍ଷାକର । ଠିକ୍ ସମୟ ଉପସ୍ଥିତ ହେବାକୁ ବିଳମ୍ବ ଅଛି । ଯୁବତୀ ପତ୍ନୀମାନଙ୍କୁ ତ୍ୟାଗକରି ତୁମେ ଆମ ସହିତ ଯାତ୍ରା କରିବା ଉଚିତ ହେବ ନାହିଁ । ମହାରାଜ କହିଲେ,- ''ହେ ତ୍ରିକାଳଦର୍ଶୀ ମହାତ୍ମାଗଣ ! ଅପଣମାନେ ସର୍ବଜ୍ଞାତା । ଭାଗ୍ୟର କ୍ରୂର ଉପହାସ ହସ୍ତିନାର ମହାରାଜାଙ୍କୁ ସନ୍ନ୍ୟାସୀର କଠୋର ଜୀବନ ଯାପନ କରିବାକୁ ବାଧ୍ୟ କରିଛି । ନିଃସନ୍ତାନ ଜୀବନ ଯାପନ ମୋ ପକ୍ଷରେ ଦୁର୍ବିସହ ହୋଇ ପଡିଲାଣି । ମୋତେ ଏହି ଦାରୁଣ ଦୁଃଖରୁ ଉଦ୍ଧାର କରିବା ପାଇଁ ପ୍ରାର୍ଥନା କରୁଛି ।''

ମୁନୀମାନେ ଧ୍ୟାନସ୍ଥ ହେବା ପରେ କହିଲେ,- ''ମହାରାଜ, ଅଳ୍ପଦିନ ପରେ ଆପଣ ପୁତ୍ର ମୁଖ ଦର୍ଶନ କରି ସମସ୍ତ ମନସ୍ତାପରୁ ମୁକ୍ତିଲାଭ କରିବେ ।'' ଅନ୍ୟ କିଛି ପ୍ରଶ୍ନ କରିବା ପୂର୍ବରୁ ସେମାନେ ଆମ ଆଶ୍ରମ ତ୍ୟାଗ କରି ଚାଲିଗଲେ ।

ମୁଁ ଏ ପ୍ରକାର ଭବିଷ୍ୟବାଣୀ ଶୁଣି ଭାବିଲି,- ''ଅସମ୍ଭବ କେବେ ସମ୍ଭବ ହୁଏ ନାହିଁ । ପଥର ଉପରେ କଦାପି ପଦ୍ମଫୁଟିପାରେ ନାହିଁ । କେବଳ ମହାରାଜାଙ୍କ ମନରକ୍ଷା ପାଇଁ ଋଷିମାନେ ଏପରି ଆଶ୍ୱାସନା ଦେଇଛନ୍ତି ମାତ୍ର । ଏତିକିବେଳେ ମାଦ୍ରୀ ବିବାହ ବେଳର ଗୋପନ କଥା ହଠାତ୍ ମନେ ପଡ଼ିଗଲା । ମୁଁ ହସିଲି ଯେତିକି କାନ୍ଦିଲି ତା'ଠାରୁ ବହୁତ ବେଶୀ । କଥାଟି ଏହିପରି- ମହାତ୍ମା ଭୀଷ୍ମ ଆମ ବଂଶରେ ବହୁ ସନ୍ତାନ ପ୍ରୟାସୀ ଥିଲେ । ମୁଁ ଏକାକୀ କେତେ ବା ସନ୍ତାନ ପ୍ରସବ କରିପାରିବି ? ଏଣୁ ସେ ମଦ୍ର ଦେଶର କନ୍ୟା ମାଦ୍ରୀଙ୍କୁ ଆଣି ତାଙ୍କ ଠାରୁ ବହୁ ସନ୍ତାନ ପ୍ରାପ୍ତିର ଆଶା କରିଥିଲେ । ମଦ୍ର ଦେଶର କନ୍ୟା ବହୁ ସନ୍ତାନ-ବତୀ ନିଶ୍ଚୟ ହେବେ ଏପରି ଏକ ଅବାସ୍ତବ ଧାରଣା ଭୀଷ୍ମଙ୍କର ସୃଷ୍ଟି ହୋଇଥିଲା । ସେ ବହୁ ମୂଲ୍ୟଦେଇ ମାଦ୍ରୀଙ୍କୁ ଭ୍ରାତୃବଧୂ ରୂପେ ଆଣିଥିଲେ ।

ଋଷିମାନଙ୍କ ଆଶ୍ୱାସନା ବାଣୀ ଶୁଣିବା ପରଠାରୁ ମୁଁ ଭୀଷ୍ମଦେବଙ୍କ କଥା ମନେ ପକାଇଲି । ଆଶାତ କରିଥିଲେ ଅନେକ । ମାତ୍ର ଫଳ କ'ଣ ହେଲା ? ଅକାରଣରେ ମୋତେ କେବଳ ଅସୁମାରି ମାନସିକ ଯନ୍ତ୍ରଣା ମିଳିଲା । ମୁଁ ଓ ମାଦ୍ରୀ ଚିର ବନ୍ଧ୍ୟା ହୋଇ ରହିବା ପାଇଁ ଅ .। ଭାଗ୍ୟରେ ଲେଖା ହୋଇଗଲା ।

ମାନସିକ ଅବସାଦ ବୃଦ୍ଧି ପାଇବାରେ ଲାଗିଲା । ମୁଁ ଅନ୍ୟତ୍ର ଚାଲି ଗଲି ଓ ମନ୍ଦଭାଗ୍ୟକୁ ନିନ୍ଦାକରି ଅଶ୍ରୁମୁଞ୍ଚନ କରିବାରେ ଲାଗିଲି ।

କିଛି ସମୟ ପରେ ମହାରାଜ ମୋତେ ପାଖକୁ ଡାକି କହିଲେ,- ''ଦେବୀ, ଅପୁତ୍ରିକ ବ୍ୟକ୍ତିର ଯଜ୍ଞ, ଦାନ, ତପସ୍ୟା ଆଦି ସବୁ ବୃଥା ହୁଏ- ଏ କଥା ତୁମେହିଁ ମୋତେ କହିଥିଲ । ପରିସ୍ଥିତି ଏପରି ଯେ ମୁଁ ସନ୍ତାନ ଉତ୍ପାଦନ ପାଇଁ ସଂପୂର୍ଣ୍ଣ ଅଯୋଗ୍ୟ । ସ୍ତ୍ରୀ ସହିତ ଯୌନ ସଂପର୍କ ସ୍ଥାପନ ମାତ୍ରେ ମୋର ମୃତ୍ୟୁ ଅନିବାର୍ଯ୍ୟ । ତୁମ ଦୁହିଁଙ୍କ ଠାରେ କୌଣସି ଦୋଷ ନାହିଁ । ଉଭୟେ ସନ୍ତାନବତୀ ହେବାପାଇଁ ପୂର୍ଣ୍ଣ ସମର୍ଥ । ସମସ୍ତ କାମନା ବାସନାକୁ ଅବଦମିତ କରି ତୁମେ ଭରା ଯୌବନରେ କଠୋର ସନ୍ନ୍ୟାସବ୍ରତ ଗ୍ରହଣ କରିବାକୁ ବାଧ୍ୟ ହୋଇଛ । ନିଜର ଇଚ୍ଛା ବିରୁଦ୍ଧରେ ଅକଥନୀୟ ଜୀବନ ଯନ୍ତ୍ରଣାରେ ଦଗ୍ଧ

ହେବାରେ ଲାଗିଛ । ବର୍ତ୍ତମାନ ବଂଶରକ୍ଷା ପାଇଁ ସନ୍ତାନର ଆବଶ୍ୟକତା ଅପରିହାର୍ଯ୍ୟ ହୋଇ ପଡ଼ିଲାଣି । ଆଉ ଅଧିକ ସମୟ ଅଯଥାରେ ନଷ୍ଟ କରିବା ଉଚିତ ହେବ ନାହିଁ । ଏଣୁ ନିଯୋଗ ପ୍ରଥା ଦ୍ୱାରା ସନ୍ତାନବତୀ ହୋଇ ତୁମେ ମହାନ ହସ୍ତିନା ରାଜବଂଶରକ୍ଷା କାର୍ଯ୍ୟରେ ସହାୟତା ପ୍ରଦାନ କର । ଏଥିପାଇଁ ତୁମେ ମନୋମତ ସତ୍‌ପୁରୁଷଙ୍କ ସହିତ ମିଳିତ ହୁଅ ।

ମହାରାଜାଙ୍କ ଅନ୍ତରର ବ୍ୟଥା ମୁଁ ଅନୁଭବ କଲି । ବଂଶରକ୍ଷା ପାଇଁ ସେ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ଗଲେଣି ଜାଣି ମୋର ନେତ୍ରଦ୍ୱୟ ସଜଳ ହୋଇ ଆସିଲା ।

ଭାବିଲି- ଅବିବାହିତ ଥିବା ଅବସ୍ଥାରେ ମୁଁ ଯେଉଁ ମହାପାତକ ଅର୍ଜନ କରିଛି, ବୋଧହୁଏ ସେହି ପାପର ଦଣ୍ଡ ସ୍ୱରୂପ ବିବାହ ପରେ ସ୍ୱାମୀଙ୍କ ସହିତ ରହି ମଧ୍ୟ ମୁଁ ବୈଧବ୍ୟର ତୀବ୍ର ଯନ୍ତ୍ରଣା ଅନୁଭବ କରୁଛି । ସ୍ୱାମୀ ମୋତେ ଯାହା ବୋଲି ଭାବନ୍ତି, ବାସ୍ତବରେ ମୁଁ ତାହା ନୁହେଁ । ପରିସ୍ଥିତିର ଦାସ ହୋଇ ସ୍ୱାମୀ ମୋତେ ପରପୁରୁଷ ସହିତ ମିଳିତ ହେବାକୁ ଅନୁରୋଧ ମିଶା ନିର୍ଦ୍ଦେଶ ଦେବା ଘଟଣା ମୋତେ ବିସ୍ମିତ କରି ପକାଇଲା । ଯେ କୌଣସି ସ୍ୱାମୀ ତା ସ୍ତ୍ରୀର ଅନ୍ୟ ପୁରୁଷ ସହିତ ଅବୈଧ ସଂପର୍କ କଥା ଶୁଣିବା ମାତ୍ରେ ପ୍ରଳୟ କାଣ୍ଡ ସୃଷ୍ଟି କରିବାକୁ ପଛାଉ ନଥିବାବେଳେ, ମୋ ସ୍ୱାମୀ ତାଙ୍କ ଧର୍ମପତ୍ନୀକୁ ପରପୁରୁଷ ସହିତ ପ୍ରଣୟ ରଚନାର ସୁଯୋଗ ଦେବାକୁ ଆଦୌ କୁଣ୍ଠିତ କୁହନ୍ତି । ଏହା ମଧ୍ୟ ନିୟତିର ଏକ ନିଷ୍ଠୁର ନିର୍ଦ୍ଦେଶ ବ୍ୟତୀତ ଅନ୍ୟ କିଛି ନୁହେଁ । ବଂଶ ରକ୍ଷାର ଅପରିହାର୍ଯ୍ୟ ଆବଶ୍ୟକତା ମହାରାଜାଙ୍କୁ ଏପରି ଏକ ସ୍ତରକୁ ଟାଣି ଆଣିଲା, ଯାହା ଫଳରେ ସେ ତାଙ୍କ ବିବାହିତା ପତ୍ନୀକୁ ଏକ ବାରନାରୀରେ ପରିଣତ କରିଦେବାକୁ ଦ୍ୱିଧା ବୋଧ କରୁ ନାହାନ୍ତି । ଏଥିପାଇଁ ମୋର ସମ୍ମତି ପ୍ରତି ମଧ୍ୟ ଆଦୌ ଦୃଷ୍ଟିଦିଆଗଲା ନାହିଁ । ସ୍ୱାମୀ ଦେବତା, ଇହକାଳ ପରକାଳର ମୁକ୍ତିଦାତା । ତାଙ୍କ ଆଦେଶ ବା ଏକାନ୍ତ ଅନୁରୋଧକୁ ସ୍ତ୍ରୀ ଉପେକ୍ଷା କରିବା ଘୋର ପାପ ବୋଲି ପୁରୁଷ ପ୍ରଧାନ ସମାଜ କେଉଁ କାଳରୁ ଘୋଷଣା କରି ଦେଇଛି । ତେଣୁ ନାରୀର ସ୍ୱାତନ୍ତ୍ର୍ୟ ବା ସ୍ୱାଭିମାନ ବୋଲି କିଛି ନାହିଁ । ସ୍ୱାମୀ ନିଜର ଆବଶ୍ୟକତାକୁ ପ୍ରାଧାନ୍ୟ ଦେଇ ମୋ ନାରୀତ୍ୱ ପ୍ରତି ସଂପୂର୍ଣ୍ଣ ଆଖିବୁଜି ଦେଇଥିବା ତାଙ୍କର ଉଦାରତା ନୁହେଁ- ବରଂ ସ୍ୱାର୍ଥପରତା ବୋଲି କହିଲେ ଭୁଲ୍ ହେବ ନାହିଁ । ଆଜିର ଏ ମହାନତା ମହାରାଜାଙ୍କ ଏକାନ୍ତ ଅସହାୟତାର ପରି-ପ୍ରକାଶ ମାତ୍ର ।

କୁଳରକ୍ଷା ପାଇଁ ବ୍ୟାକୁଳ ମହାରାଜା ନିଯୋଗ ପ୍ରଥା ଦ୍ୱାରା ସନ୍ତାନ ଉତ୍ପାଦନ ପାଇଁ ମୋତେ ବାରମ୍ବାର ଅନୁରୋଧ କଲେ । ନିଯୋଗ ପ୍ରକ୍ରିୟା ସେ ସମୟରେ ଶାସ୍ତ୍ର ସମ୍ମତ ମଧ୍ୟ ଥିଲା । ତଥାପି କୌଣସି ନାରୀ ଏହାକୁ ସହଜରେ ଗ୍ରହଣ କରୁ ନଥିଲେ ।

ମହାରାଜାଙ୍କର ଏପରି ଏକ ଘୃଣ୍ୟ ପ୍ରସ୍ତାବକୁ ଗ୍ରହଣ କରିବା ପାଇଁ ମୋ ମନ ବିଦ୍ରୋହ କରି ଉଠିଲା । ପରପୁରୁଷକୁ ଦେହ ଦାନ କରି ଅତୀତର ସେହି ଭୁଲ୍‌ର ପୁନରାବୃତ୍ତି ପାଇଁ ମୁଁ ଆଦୌ ପ୍ରସ୍ତୁତ ନଥିଲି । ବଂଶରକ୍ଷା ନିମିତ୍ତ ମହାରାଜା ଯଦି ମୋର କୁମାରୀ ଜୀବନର ସନ୍ତାନକୁ ଗ୍ରହଣ କରି ସୁଖୀ ହୋଇ ପାରନ୍ତେ, ତେବେ ମୁଁ ପୁନର୍ବାର ପରପୁରୁଷ ସହିତ ମିଳିତ ହେବାର ଦୁର୍ଯ୍ୟୋଗରୁ ରକ୍ଷା ପାଇ ଯାଆନ୍ତି ।

ପରକ୍ଷଣରେ ଭାବିଲି, ନାଁ ସେପରି କରିବା ଚରମ ମୂର୍ଖତା ଛଡ଼ା ଅନ୍ୟ କିଛି ବୋଲି କୁହାଯିବ ନାହିଁ । ଏକଥା ଶୁଣୁ ଶୁଣୁ ମହାରାଜା ଉଗ୍ରରୂପ ଧାରଣ କରି କ'ଣ ଯେ ନ କରିବେ ଭାବି ହେବ୍ ନାହିଁ । ହୁଏତ ମୁଁ ପତି ପରିତ୍ୟକ୍ତା ଇତର-ରମଣୀ ଭାବରେ ରାଜ ରାସ୍ତାରେ ବୁଲିବା ନିଶ୍ଚିତ ହୋଇଯିବ । ଜାଣି ଶୁଣି ମୁଁ ଏପରି ବିପଦକୁ ଆମନ୍ତ୍ରଣ କରିବି କାହିଁକି ?

ସତ କହିବାକୁ ଗଲେ ନିଯୋଗ ପ୍ରଥା ଗ୍ରହଣ ମୋ ପକ୍ଷରେ ଆଦୌ ଦୂଷଣୀୟ ବିବେଚିତ ହେବ ନାହିଁ । କାରଣ ବିବାହର ବହୁ ପୂର୍ବରୁ ମୁଁ ପରପୁରୁଷ ସହିତ ମିଳିତ ହୋଇ ସନ୍ତାନର ଜନନୀ ମଧ ହୋଇଛି । ବର୍ତ୍ତମାନ ଅଯଥାରେ ନାରୀତ୍ୱ, ସତୀତ୍ୱ ଓ ସ୍ୱାଭିମାନର ଆଳ ଦେଖାଇ ପାପ ମାତ୍ରା ବଢ଼ାଇବି କାହିଁକି ? ବରଂ ନିଯୋଗ-ପ୍ରକ୍ରିୟାରେ ସନ୍ତାନବତୀ ହୋଇ ମୁଁ ସ୍ୱାମୀଙ୍କ ସନ୍ତୋଷ-ବିଧାନ କରିବା ହିଁ ଶ୍ରେୟସ୍କର ହେବ ।

ପୁଣି ମନ ଚଞ୍ଚଳ ହୋଇ ଉଠିଲା । ଭାବିଲି କଥା କେବେ ଲୁଚି ନାହିଁ । ହସ୍ତିନାର ପାଟରାଣୀ ସନ୍ତାନ ପ୍ରାପ୍ତି ଆଶାରେ ପରପୁରୁଷକୁ ଦେହଦାନ କରିଥିବା ବିଷୟ ସମସ୍ତେ ଜାଣିବେ । ମୋ ନାମରେ ନିନ୍ଦାର ଡିଣ୍ଡିମ ବାଜିବ । ବର୍ତ୍ତମାନ ପରପୁରୁଷ ସହିତ ମୋର ଏ ମିଳନକୁ ସ୍ୱାମୀଙ୍କ ଅନୁମତି ଓ ନିଯୋଗ ନାମକ ଏକ ଶାସ୍ତ୍ରୀୟ ମାନ୍ୟତାର ପୁଟ ଲଗାଇ ଦିଆଯିବ । ତେଣୁ ମୁଁ ଯେତେ ପୁରୁଷଙ୍କ ସହିତ ସଂପର୍କ ସ୍ଥାପନ କଲେ ମଧ କେହି କିଛି କହିବାକୁ ସାହସ କରିବେ ନାହିଁ ।

ବିଶେଷ କରି କେହି ଜାଣିଶୁଣି ରାଜ-ରୋଷର ଶିକାର ହେବାକୁ ଇଚ୍ଛା କରନ୍ତି ନାହିଁ । କ'ଣ କରିବି ଭାବି ପାରିଲି ନାହିଁ । ସ୍ୱାମୀଙ୍କ ପ୍ରସ୍ତାବ ଗ୍ରହଣ କରିବାକୁ ମୁଁ ଏକମତ ହୋଇପାରୁ ନଥିବା ବେଳେ ତାଙ୍କୁ ମନା କରିବାକୁ ସାହସ ମଧ୍ୟ ହେଲା ନାହିଁ ।

ବିଳମ୍ବ ନକରି ମୁଁ ମହାରାଜାଙ୍କ ନିକଟକୁ ଗଲି । ତାଙ୍କ ମନ ପରିବର୍ତ୍ତନ ଉଦ୍ଦେଶ୍ୟରେ କହିଲି,- ''ମହାରାଜ, ମୁଁ ଆପଣଙ୍କ ଧର୍ମପତ୍ନୀ । କାୟମନୋବାକ୍ୟରେ ମୁଁ ଆପଣଙ୍କ ଔରସଜାତ ସନ୍ତାନ ପ୍ରୟାସୀ । ଅନ୍ୟ ଯେ କୌଣସି ବ୍ୟକ୍ତି, ସେ ଯେ କୌଣସି ମହାପୁରୁଷ ହୁଅନ୍ତୁ ନା କାହିଁକି ତାଙ୍କ ଦ୍ୱାରା ସନ୍ତାନ ଉତ୍ପାଦନ ମୋର ସ୍ୱପ୍ନର ଅତୀତ । ଏ ଦେଶରେ ଏପରି କୌଣସି ବ୍ୟକ୍ତି ନାହାନ୍ତି, ଯେକି ମହାରାଜା ପଣ୍ଡୁଙ୍କ ଧର୍ମପତ୍ନୀଙ୍କୁ ଶଯ୍ୟାସଙ୍ଗିନୀ ରୂପେ ପାଇବାକୁ ଯୋଗ୍ୟ ବିବେଚିତ ହେବେ । ମୁଁ ଏହା କଦାପି କରାଇ ଦେବି ନାହିଁ । ମୋର ଦୁର୍ଭାଗ୍ୟ ଯେ ଋଷି ଅଭିଶାପରୁ ମୁଁ ଆପଣଙ୍କ ସହିତ ମିଳିତ ହୋଇ ପାରିବି ନାହିଁ । ଏଣୁ ଦତ୍ତକ-ପୁତ୍ର ଗ୍ରହଣ କରି ଆପଣ ବଂଶ ରକ୍ଷା କରନ୍ତୁ । ନିଯୋଗ ପରି ଏକ ନିନ୍ଦନୀୟ ପ୍ରଥାଠାରୁ ପୋଷ୍ୟପୁତ୍ର ଗ୍ରହଣ ବହୁ ଗୁଣରେ ଉତ୍କୃଷ୍ଟ ।''

ମୋ ସ୍ୱରର ଦୃଢତାକୁ ଲକ୍ଷ୍ୟକରି ମହାରାଜ କହିଲେ,- '' ତୁମ ଅନ୍ତରର ବ୍ୟଥା ଉତ୍ତମରୂପେ ଅନୁଭବ କରି ପାରୁଛି । ମୁଁ ନିରୂପାୟ ହୋଇ ମୋର ଧର୍ମପତ୍ନୀଙ୍କୁ ପରପୁରୁଷର ସଙ୍ଗଲାଭ କରିବାକୁ ବାଧ୍ୟ କରୁଛି; ଏକଥା ତୁମକୁ ବୁଝାଇବା ଆବଶ୍ୟକ ନାହିଁ । ବଂଶରକ୍ଷା ପାଇଁ ସମ୍ପୂର୍ଣ୍ଣ ଦାୟଗ୍ରସ୍ତ ଓ ବିବଶ ହୋଇ ଯାହା କରିବାକୁ କହୁଛି, ସେ କଥା ମୁଁ ଉତ୍ତମ ରୂପେ ଜାଣେ । ସ୍ୱାମୀଙ୍କ ଉପସ୍ଥିତିରେ ଅନ୍ୟ କେହି ତା' ସ୍ତ୍ରୀ ପ୍ରତି ଅଶ୍ଳୀଳ ଇଙ୍ଗିତ କଲେ ପ୍ରଳୟ ସୃଷ୍ଟି ହୋଇଯାଏ । ମାତ୍ର ପରିସ୍ଥିତିର ତାଡ଼ନାରେ ମୁଁ ବିବେକ ଶୂନ୍ୟ ହୋଇ ପଡ଼ିଲିଣି । ଗୋଟିଏ ବିରାଟ ଏବଂ ପ୍ରତିଷ୍ଠିତ ପ୍ରାଚୀନ ରାଜବଂଶର ରକ୍ଷା ପାଇଁ ତୁମେ ନିଜକୁ ବଳିଦେବ । ଏହାହିଁ ବିଧିର ନିର୍ଦ୍ଦେଶ । ବଂଶରକ୍ଷା ପରି ମହାନ କାର୍ଯ୍ୟ ପାଇଁ ତୁମେ ନିଜର ଆତ୍ମ ସମ୍ମାନ ଓ ନାରୀତ୍ୱକୁ ଜଳାଞ୍ଜଳି ଦେବାକୁ ପଡ଼ିବ । ପୋଷ୍ୟପୁତ୍ର ଗ୍ରହଣ କଥା ମଧ ଶାସ୍ତ୍ର ସମ୍ମତ । ବଂଶ ସହିତ ପୋଷ୍ୟ ସନ୍ତାନର ରକ୍ତ ସଂପର୍କ ନଥାଏ । ମାତ୍ର ନିଯୋଗ ଦ୍ୱାରା ଉତ୍ପନ୍ନ ସନ୍ତାନ ସ୍ୱାମୀର ନହେଲେ ମଧ୍ୟ ସ୍ତ୍ରୀର ରକ୍ତ ସଂପର୍କ ରକ୍ଷା କରିଥାଏ । ମୁଁ ନିଯୋଗୋତ୍ପନ୍ନ ସନ୍ତାନର ଏକାନ୍ତ

ପକ୍ଷପାତୀ । ମନେରଖ- ଏହା ଆମୋଦ-ଦାୟକ ପ୍ରେମବ୍ୟାପାର ନୁହେଁ । ହସ୍ତିନା ରାଜବଂଶର ଉତ୍ତରାଧିକାରୀ ସୃଷ୍ଟି ପାଇଁ ଏକ ଦୁର୍ଲଙ୍ଘ୍ୟ ଆବଶ୍ୟକତା । ଆଶା ଅନୁରୋଧ ରକ୍ଷା କରି ମୋତେ ଶାନ୍ତି ପ୍ରଦାନ କରିବ ।''

ମହାରାଜାଙ୍କ କଥାର ପ୍ରତିବାଦ କରିବାକୁ ମୋର ସାହସ ହେଲା ନାହିଁ । ଭାବିଲି- ତାଙ୍କରି ଇଚ୍ଛା ହିଁ କାର୍ଯ୍ୟକାରୀ ହେବା ସେ ଚାହାନ୍ତି । ତାଙ୍କ ଜ୍ଞାତ ସାରରେ ପରପୁରୁଷ ସହିତ ମିଳିତ ହେବା ମୋର ଅଦୃଷ୍ଟ ଲିପିବୋଲି ଧରିନେଇ ମୁଁ ନୀରବ ସମ୍ମତି ଜଣାଇଲି ।

ମନ ଚଞ୍ଚଳ ହୋଇ ଉଠିଲା । ପୁନର୍ବାର ଜନନୀ ହେବାର ସୁପ୍ତ ବାସନା ହଠାତ୍ ଜାଗି ଉଠିଲା । ମାତୃତ୍ୱ ଗୌରବ ଲାଭ କରିବାର ସକଳ ଯୋଗ୍ୟତା ଥାଇ ଯେଉଁ ନାରୀ ଗର୍ଭ-ଧାରଣ ସୁଯୋଗରୁ ବଞ୍ଚିତ ହେବାକୁ ବାଧ୍ୟ ହୁଏ, ତାହାର ଅନ୍ତର୍ଦାହ ଅବର୍ଣ୍ଣନୀୟ । ଭାଗ୍ୟ ବିପର୍ଯ୍ୟୟରୁ ଭରା ଯୌବନରେ ମୁଁ ତାପସୀର କଠୋର ବ୍ରତ ପାଳନ କରୁଛି । ପ୍ରେମ , ପ୍ରୀତି , ସୋହାଗ , ସମ୍ଭୋଗ ପ୍ରତି ମୋର ବିତୃଷ୍ଣା ଆସି ଯାଇଥିଲା । ମାତ୍ର ଆଜି ହଠାତ୍ ମୋ ମନରେ ଏକ ପରିବର୍ତ୍ତନର ସୂତ୍ରପାତ ହୋଇଗଲା । ପୁଣି ମାତୃତ୍ୱ ଲାଭ ଆଶାରେ ମୁଁ ସ୍ୱପ୍ନ ବିଭୋର ହୋଇ ଉଠିଲି । ଅତୀତର ସେଇ ଅଶ୍ଳୀଳ ସ୍ମୃତି ମନେ ପକାଇ ମୁଁ ବ୍ୟଥିତ ହେବାରେ ଲାଗିଲି । ସେତେବେଳର ଯେଉଁ ମାତୃତ୍ୱକୁ ଧିକ୍କାର କରି ମୁଁ ଅଭିଶାପ ମନେ କରିଥିଲି, ଆଜି ସେଇ ମାତୃତ୍ୱର ସମ୍ଭାବନାରେ ମୋର ମନ ପ୍ରାଣ ପୁଲକିତ ହୋଇ ଉଠିଲା । ମୁଁ ତାପସୀ ଜୀବନର କଠୋର ଶୃଙ୍ଖଳାରୁ ନିଜକୁ ମୁକ୍ତ କରିନେଲି । ଅଙ୍ଗେ ଅଙ୍ଗେ ମୋର ଯୁବତୀ ସୁଲଭ ଚଞ୍ଚଳତା ଧୀରେ ଧୀରେ ଆତ୍ମ ପ୍ରକାଶ କରିବାରେ ଲାଗିଲା ।



ଏହିପରି ଭାବୁଥିଲା ବେଳେ ହଠାତ୍ ମୋର ମହର୍ଷି ଦୁର୍ବାସାଙ୍କ ପ୍ରଦତ୍ତ ମନ୍ତ୍ର ଓ ମାଳା କଥା ମନେ ପଡ଼ିଗଲା । ଅତୀତର ଯେଉଁ ମାଳା ମୋ ଜୀବନରେ ଅଭିଶାପ ରୂପେ ଦେଖା ଦେଇଥିଲା, ଆଜି ସେଇ ମାଳା ଓ ମନ୍ତ୍ର ଆଶୀର୍ବାଦର ବାର୍ତ୍ତା ବହନ କରିବ । ମୁଁ ଖୁବ୍ ଉଲ୍ଲସିତ ହୋଇ ମହାରାଜାଙ୍କୁ ମନ୍ତ୍ର ଓ ମାଳାର ଗୋପନ ରହସ୍ୟ ଜଣାଇଲି । କୋଟିନିଧି ପାଇଲା ପରି ଆନନ୍ଦିତ ହୋଇ ସେ କହିଲେ,- ''ଏତେ ଦିନେ ପ୍ରଭୁ ମୋର ଦୁଃଖ ଶୁଣିଛନ୍ତି । ମର୍ତ୍ତ୍ୟବାସୀ ନୁହେଁ, ତୁମେ ସ୍ୱର୍ଗର ଦେବତାଙ୍କୁ ଆମନ୍ତ୍ରଣ କରି ପୁତ୍ରବତୀ ହୁଅ । ଏହାହିଁ ମୋର ଆଶୀର୍ବାଦ ।

କ୍ଷଣକାଳ ନୀରବ ରହିବା ପରେ ପୁଣି ପଚାରିଲି,- ''କେଉଁ ଦେବତାଙ୍କୁ ଆହ୍ୱାନ କରିବି ଆଦେଶ କରନ୍ତୁ । ମହାରାଜା କହିଲେ,- ''ପ୍ରଭୁ ଧର୍ମରାଜଙ୍କୁ ଯଥା ସମ୍ମାନ ପୂର୍ବକ ଆମନ୍ତ୍ରଣ କର । ଏକ ଧର୍ମାତ୍ମା ପୁତ୍ର ହିଁ ମୋ କୁଳ ଉଜ୍ଜ୍ୱଳ କରିବ ।'' ଆଉ ବା କ'ଣ ପଚାରନ୍ତି । ମୁଁ ଅନ୍ୟତ୍ର ଚାଲିଗଲି ।

ଦିନେ ଶୁଦ୍ଧ ସ୍ନାନ ପରେ ମୁଁ କୁଟୀର ଅଭ୍ୟନ୍ତରକୁ ଗଲି । ମାଳାଧରି ମନ୍ତ୍ର ପୁରଶ୍ଚରଣ କରିବା ପୂର୍ବରୁ ହଠାତ୍ କୁମାରୀ ଦିନର ସେହି ଦାରୁଣ ସ୍ମୃତି ମୋତେ କିଛି ସମୟ ପାଇଁ ଅଭିଭୂତ କରି ପକାଇଲା । ସେ ଦିନର ମନ୍ତ୍ରୋଚାରଣ ଥିଲା ମୋର ଏକାନ୍ତ ନିଜସ୍ୱ ଓ ବିଚାରହୀନତାର ଦାରୁଣ ପରିଣତି । ମାତ୍ର ଆଜିର ପରିସ୍ଥିତି ଭିନ୍ନ ପ୍ରକାରର । ଆଜି ମୁଁ ଯାହା କରୁଛି ତାହା ସ୍ୱାମୀଙ୍କ ଆଦେଶରେ ହିଁ କରୁଛି ।''

ମାଳାଧରି ମନ୍ତ୍ର ଜପିବା ଆରମ୍ଭ କରିଦେଲି । ଅଳ୍ପ ସମୟ ମଧ୍ୟରେ ଇପ୍ସିତ ଦେବତା କୁଟୀର ଅଭ୍ୟନ୍ତରରେ ଉପସ୍ଥିତ ହେବାରୁ ମୋର ଧ୍ୟାନଭଗ୍ନ ହୋଇଗଲା । ଦେବତାଙ୍କ ଅପୂର୍ବ ରୂପ ଲାବଣ୍ୟ ଓ ସମୁଜ୍ଜ୍ୱଳ ମୁଖ ମଣ୍ଡଳର ଅପୂର୍ବ ଜ୍ୟୋତିରେ ମୋ ଚକ୍ଷୁ ଝଲସି ଉଠିଲା । ଅଜଣା ପୁଲକରେ ସର୍ବାଙ୍ଗ ଉଲ୍ଲସିତ ହେବାକୁ ଲାଗିଲା । ଧର୍ମଦେବ ମୋତେ ଆଲିଙ୍ଗନ କରିବା ମାତ୍ରେ ମୁଁ ଶିହରୀ ଉଠିଲି । ମୋତେ ଛାତିରେ ଜଡାଇ ଧରି ସେ ପ୍ରଶ୍ନ କଲେ,- ''କଲ୍ୟାଣି, ନିଃସଙ୍କୋଚରେ ତୁମର ଇଚ୍ଛା ବ୍ୟକ୍ତ କର ।'' ଲାଜରେ ମୁଁ ତାଙ୍କ ମୁହଁକୁ ଚାହିଁ ପାରିଲି ନାହିଁ । ଅଧୋବଦନରେ କହିଲି,- ''ଧାର୍ମିକ ଓ ନ୍ୟାୟବନ୍ତ ଏକ ପୁତ୍ର ସନ୍ତାନ କାମନା କରୁଛି ।'' ଦେବତା ତଥାସ୍ତୁ କହିବା ଶୁଣିଛି । ଏହାପରେ ମୁଁ ସଞ୍ଜ୍ଞାହୀନ ହୋଇ ପଡ଼ିଥିଲି ।

ଯଥା ସମୟରେ ମୁଁ ଆଶ୍ରମରେ ଏକ ପୁତ୍ର ସନ୍ତାନକୁ ଜନ୍ମ ଦେଲି । ଶିଶୁଟିର କମନୀୟ ମୁଖମଣ୍ଡଳ ଓ ଅପୂର୍ବ ରୂପକାନ୍ତି ମୋ ହୃଦୟକୁ ପ୍ରଶାନ୍ତିରେ ଭରି ଦେଉଥାଏ । ସ୍ୱାମୀଙ୍କ ଇଚ୍ଛା ପୂରଣ ହେବା ସଂଗେ ସଂଗେ ମୋର ଆନନ୍ଦ ବହୁଗୁଣିତ ହୋଇ ଉଠିଲା । ମାତୃତ୍ୱ ଗୌରବ-ମଣ୍ଡିତା ହୋଇ ମୁଁ ପରମ ତୃପ୍ତିଲାଭ କଲି ।

ବଂଶରକ୍ଷା ପାଇଁ ସ୍ୱାମୀ ମୋର ଆଉ ପାଗଳ ପରି ହେବେ ନାହିଁ ଜାଣି ମୁଁ ଆଶ୍ୱସ୍ତ ହେଲି । ମାତ୍ର ମୋର ସେ ଧାରଣା ଅଳୀକ ପ୍ରମାଣିତ ହେଲା । ଅଳ୍ପଦିନ ପରେ ସ୍ୱାମୀ ମୋର ଭୂୟସୀ ପ୍ରଶଂସା କରୁ କରୁ କହିଲେ,- ''ମୁଁ ତୁମ ଲାଗି ଗର୍ବିତ, ତୁମେ ମୋ ବଂଶରକ୍ଷା କରି ମୋତେ ଅନୁଗୃହୀତ କରିଛ । ତୁମେ ଧନ୍ୟ । ଅନୁରୋଧ ଏତିକି ଯେ ତୁମେ ମୋତେ ଆଉ ଗୋଟିଏ ବଳବାନ ପୁତ୍ର ଦେଇ ମୋ ଇଚ୍ଛା ପୂରଣ କର । ବହୁ ଆଶାୟୀ ହୋଇ ମୁଁ ଏ ପ୍ରକାର ଅନୁରୋଧ କରୁଛି ।''

ମୋର ଇଚ୍ଛା ଅନିଚ୍ଛାର କିଛି ମୂଲ୍ୟ ନଥିଲା । ସ୍ୱାମୀଙ୍କ ଆଦେଶ ହିଁ ମୋ ଇଚ୍ଛାକୁ ନିୟନ୍ତ୍ରିତ କରୁଥିଲା । ପ୍ରତିବାଦ ବା କରନ୍ତି କାହିଁକି ? ମୁଁ ନୀରବ ରହିଲି ।

ଉପଯୁକ୍ତ ସମୟରେ ମୁଁ ମହାପରାକ୍ରମଶାଳୀ ବାୟୁ ଦେବତାଙ୍କୁ ଆହ୍ୱାନ କଲି ଓ ତାଙ୍କ ଔରସରୁ ମୋର ଦ୍ୱିତୀୟ ପୁତ୍ର ଭୂମିଷ୍ଠ ହେଲା । ବର୍ତ୍ତମାନ ମୁଁ ଦୁଇଟି ପୁତ୍ରର ଜନନୀ ହୋଇ ପରମ ପରିତୃପ୍ତି ଅନୁଭବ କରିବାରେ ଲାଗିଲି । ଯେଉଁ ନାରୀ ପକ୍ଷରେ ଜନନୀ ହେବାର ଗୌରବ ସ୍ୱପ୍ନାତୀତ ହୋଇ ଯାଇଥିଲା, ସେ ଆଜି ଦୁଇ ଦୁଇଟି ଅତି ସୁନ୍ଦର ପୁତ୍ର ଲାଭ କରି କି ପ୍ରକାର ଆନନ୍ଦ ଅନୁଭବ କରୁଥିବ, ସେ କଥା କଳ୍ପନା କରିବା ସହଜ ନୁହେଁ । ଅନ୍ଧଟିଏ ଚକ୍ଷୁଲାଭ ପରେ ଯେଉଁ ତୃପ୍ତି, ଯେଉଁ ପ୍ରଶାନ୍ତି ଅନୁଭବ କରେ ମୋ ପକ୍ଷରେ ମାତୃତ୍ୱ ସେହିପରି ପୁଲକ-ପ୍ରଦ ହୋଇ ଉଠିଥିଲା ।

ମୁଁ ମହାରାଜାଙ୍କୁ ଖୁସି କରିପାରିଥିବାରୁ ଖୁବ୍ ଆଶ୍ୱସ୍ତ ହୋଇ ପଡ଼ିଥିଲି । ଏଣିକି ସେ ତପଃ ସାଧନାରେ ମନୋନିବେଶ କରିବାରେ ଆଉ କୌଣସି ପ୍ରତିବନ୍ଧକ ରହିବ ନାହିଁ ଭାବି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇ ଉଠିଥିଲି । ମାତ୍ର ତାଙ୍କ ତୃଷା ନିବାରଣ ପାଇଁ ସମୁଦ୍ର ମଧ୍ୟ ପର୍ଯ୍ୟାପ୍ତ ହେଲା ନାହିଁ । ସେ ଅତି ସନ୍ତର୍ପଣର ସହିତ କହିଲେ, ''ଦେବୀ, ଏହା ମୋର ଅନ୍ତିମ ଅନୁରୋଧ । ଆଶାକରେ ତୁମେ ମୋତେ ନିରାଶ କରିବ ନାହିଁ । କେଜାଣି କାହିଁକି ମୁଁ ତୃତୀୟ

ପୁତ୍ର ପ୍ରାପ୍ତି ପାଇଁ ବିଚଳିତ ହୋଇ ଉଠୁଛି । ଏଣୁ ଏଇ ଥରକ ମାତ୍ର ମୋ ଅନୁରୋଧ ରକ୍ଷା କର । ତୁମର ଅନିଚ୍ଛା ମୋ ମନରେ ଦାରୁଣ ଆଘାତ ଦେବ ।''

ଭାବିଲି,- କୁମାରୀ ଅବସ୍ଥାରେ ମାଆ ହୋଇ ପାରିଲି । ଏବେ ସ୍ୱାମୀଙ୍କ ଆଦେଶ ଓ ଅନୁରୋଧକୁ ଉପେକ୍ଷା କରି ନପାରି ଦୁଇଥର ମାଆ ହୋଇ ସାରିଲିଣି । ଏହାତ ଶେଷ ଅନୁରୋଧ ବୋଲି ମହାରାଜା କହୁଛନ୍ତି । ତେଣୁ ତାଙ୍କ ଇଚ୍ଛା ଓ ଆଗ୍ରହକୁ ସମ୍ମାନ ଦେବି । ଏହିପରି ଚିନ୍ତା କଲାପରେ କହିଲି,- ''ଏହାହିଁ ଆପଣଙ୍କ ଶେଷ ଅନୁରୋଧ ହେବ । ପୁନର୍ବାର ଏପରି ନକରିବାକୁ ଆଗରୁ ଜଣାଇ ଦେଉଛି । ଆଶାକରେ ଆପଣ ମୋତେ ଅବାଧ୍ୟ ହେବାକୁ ସୁଯୋଗ ଦେବେ ନାହିଁ ।

ଯଥା ସମୟରେ ମୁଁ ଦେବରାଜ ଇନ୍ଦ୍ରଙ୍କୁ ଆହ୍ୱାନ କରି ଏକ ଦିବ୍ୟ ସୁନ୍ଦର ତେଜସ୍ୱୀ ପୁତ୍ର ଲାଭ କରିଥିଲି । ଫାଲ୍‌ଗୁନୀ ନକ୍ଷତ୍ରରେ ଜନ୍ମଲାଭ କରିଥିବାରୁ ପୁତ୍ରଟିର ନାମ ଫାଲ୍‌ଗୁନୀ ରଖାଯାଇଥିଲା ।

ଆଶ୍ଚର୍ଯ୍ୟର କଥା ଅଳ୍ପ ଦିନ ପରେ ମହାରାଜାଙ୍କ ପୁତ୍ର ତୃଷା ପୁଣି ଜାଗ୍ରତ ହୋଇ ଉଠିଲା । ସେ ସାମାନ୍ୟ ସୂଚନା ଦେଉଁ ଦେଉଁ ମୁଁ ଉତ୍‌କ୍ଷିପ୍ତ ହୋଇ କହି ଉଠିଲି,- ''ଦେଖନ୍ତୁ ଆପଣଙ୍କ ଲାଳସାର ପରିସମାପ୍ତି ନାହିଁ । ମାତ୍ର ମୁଁ ଶତପୁତ୍ରର ଜନନୀ ହୋଇ ପାରିବି ନାହିଁ ବୋଲି ବହୁ ଆଗରୁ ଜଣାଇ ଦେଇଛି ଓ ତାହାହିଁ ମୋର ଶେଷ ନିଷ୍ପତ୍ତି ।'' ସେ ଦିନ ମହାରାଜ ପ୍ରଥମଥର ପାଇଁ ମୋର ଉଗ୍ରରୂପ ଦେଖି ନୀରବ ରହିଗଲେ ।

ଅନ୍ୟମାନଙ୍କର ଏକଥା ଭାବିବା ସ୍ୱାଭାବିକ ଯେ ଜଣେ ସ୍ତ୍ରୀ ଯଦି ତିନିଥର ପରପୁରୁଷଙ୍କ ସହିତ ଅକୁଣ୍ଠିତ ଚିତ୍ତରେ ମିଳିତ ହୋଇ ପାରିଲା, ତେବେ ଚତୁର୍ଥ ଥର ପାଇଁ ସେ ଏପରି ଦୃଢ଼ ପ୍ରତିବାଦ କରିବାର କାରଣ କ'ଣ ? ସତ କହିବାକୁ ଗଲେ କାରଣଟି ମୋ ବ୍ୟତୀତ ଆଉ କାହାକୁ ଜଣା ନଥିଲା ।

ଯାହାକୁ ମୁଁ ଚତୁର୍ଥ ଥର ବୋଲି କହୁଛି ବାସ୍ତବରେ ତାହା ପଞ୍ଚମଥର । ମୋର ପ୍ରଥମ ପତି ସୂର୍ଯ୍ୟଦେବ, ଦ୍ୱିତୀୟରେ ବିବାହିତ ପତି ମହାରାଜା ପଣ୍ଡୁ । ତୃତୀୟ, ଚତୁର୍ଥ ଓ ପଞ୍ଚମ ଥର ପାଇଁ ଯଥାକ୍ରମେ ଧର୍ମ, ବାୟୁ ଏବଂ ଇନ୍ଦ୍ରଦେବ ମୋର ପତି ରୂପେ ସ୍ୱୀକୃତ । ଶାସ୍ତ୍ରରେ କେଉଁଠି ଲେଖା ଅଛି ଯେ, ନାରୀ ପଞ୍ଚ କଲ୍ୟାଣୀ ଅର୍ଥାତ୍ ଜଣ ଜଣ କରି ପାଞ୍ଚ ଜଣଙ୍କୁ ଅଙ୍ଗଦାନ କଲେ ମଧ୍ୟ ସେ

ଦୂଷିତ ହୁଏ ନାହିଁ । ମୋର ସେଇ କଥାରେ ବିଶ୍ୱାସ ଥିବାରୁ ମୁଁ ଷଷ୍ଠଥର ପାଇଁ ସ୍ୱାମୀଙ୍କ ଅନୁରୋଧକୁ ଦୃଢ ବିରୋଧ କରିଥିଲି । ଭାବିଲି ରାମାୟଣ ଯୁଗର ସତୀତ୍ୱ ଓ ନାରୀତ୍ୱର ସଜ୍ଞା ବଦଳି ଯାଇ ମହାଭାରତ ଯୁଗକୁ କେତେ ସରଳ ହୋଇଗଲା ସତେ ! ରାମାୟଣ ଯୁଗରେ ପର ପୁରୁଷର ଅଙ୍ଗ ସ୍ପର୍ଶ କରିଦେଲେ ନାରୀତ୍ୱର ଅବମାନନା ହେଲା ବୋଲି ବିବେଚିତ ହେଉଥିବା ବେଳେ ମହାଭାରତ ଯୁଗରେ ନାରୀ ପାଞ୍ଚ ପାଞ୍ଚ ଜଣ ପୁରୁଷଙ୍କ ସହିତ ଶାରୀରିକ ସଂପର୍କ ସ୍ଥାପନ କରି ନାରୀତ୍ୱ ବଜାୟ ରଖିପାରେ, ଏପରି ଶାସ୍ତ୍ରୋକ୍ତି ମଧ୍ୟ ଅଛି । ଦ୍ୱାପର ଯୁଗପରେ କଳି ଯୁଗକୁ ପଞ୍ଚକଲ୍ୟାଣୀ ସ୍ଥାନରେ ଦଶକଲ୍ୟାଣୀ ବୋଲି ଶାସ୍ତ୍ରରେ ଲେଖାଯାଇ ପାରେ । ଏପରି ଶାସ୍ତ୍ରୋକ୍ତିକୁ ମୋର ସହସ୍ର ପ୍ରଣାମ । ମୋ ପରି ଜଣେ ସାମାନ୍ୟ ନାରୀ ପଞ୍ଚ କଲ୍ୟାଣୀରେ ନିହିତ ନିଗୂଢ ତତ୍ତ୍ୱ ଭେଦ କରିବାକୁ ସଂପୂର୍ଣ୍ଣ ଅକ୍ଷମ । ବୋଧହୁଏ ହସ୍ତିନା ରାଜବଂଶର ପରଂପରାକୁ ଆଖି ଆଗରେ ରଖି ଏପରି କେତେକ ଉକ୍ତିକୁ ଶାସ୍ତ୍ର ସମ୍ମତ କରି ଦିଆଯାଇଛି । ମହାମାତା ସତ୍ୟବତୀ, ମୋର ଦୁଇ ଶାଶୂ, ମୁଁ ଏବଂ ମୋ ବୋହୂ ଦ୍ରୌପଦୀଙ୍କୁ ଲକ୍ଷ୍ୟ କରି ଏପରି କରାଯାଇଛି ବୋଲି ମୋର ଧାରଣା ।

ଅନେକ କଥା କହି ଗଲିଣି । ହଁ ମହାରାଜାଙ୍କ କଥା ଶୁଣୁ ଶୁଣୁ ମୁଁ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ଉଠିଛି ବୋଲି କହିଛି, ମୋର ଭାବଭଙ୍ଗୀ ଲକ୍ଷ୍ୟ କରି ମହାରାଜା ଅଧିକ କିଛି କହିବାକୁ ସାହସ କଲେ ନାହିଁ । ଏହା ମୋ ପାଇଁ କଲ୍ୟାଣକର ଭାବି ଆଶ୍ୱସ୍ତ ହେଲି । ମହାରାଜା ଆଉ କେବେ ହେଲେ ମୋତେ ଏ ପ୍ରକାର କାର୍ଯ୍ୟ ପାଇଁ ବାଧ୍ୟ ବା ଅନୁରୋଧ କରିବେ ନାହିଁ, ଏ ଧାରଣା ମୋର ଦୃଢ ହୋଇଗଲା । ମୁଁ ନିଶ୍ଚିନ୍ତ ରହିଲି ।

ମାଦ୍ରୀ ମୋର ସପତ୍ନୀ । ବେଳେ ବେଳେ ସେ ଖୁବ୍ ଉଦାସୀନ ରହୁଥିବା ମୁଁ ଲକ୍ଷ୍ୟ କରିଛି । ମୁଁ ତାକୁ ଖୁବ୍ ଭଲ ପାଏ । ମାତ୍ର ସତ କହୁଛି, ସେ ମୋ ପରି ସନ୍ତାନବତୀ ହେଉ, ଏ କଥା ମୁଁ ଆଦୌ ଇଚ୍ଛା କରୁ ନଥାଏ । ସପତ୍ନୀ ପ୍ରତି ଉଦାରତା ବା ଦୟା ପ୍ରଦର୍ଶନ କୌଣସି ନାରୀ ପକ୍ଷରେ ସମ୍ଭବ ନୁହେଁ । ମାଦ୍ରୀ ଯେଉଁ ବିଶେଷ କାରଣରୁ ଉଦାସୀନତା ପ୍ରକାଶ କରୁଥାଏ ତା' ମୁଁ ଉତ୍ତମ ରୂପେ ଜାଣି ମଧ୍ୟ ନଜାଣିଲା ପରି ଅଭିନୟ କରି ଚାଲିଥାଏ । ମହାରାଜା ଅତ୍ୟନ୍ତ ଚତୁର । ମଧ୍ୟେ ମଧ୍ୟେ କଥା ଛଳରେ ମାଦ୍ରୀ ବିଷୟ ଉତ୍ଥାପନ କରନ୍ତି । ତା' ମାନସିକ

ଅଶାନ୍ତି ପ୍ରତି ମୋର ସହାନୁଭୂତି ଆକର୍ଷଣ କରିବା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥାଏ । ସେ ପ୍ରସଙ୍ଗ ଆରମ୍ଭ ହେଲା ମାତ୍ରେ ମୁଁ କୌଣସି ନା କୌଣସି ବାହାନା ଦେଖାଇ ଅନ୍ୟତ୍ର ଚାଲିଯାଏ ।

ଅନେକ ଦିନ ବିତିଗଲା । ଦିନେ ଭାବିଲି,- ''ମାଦ୍ରୀ ପୁତ୍ରବତୀ ହେଲେ ମୋର ବା କି କ୍ଷତି ହେବ ? ସେ ଜଣେ ନାରୀ, ତା'ର ମଧ୍ଯ କିଛି କାମନା, ବାସନା ରହିବା ସ୍ୱାଭାବିକ । ପୁନଶ୍ଚ ମାତୃତ୍ୱ ବିନା ନାରୀର ଜୀବନ ଅସମ୍ପୂର୍ଣ୍ଣ । ମନରେ ଦୟା ହେଲା । ପୁଣି ବାରମ୍ବାର ସ୍ୱାମୀଙ୍କ ମନରେ ଆଘାତ ଦେବାକୁ ବିବେକ ମୋତେ ବାଧା ଦେଲା । ଦିନେ ମାଦ୍ରୀକୁ ଡାକି କହିଲି,- ''ଭଉଣୀ, ମୋର ତିନି ପୁଅ । ଅଥଚ ଏ ଯାଏ ତୋ କୋଳ୍ ଶୂନ୍ୟ । ତେଣୁ ତୋ ମାନସିକ ଅବସ୍ଥା କଳନାକରିବା ଅତି ସହଜ । ତୁ ମୋ ପରି ସନ୍ତାନବତୀ ହୋଇ ମାତୃତ୍ୱ ସୁଖ ଅନୁଭବ କର- ଏହାହିଁ ସ୍ୱାମୀଙ୍କ ଇଚ୍ଛା । ମୁଁ ସନ୍ତାନବତୀ ହେବାରୁ ତୋ ମନରେ ମଧ୍ୟ ମାଆ ହେବାର ବାସନା ଅତି ପ୍ରବଳ ହୋଇ ଉଠିଥିବା ମୁଁ ଜାଣେ । ଏଥର ତୋ ଦୁଃଖ ଦୂର ହେବାର ଉପାୟ ମୁଁ ବତାଇ ଦେଉଛି । ଅଚିରେ ତୋ ବାସନା ପୂର୍ଣ୍ଣ ହେବ ଓ ତୁ ଅପାର ଆନନ୍ଦ ଅନୁଭବ କରିବୁ ।''

ମାଦ୍ରୀ ସନ୍ତାନ ପ୍ରାପ୍ତି ଆଶାରେ ଅତ୍ୟନ୍ତ ଉତ୍କଣ୍ଠିତା ଥିଲା । ମୋ ଠାରୁ ସବିଶେଷ ଅବଗତ ହୋଇ ସେ ଆନନ୍ଦରେ ଅଧୀର ହୋଇ ଉଠିଲା । ସେତେବେଳେ ତା ମୁଖ ମଣ୍ଡଳର ପ୍ରଫୁଲ୍ଲତା ଦେଖି ମୁଁ ଖୁବ୍ ଖୁସି ହୋଇ ଉଠିଥିଲି ।

ଉପଯୁକ୍ତ ସମୟରେ ମାଦ୍ରୀ ମନ୍ତ୍ର ପୁରଶ୍ଚରଣ ପୂର୍ବକ ଯମଜ ଭ୍ରାତା ଅଶ୍ୱିନୀ କୁମାରଙ୍କୁ ଆମନ୍ତ୍ରଣ ଜଣାଇଲା ଓ ତାଙ୍କ ଔରସରୁ ଏକ କାଳୀନ ଦୁଇଟି ପୁତ୍ର-ସନ୍ତାନଙ୍କୁ ଜନ୍ମ ଦେଲା । ସେ ଦୁହିଁଙ୍କ ନାମ ରଖାଗଲା- ନକୁଳ ଓ ସହଦେବ । ପୁନର୍ବାର ଅନ୍ୟ କୌଣସି ଦେବତାଙ୍କୁ ଆହ୍ୱାନ କରି ମୋ ସହିତ ପ୍ରତିଦ୍ୱନ୍ଦିତା କରିପାରେ, ଏଇ ଆଶଙ୍କାରେ ମୁଁ ମାଦ୍ରୀଠାରୁ ମାଳାଟି ଫେରାଇ ଆଣିଲି ।

ଅଳ୍ପଦିନ ପରେ ମହାରାଜ ମାଦ୍ରୀକୁ ପୁନର୍ବାର ମାଳା ପ୍ରଦାନ କରିବାକୁ ଅନୁରୋଧ କରି ମୋ ଆଶଙ୍କାକୁ ସତ୍ୟରେ ପରିଣତ କରିଦେଲେ । ମହାରାଜାଙ୍କ କଥା ଶୁଣୁ ଶୁଣୁ ମୁଁ ଦୃଢ କଣ୍ଠରେ କହିଲି, ''ନାଁ, ତା' କଦାପି ସମ୍ଭବ ନୁହେଁ । ମୋତେ ଆଉ ସେ ପ୍ରକାର ଅନୁରୋଧ କଲେ ମୁଁ ନିଶ୍ଚୟ ଆପଣଙ୍କର ଅବାଧ୍ୟ ହେବି ।'' ମହାରାଜା ନୀରବ ରହିବା ଉଚିତ ମନେ କଲେ ।

ସମୟର ସ୍ରୋତ ବହି ଚାଲିଥାଏ । ମୋର ତିନିପୁଅ ଓ ମାଦ୍ରୀର ଦୁଇ ପୁଅଙ୍କୁ ନେଇ ଆମ ହସ ଖୁସିର ସଂସାର ଅତ୍ୟନ୍ତ ସୁଖମୟ ହୋଇ ଉଠିଲା । ମାନସିକ ଅବସାଦ ଦୂର ହୋଇ ଯିବା ପରେ ମହାରାଜା ନିବିଷ୍ଟ ଚିତ୍ତରେ ଧ୍ୟାନରେ ମନୋନିବେଶ କରି ପାରିଲେ । ଏ ସବୁ ସତ୍ୱେ ମାଦ୍ରୀ ମହାରାଜାଙ୍କ ପାଖକୁ ଯିବା ବେଳେ ମୁଁ ଖୁବ୍ ସତର୍କତା ଅବଲମ୍ବନ କରିଥାଏ । ଏ ପର୍ଯ୍ୟନ୍ତ ମାଦ୍ରୀର ଯୌବନ ଅତୁଟ ରହିଛି । ବରଂ ସନ୍ତାନ ପ୍ରସବ ପରେ ତା' ରୂପକାନ୍ତି ଅଧିକ ଲୋଭନୀୟ ହୋଇ ଉଠୁଥିବାର ଲକ୍ଷ୍ୟକରି ମୁଁ ଚିନ୍ତିତ ହୋଇ ପଡୁଥାଏ । ମୁଁ ଉତ୍ତମ ରୂପେ ଜାଣେ, କଠିନ ତପଃ ଆଚରଣ କରୁଥିବା ପୁରୁଷ କୌଣସି ଅସାମାନ୍ୟ ରୂପବତୀ ଯୁବତୀକୁ ସମ୍ମୁଖରେ ଦେଖିଲେ ତାଙ୍କର ପୁରୁଷ-ପ୍ରକୃତି ଚଞ୍ଚଳ ହୋଇ ଉଠେ ଓ ସେ ପରିଣତି ପ୍ରତି ଅନ୍ଧ ହୋଇ ପଡ଼ନ୍ତି । ମହାରାଜାଙ୍କ ଦୁର୍ବଳତା ମୋତେ ଅବିଦିତ ନଥିଲା । ସେ ମାଦ୍ରୀକୁ ଏକାନ୍ତରେ ପାଇଲେ ଅଘଟଣ ଘଟାଇବା ଅସମ୍ଭବ ନୁହେଁ । ଏଇ ଆଶଙ୍କା ଯୋଗୁଁ ମୁଁ ମାଦ୍ରୀକୁ ଗୋଡେ ଗୋଡେ ଜଗିଥାଏ । ମାତ୍ର କଳ୍ପନା କରି ନଥିଲି ଯେ ମୋ ଆଶଙ୍କା ଅତି ଅଳ୍ପଦିନ ମଧ୍ୟରେ ସତ୍ୟରେ ପରିଣତ ହେବ ଓ ଆମ ସର୍ବନାଶର ପଥ ସୁଗମ କରିଦେବ । ହାୟ, ସେ ଦିନର ଲୋମ ହର୍ଷଣକାରୀ କରୁଣ ଦୃଶ୍ୟ ଆଜି ମଧ୍ୟ ମୋ ହୃଦୟ ପଞ୍ଜରକୁ ପ୍ରକଂପିତ କରି ପକାଉଛି । ବର୍ଣ୍ଣନା କଲା ବେଳକୁ କଣ୍ଠରୋଧ ହୋଇ ଉଠୁଛି ।

ଘଟଣାଟି ଶୁଣନ୍ତୁ ।

ଦିନେ ମୁଁ ପିଲାମାନଙ୍କୁ ସଙ୍ଗରେ ନେଇ ବଣରେ ଏଣେ ତେଣେ ବୁଲୁଥାଏ । ମାଦ୍ରୀ ମୋ ଅନୁପସ୍ଥିତିର ସୁଯୋଗ ନେଇ ମହାରାଜାଙ୍କ ନିକଟକୁ ଗଲା । ତାକୁ ଦେଖିବାମାତ୍ରେ ମହାରାଜା ଅତ୍ୟନ୍ତ ଉଲ୍ଲସିତ ହୋଇ ଉଠିଲେ ଓ ସଙ୍ଗେ ସଙ୍ଗେ ତା ହାତଧରି ଅରଣ୍ୟର ଶୋଭା ଦେଖିବା ପାଇଁ ନେଇଗଲେ । ସେ ଦିନ ସ୍ୱଭାବ ସୁନ୍ଦରୀ ମାଦ୍ରୀ ଏକ ଝୀନ ବସନ ପରିଧାନ କରିଥିବାରୁ ତା'ର ଯୌବନଦୀପ୍ତ ତନୁଲତାଟି ଅତ୍ୟନ୍ତ ଆକର୍ଷଣୀୟ ହୋଇ ଉଠିଥାଏ । ସାରା ଅରଣ୍ୟରେ ବସନ୍ତର ରାଜତ୍ୱ । ତରୁଲତା ଅଙ୍ଗରେ କୁସୁମର ଅପୂର୍ବ ଶୋଭା ସାଙ୍ଗକୁ ଭ୍ରମର ମାନଙ୍କର ଗୁଞ୍ଜନ ମହାରାଜାଙ୍କ ମନରେ କାମ ବାସନାର ସର୍ବଗ୍ରାସୀ ନିଆଁ ଜଳାଇଦେଲା । ଦୀର୍ଘ ଦିନର ସଂଯମ, କଠୋର ତପସ୍ୟା ଓ ଯୋଗ ସାଧନା ଆଦି ନିମିଷକ ମଧ୍ୟରେ ବୁଦ୍‌ବୁଦ୍ ପରି ମିଳାଇ ଗଲା । ସେ ପରିଣତି ସଚେତନ ନହୋଇ

ଏକାନ୍ତ ଭାବରେ ବର୍ତ୍ତମାନ ସର୍ବସ୍ୱ ହୋଇ ଉଠିଲେ । ତାଙ୍କୁ ମାଦ୍ରୀଙ୍କ ବ୍ୟତୀତ ଆଉ କିଛି ଦେଖାଗଲା ନାହିଁ । ସେ ଗାଢ ଆଲିଙ୍ଗନ ପୂର୍ବକ ମାଦ୍ରୀଙ୍କ ସହିତ ମିଳିତ ହେଲେ । ଏହି ସମୟରେ ଏକ ସୂତୀକ୍ଷ୍ମ ଶର ଆସି ରମଣ-ବ୍ୟାପୃତ ମହାରାଜାଙ୍କ ପୃଷ୍ଠଦେଶ ଭେଦ କଲା । ସେ ଆର୍ତ୍ତ ଚିତ୍କାର କରି ଉଠିଲେ । ମାଦ୍ରୀ ହତବାକ୍ ହୋଇ ଅତି ବ୍ୟାକୁଳ କଣ୍ଠରେ ମୋତେ ଡାକ ପକାଇଲା । ଘଟଣା କ'ଣ ଜାଣିବା ପାଇଁ ମୁଁ ଦ୍ରୁତ ପଦରେ ଅଗ୍ରସର ହେଲି । ପିଲାମାନେ ମୋ ପଛେ ପଛେ ଧାଉଁ ଥାନ୍ତି । ମାଦ୍ରୀ ଏକଥା ଦେଖି କହିଲା,- ''ପିଲାମାନଙ୍କୁ ଦୂରରେ ରଖି ତୁମେ ଏକୁଟିଆ ଆସ । ''ଏକୈବ ତୁମିହାଗଚ୍ଛ ।'' ଏଇ ପଦକ କଥାରେ ମୋ ମୁଣ୍ଡରେ ବଜ୍ରପାତର ଜ୍ୱାଳା ଅନୁଭୂତ ହେଲା । ଆଶଙ୍କା ସତ୍ୟରେ ପରିଣତ ହୋଇ ଗଲା  ଭାବି ମୁଁ ପଡ଼ିଉଠି ଧାଇଁବାରେ ଲାଗିଲି । ମାଦ୍ରୀ ପାଖରେ ପହଞ୍ଚି ଦେଖିଲି ମାଦ୍ରୀ ଓ ମହାରାଜ ଭୂମି ଉପରେ ପଡ଼ିଛନ୍ତି । ମହାରାଜାଙ୍କ ଶରୀର ସଂପୂର୍ଣ୍ଣ ନିଷ୍ପ୍ରାଣ । ମୋ ହୃଦୟ ଦୁଃଖ, କ୍ରୋଧ ଓ ଅନୁତାପରେ ବିଦୀର୍ଣ୍ଣ ହୋଇ ଉଠିଲା । ମୁଁ ଶବ ଉପରେ ଲୋଟିପଡ଼ି ଉଚ୍ଚ ସ୍ୱରରେ ବିଳାପ କରିବାକୁ ଲାଗିଲି । ମୋର ସମସ୍ତ କ୍ରୋଧ ମାଦ୍ରୀ ଉପରେହିଁ ଅଜାଡି ହୋଇ ପଡିଲା । ତାର ପରିଧାନ ଓ ବେଶ ପରିପାଟୀ ହିଁ ଆଜି ଏ ଅଘଟଣର କାରଣ ବୋଲି କହି ତାକୁ ମନଇଚ୍ଛା ଭର୍ତ୍ସନା କରିବାରେ ଲାଗିଲି । ଯେତେ ଯାହାକଲେ ଆଉ କ'ଣ ହେବ, ଅକାଳ କାଣ୍ଡ ମହାରାଜାଙ୍କ କପାଳରେ ବିଦ୍ଧ ହୋଇ ଆମ ଦୁହିଁଙ୍କ ଜୀବନକୁ ପୋଡି ଜାଳି ଛାରଖାର କରିଦେଲା ।

ଆମେ କ'ଣ କରିବୁ କିଛି ସ୍ଥିର କରି ପାରିଲୁ ନାହିଁ । ହଠାତ୍ ମହାରାଜାଙ୍କ ଏ ଦୁର୍ବଳତା ତାଙ୍କର ଦୀର୍ଘ ସଂଯମ ଓ ଯୋଗ ସାଧନାକୁ କବଳିତ କରି ପକାଇଲା । ମହାରାଜା ତ ଛାର, ମହା ମହା ଋଷି ମହର୍ଷିମାନେ ମଧ୍ୟ ନାରୀର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସଂଯମ ହରାଇ ବସିଥାନ୍ତି । ସେଇ କଥାକୁ ଲକ୍ଷ୍ୟ କରି- ପଣ୍ଡିତମାନେ କହିଛନ୍ତି-

ବିଶ୍ୱାମିତ୍ର ପରାଶରାଦି ମୁନୟୋ
ଯେ ଚାମ୍ବୁ ପର୍ଣ୍ଣାସନା
ତେଽପି ସ୍ତ୍ରୀ ମୁଖପଙ୍କଜ  ସୁଲଳିତ
ଦୃଷ୍ଟେବ ମୋହଂଗତା ।

ଯାହା ଘଟିବାର ଥିଲା ଘଟି ସାରିଲାଣି, ଏବେ କ'ଣ କରିବାକୁ ହେବ, କାହାକୁ ଡାକିବୁ, କୁଆଡେ ଯିବୁ କିଛି ସ୍ଥିର କରି ପାରିଲୁ ନାହିଁ । ମାଦ୍ରୀକୁ କହିଲି,- ''ଭଉଣୀ, ଏହାହିଁ ଆମର ଭାଗ୍ୟଲିପି ! ଅଯଥାରେ ତୋତେ ମୁଁ ବହୁ କଟୁକଥା କହିଛି । ମୋତେ କ୍ଷମା କରିଦେ । ବର୍ତ୍ତମାନ ଭାବୁଛି ତୁ ଅତ୍ୟନ୍ତ ଭାଗ୍ୟବତୀ । ଶେଷ ମୁହୂର୍ତ୍ତରେ ତୁ ସ୍ୱାମୀଙ୍କ ସଙ୍ଗ ଲାଭ କରିବାର ଗୌରବ ଅର୍ଜନ କରି ପାରିଛୁ । ଚଞ୍ଚଳ ସେଠାରୁ ଉଠିଆ ଏବଂ ମୋ କଥା ମନ ଦେଇ ଶୁଣ୍- ମୁଁ ମହାରାଜାଙ୍କ ପ୍ରଥମ ପତ୍ନୀ । ତେଣୁ ତାଙ୍କ ଚିତାଗ୍ନିରେ ଝାସଦେଇ ସହ-ଗମନ କରିବା ମୋର କର୍ତ୍ତବ୍ୟ ଓ ଧର୍ମ ମଧ୍ୟ । ଆଜିଠାରୁ ପିଲାମାନଙ୍କ ଦାୟିତ୍ୱ ତୋ ଉପରେ ନ୍ୟସ୍ତ ହେବ । ତୁ ପାଞ୍ଚପୁତ୍ରର ଜନନୀ ଭାବରେ ସେମାନଙ୍କୁ ପାଳନ କରିବୁ ।''

ମାଦ୍ରୀ କିଛି ଶୁଣିବା ବା କହିବା ଅବସ୍ଥାରେ ନଥିଲା । ମୋ କଥା ଶୁଣି ସେ ଚମକି ପଡ଼ିଲା ଓ ଅଶ୍ରୁପୂର୍ଣ୍ଣ କରୁଣ ଦୃଷ୍ଟିରେ ଚାହିଁ କହିଲା,- ''ଏ ନିନ୍ଦନୀୟ ଘଟଣା ପାଇଁ ମୁଁ ଏକମାତ୍ର ଦାୟୀ । ଏ ଅପକର୍ମ ବନାଗ୍ନି ପରି ଚାରିଆଡ଼େ ବ୍ୟାପିଯାଇ ମୋତେ ଜୀବନ୍ତ ଦଗ୍ଧ କରି ପକାଇବ ।  ଲଜ୍ଜ୍ୟା ଓ ଅପମାନରେ ମୁଁ ମୁଣ୍ଡଟେକି ପାରିବି ନାହିଁ । ଲୋକେ ମୋତେ ନାନା କଥା କହି ଅସ୍ତବ୍ୟସ୍ତ କରି ପକାଇବେ । ଏ ନିର୍ଲ୍ଲଜ ଜୀବନ ଧରି ମୁଁ ବଞ୍ଚିବି କିପରି ? ପୁନଶ୍ଚ ଯେଉଁ ନାରୀ ସ୍ୱାମୀଙ୍କ ମୃତ୍ୟୁର କାରଣ ହୁଏ, ତା'ର ସ୍ଥାନ ସଂସାରରେ କେଡେ ଦୟନୀୟ, ଘୃଣ୍ୟ ଓ ଅବାଞ୍ଛିତ ସେ କଥା ମୁଁ ଆପଣଙ୍କୁ ବୁଝାଇବାର ଆବଶ୍ୟକତା ନାହିଁ । କିଏ କିଛି କହନ୍ତୁ ବା ନ କହନ୍ତୁ ମୁଁ ଘୋର ଅପରାଧିନୀ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରୁଛି । ନିନ୍ଦାର ପସରା ମୁଣ୍ଡରେ ବୋହି ବଞ୍ଚି ରହିବାକୁ ଜୀବନ କୁହାଯାଏ ନାହିଁ । ତାହା ମରଣ ଠାରୁ ବଳି ଯନ୍ତ୍ରଣା ଦାୟକ । ଏଣୁ ପ୍ରାର୍ଥନା କରୁଛି ମୋ ପିଲା ଦୁଇଟିଙ୍କୁ ନିଜର ଗର୍ଭଜାତ ସନ୍ତାନ ଜ୍ଞାନରେ ପ୍ରତିପାଳନ କରିବେ । ଅଧିକ ସମୟ ବଞ୍ଚିରହି ମୁଁ ଏ ନିର୍ଲ୍ଲଜ ମୁଖ କାହାକୁ ଦେଖାଇବାକୁ ଚାହୁଁନାହିଁ । ଏ କଳଙ୍କିତ ଜୀବନର ତୁରନ୍ତ ଅବସାନ ହିଁ ମୋତେ ଶାନ୍ତି ଦେବ । ପାଦତଳେ ପଡ଼ି ପ୍ରାର୍ଥନା କରୁଛି, ମୋ ପାପର ପ୍ରାୟଶ୍ଚିତ ପାଇଁ ମୋତେ ସ୍ୱାମୀଙ୍କ ସହିତ ଚିତ୍ତା-ରୋହଣ କରିବାର ସୌଭାଗ୍ୟରୁ ବଞ୍ଚିତ କରନାହିଁ ଭଉଣୀ । ଏହାହିଁ ମୋର ଆପଣଙ୍କ ନିକଟରେ ଅନ୍ତିମ ଭିକ୍ଷା ।''

ଭାବିଲି,- ମାଦ୍ରୀ କଥାରେ ବାସ୍ତବତା ଅଛି । ତା'ରି ଯୋଗୁ ହିଁ ଏତେବଡ଼ ଦୁର୍ଘଟଣା ଘଟି ସବୁ ଦିନ ପାଇଁ ଆମ ମଥାର ସିନ୍ଦୂର ଲିଭିଗଲା । ବିଧି ବିଡମ୍ବନାକୁ ଗୁରୁତ୍ୱ ନଦେଇ ସମାଜ ମାଦ୍ରୀ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରିବ ନିଶ୍ଚୟ । ବରଂ ସେ ସ୍ୱାମୀଙ୍କ ଚିତାରେ ଆତ୍ମ ବିସର୍ଜନ କରି ସବୁଦିନ ପାଇଁ କଳଙ୍କ ମୁକ୍ତ ହୋଇଯିବା ଭଲ । ମୁଁ ଏହିପରି ଚିନ୍ତା କରୁଥିବା ଅବସ୍ଥାରେ ମାଦ୍ରୀ ଶରୀରରୁ ଅକସ୍ମାତ ପ୍ରାଣବାୟୁ ଉଡ଼ିଗଲା ।

ପିଲାମାନେ ଆସି ମୋ ପାଖରେ ଠିଆ ହୋଇ କାନ୍ଦିବାରେ ଲାଗିଥାନ୍ତି । ଏ ଅବସ୍ଥାରେ କିଏ ବା କାହାକୁ ସାନ୍ତ୍ୱନା ଦେବ ! ଆମ୍ଭମାନଙ୍କର ମିଳିତ କ୍ରନ୍ଦନ ଧ୍ୱନି ସମଗ୍ର ବନ ପ୍ରଦେଶକୁ ପ୍ରକମ୍ପିତ କରି ପକାଇଲା । ଅଳ୍ପ ସମୟ ମଧ୍ୟରେ ବହୁ ମୁନି ଋଷି ଉପସ୍ଥିତ ହୋଇ ଆମକୁ ନାନା ପ୍ରକାର ସାନ୍ତ୍ୱନା ଦେବାରେ ଲାଗିଲେ । ମାତ୍ର ଉଦ୍‌ବେଳିତ ହୃଦୟ ଆମର କୌଣସି ପ୍ରବୋଧନାରେ ଶାନ୍ତ ହେଲା ନାହିଁ । ବିପଦରେ ଅଧୈର୍ଯ୍ୟ ହୋଇ ପଡ଼ିବା ମନୁଷ୍ୟର ସହଜାତ ପ୍ରବୃତ୍ତି । ଆମେ ଅଧିକରୁ ଅଧିକ ବ୍ୟାକୁଳ ହେବାରେ ଲାଗିଲୁ ।

ମୁନୀମାନେ ଆମ୍ଭମାନଙ୍କ ସହିତ ମହାରାଜ ଓ ମାଦ୍ରୀଙ୍କ ମୃତ ଶରୀରକୁ ହସ୍ତିନା ନେଇ ଯିବାର ବ୍ୟବସ୍ଥା କଲେ । ରାଜ-ପ୍ରାସାଦରେ ପହଞ୍ଚିବା ପୂର୍ବରୁ ଆମ୍ଭମାନଙ୍କ ଭାଗ୍ୟ ବିପର୍ଯ୍ୟୟର ଦାରୁଣ ସମ୍ବାଦ ସେଠାରେ ପ୍ରଚାରିତ ହୋଇ ସାରିଥିଲା । ଆମେ ପହଞ୍ଚି ଯିବା ମାତ୍ରେ କୋଳାହଳମୟ ରାଜ-ପ୍ରାସାଦ ଦଣ୍ଡକ ମଧ୍ୟରେ ନୀରବ ନିସ୍ତବ୍ଧ ହୋଇ ଉଠିଲା । ମୋର ଶାଶୂ ଚେତାଶୂନ୍ୟ ହୋଇ ଭୂମିରେ ପଡ଼ିଥାନ୍ତି । ଶୋକାଭିଭୂତ ଭୀଷ୍ମ, ଧୃତରାଷ୍ଟ୍ର ଓ କୃପ ଆଦି ଗୁରୁଜନମାନେ ନିର୍ଜୀବ ପରି ବସି ରହିଥାନ୍ତି । ସମଗ୍ର ରାଜ ଅନ୍ତଃପୁରରେ ଶୋକର କଳାଛାଇ ଘୋଟି ଯାଇଥାଏ ।

ଅଳ୍ପ ସମୟ ପରେ ରାଜକୀୟ ସମ୍ମାନର ସହିତ ମହାରାଜା ଓ ମାଦ୍ରୀଙ୍କର ଶେଷକୃତ୍ୟ ସଂପନ୍ନ ହୋଇଗଲା ।

ଯାବତୀୟ ଦୁଃଖ ସହ୍ୟ କରିବା ଓ ସମୟକ୍ରମେ ଦୁଃଖ ଭୁଲିଯିବା ମଣିଷର ପ୍ରକୃତି । ମୁଁ ଛାତିରେ ପଥର ଲଦି କେବଳ ପିଲା ପାଞ୍ଚୋଟିଙ୍କ ପାଇଁ ବଞ୍ଚି ରହିଥିଲି । ବିଶେଷ କରି ବ୍ୟାସଦେବଙ୍କ ଭବିଷ୍ୟତବାଣୀ- ''ଅଳ୍ପଦିନ ପରେ ତୁମେ ଅଖଣ୍ଡ ସୁଖର ଅଧିକାରିଣୀ ହେବ । ଦୁଃଖ ଆସିବ, ମାତ୍ର ତାହା ତୁମ ଅଗ୍ରଗତିର ପଥରୋଧ କରି ପାରିବ ନାହିଁ ।'' ଏହିକଥା ମାନ ମୋ ମନୋବଳକୁ

ବଢ଼ାଇବାରେ ସାହାଯ୍ୟ କରୁଥାଏ । ତେଣୁ ଆଶାକୁ ପାଥେୟ କରି ମୁଁ ଯାବତୀୟ ଦୁଃଖ ସହିନେବାକୁ ନିଜକୁ ପ୍ରସ୍ତୁତ କରିନେଲି ।

ସତ୍ୟବତୀ ଆଉ ପ୍ରାସାଦରେ ରହିବାକୁ ସୁଖକର ମନେକଲେ ନାହିଁ । ବ୍ୟାସଙ୍କ ପରାମର୍ଶ କ୍ରମେ ସେ ବାନପ୍ରସ୍ଥ ଗ୍ରହଣ କରିବା ସ୍ଥିର ହୋଇଯିବାରୁ, ମୋର ଦୁଇଶାଶୁ ମଧ୍ୟ ତାଙ୍କ ସହିତ ଅରଣ୍ୟକୁ ଚାଲିଗଲେ ।

ମୁଁ ହସ୍ତିନା ରାଜପ୍ରାସାଦରେ ରହିଲି । ଅରଣ୍ୟ ବାସକାଳରେ ଯେପରି ନିର୍ମଳ ଆନନ୍ଦ ଓ ସୁଖ ଉପଭୋଗ କରୁଥିଲି, ପ୍ରାସାଦର ବିଳାସ ଓ ପ୍ରାଚୁର୍ଯ୍ୟ ମଧ୍ୟରେ ଥାଇ ମୋର ସେ ସୁଖ ସ୍ୱପ୍ନ ପରି ମନେ ହେଲା । ବୈଧବ୍ୟର ନିର୍ଯ୍ୟାତିତ ଜୀବନ ମୋତେ ତୀବ୍ର ଯନ୍ତ୍ରଣାରେ ଜର୍ଜରିତ କରିବାରେ ଲାଗିଲା । ଯାବତୀୟ ଦୁଃଖ, ଅଭାବ ଓ ଅଶାନ୍ତି ଭୋଗ କରୁଥିଲେ ମଧ୍ୟ କୌଣସି ନାରୀ ତା ସୀମନ୍ତର ସିନ୍ଦୂର ବିନ୍ଦୁକୁ ଅସମ୍ମାନ କରିପାରେ ନାହିଁ । ସ୍ୱାମୀ ଅକର୍ମଣ୍ୟ, ଅଯୋଗ୍ୟ, ମଦ୍ୟପ ଅବା ବେଶ୍ୟାସକ୍ତ ହୋଇଥିଲେ ମଧ୍ୟ ହିନ୍ଦୁ ନାରୀ ଦୃଷ୍ଟିରେ ସେ ଜୀବନ୍ତ ଦେବତା । ନାରୀ ବିପଥ-ଗାମୀ ସ୍ୱାମୀଙ୍କୁ ଅବାଟରୁ ଫେରାଇ ଆଣିବାକୁ ଆପ୍ରାଣ ଚେଷ୍ଟା କରେ, ମାତ୍ର ଅସମ୍ମାନ କରେ ନାହିଁ । ନିର୍ଯ୍ୟାତନା ସହ୍ୟ କରେ ସିନା ନିର୍ଯ୍ୟାତିତ କରେ ନାହିଁ । ଏହାହିଁ ହିନ୍ଦୁ ରମଣୀର ବିଶେଷତ୍ୱ ଓ ସର୍ବଂସହା ନାମର ସାର୍ଥକତା ।

ମୁଁ ସବୁ କଥା ଭୁଲି ଯିବାକୁ ଚେଷ୍ଟାକରେ; ମାତ୍ର ସୋହାଗ ସିନ୍ଦୂର କଥା ମନେ ପଡ଼ିଗଲେ, ସବୁକିଛି ତୁଚ୍ଛ ମନେହୁଏ ଓ ମୋର ଚକ୍ଷୁରୁ ଲୋତକର ବନ୍ୟା ପ୍ରବାହିତ ହୁଏ । କିନ୍ତୁ ପରକ୍ଷଣରେ ଦୁର୍ବଳତାକୁ ପଛକୁ ପକାଇ ମନରେ ସାହସ ସଞ୍ଚୟ କରେ । ପିଲା ପାଞ୍ଚୋଟିଙ୍କୁ ଚାହିଁ ମୁଁ ସବୁ ଦୁଃଖ ଭୁଲି ଯିବାକୁ ଚେଷ୍ଟା କରେ ।

ବର୍ତ୍ତମାନ ହସ୍ତିନାର ରାଜ-ସିଂହାସନ ଦାୟାଦ-ଶୂନ୍ୟ । ମହାରାଜା ପଣ୍ଡୁଙ୍କର ଅକାଳ ବିୟୋଗ ପରେ ଜନ୍ମାନ୍ଧ ଦେଢଶୁର ହସ୍ତିନାର ଏକମାତ୍ର କେନ୍ଦ୍ରବିନ୍ଦୁ । ଶାରୀରିକ ବଳ ଅମାପ ଥିଲେ ମଧ୍ୟ ଧୃତରାଷ୍ଟ୍ର ମାନସିକ ସ୍ତରରେ ଅତ୍ୟନ୍ତ ଦୁର୍ବଳ ବ୍ୟକ୍ତି ଥିଲେ । ଅସୂୟା, ପରଶ୍ରୀକାତରତା, ବିଚାର-ଶୂନ୍ୟତା ସର୍ବୋପରି କୌଣସି ନିଷ୍ପତ୍ତି ଗ୍ରହଣ କରିବାରେ ଅସମର୍ଥତାହିଁ ତାଙ୍କୁ ଅମଣିଷ କରିପକାଇଥିବା କଥା କହିଲେ ଆଦୌ ଭୁଲ ହେବ ନାହିଁ ।

ଆଗରୁ କହିଛି- ଜନ୍ମାନ୍ଧ ବ୍ୟକ୍ତି ଜ୍ୟେଷ୍ଠ ହେଲେ ମଧ୍ଧ ରାଜ୍ୟ ପରିଚାଳନା ପରି ଗୁରୁଦାୟିତ୍ୱ ବହନ କରିବାକୁ ସଂପୂର୍ଣ୍ଣ ଅଯୋଗ୍ୟ ବୋଲି ନିଷ୍ପତ୍ତି ହେବାରୁ ମୋ ସ୍ୱାମୀ କନିଷ୍ଠ ହୋଇ ମଧ୍ଧ ସିଂହାସନ ଆରୋହଣ କରିଥିଲେ । ପଣ୍ଡୁଙ୍କର ରାଜ-ତିଳକ ଅନୁଷ୍ଠାନରେ ସମଗ୍ର-ରାଜ୍ୟ ହର୍ଷୋତ୍‌ଫୁଲ୍ଲ ହୋଇ ଉଠିଥିବା ବେଳେ ଦେଢଶୁର ଅତ୍ୟନ୍ତ କ୍ଷୁବ୍ଧ ଓ ବିମର୍ଷ ହୋଇ ପଡ଼ିଥିଲେ । କଥାଟା ଦୀର୍ଘ ଦିନ ଲୁଚି ରହିଲା ନାହିଁ । ମହାରାଜା ପଣ୍ଡୁ ଏକଥା ଜାଣି ବଡ଼ଭାଇଙ୍କ ଶାନ୍ତିବିଧାନ ପାଇଁ ଆପ୍ରାଣ ଚେଷ୍ଟା କରି ମଧ୍ଧ ଅକୃତକାର୍ଯ୍ୟ ହେଲେ । ଶେଷକୁ ପ୍ରାସାଦ ତ୍ୟାଗକରି ଅରଣ୍ୟ-ବାସକୁ ଶ୍ରେୟସ୍କର ମନେ କଲେ । ସେଇ ଅରଣ୍ୟବାସହିଁ ମୋ ଜୀବନର ଅଶ୍ଳୀଳ-ସ୍ମୃତି ହୋଇ ରହିଗଲା ।

ଦୈବ ଦୁର୍ଯ୍ୟୋଗରୁ ମୋ ସ୍ୱାମୀଙ୍କ ମୃତ୍ୟୁ ହସ୍ତିନାକୁ ଉତ୍ତରାଧିକାରୀ ଶୂନ୍ୟ କରି ଦେଲା । ଯେଉଁ ଶାସ୍ତ୍ରଜ୍ଞ, ନୀତିନିଷ୍ଠମାନେ ଜନ୍ମାନ୍ଧ ବ୍ୟକ୍ତି ସିଂହାସନ ଆରୋହଣ ପାଇଁ ଅଯୋଗ୍ୟ ବୋଲି ଘୋଷଣା କରିଥିଲେ, ଏବେ ସେହି ପଣ୍ଡିତ ପ୍ରବରମାନେ ଦେଢଶୁର ଜନ୍ମାନ୍ଧ ହେଲେ ମଧ୍ଧ ସିଂହାସନ ଆରୋହଣ କରିବାରେ କୌଣସି ବାଧା ନାହିଁ ବୋଲି ନିଷ୍ପତ୍ତି ଶୁଣାଇ ଦେଲେ । ଏକଥା ନିଶ୍ଚିତ ଯେ ଦେଢଶୁର ଆକସ୍ମିକ ଭାବରେ ଦୃଷ୍ଟିଶକ୍ତି ଫେରି ପାଇନଥିଲେ । ପରିବାରର ଜ୍ୟେଷ୍ଠପୁତ୍ର ଯୁଧିଷ୍ଠିରକୁ ଅଭିଷିକ୍ତ କରିବା କଥା କେହି ଚିନ୍ତା ମଧ୍ୟ କଲେ ନାହିଁ । ସେପରି ହୋଇଥିଲେ ହୁଏତ ଧୃତରାଷ୍ଟ୍ରଙ୍କ ଶ୍ୱାସ-କ୍ରିୟା ହଠାତ୍ ବନ୍ଦ ହୋଇଯାଇଥାନ୍ତା ।

ପୁନଶ୍ଚ ଅନ୍ଧରାଜାଙ୍କ ଶାସନ ପରିଚାଳନା ପାଇଁ ମହାମତି ବିଦୂରଙ୍କୁ ସମସ୍ତ ଦାୟିତ୍ୱ ଦିଆଯାଇ ମନ୍ତ୍ରୀପଦରେ ଅଭିଷିକ୍ତ କରାଗଲା । ଯୁଧିଷ୍ଠିର ସିଂହାସନ ଆରୋହଣ କରିଥିଲେ ବିଦୂର ମଧ୍ୟ ରାଜ୍ୟ ଶାସନ ଦାୟିତ୍ୱ ଗ୍ରହଣ କରିବାକୁ ଆଦୌ ଆପତ୍ତି କରି ନଥାନ୍ତେ । ମାତ୍ର ଉଦ୍ଦେଶ୍ୟମୂଳକ ଭାବରେ ସେ ପ୍ରକାର ପ୍ରସ୍ତାବ ଆଗତ ହେବାର ସୁଯୋଗ ମଧ୍ୟ ଦିଆଗଲା ନାହିଁ । ଦୁର୍ଭାଗ୍ୟ ଯେ ଗାନ୍ଧାରୀ ପୁତ୍ରବତୀ ହେବାର ଦୁଇବର୍ଷ ପୂର୍ବରୁ ଯୁଧିଷ୍ଠିର ଜନ୍ମ ହୋଇଥିଲା । ହୁଏତ ଦୁର୍ଯ୍ୟୋଧନ ପରିବାରର ଜ୍ୟେଷ୍ଠପୁତ୍ରର ସମ୍ମାନଲାଭ କରିଥିଲେ, ଅବସ୍ଥା ଅନ୍ୟ ପ୍ରକାର ହୋଇପାରିଥାନ୍ତା । ଦେଢ଼ଶୁର ନିଜପୁତ୍ର ଦୁର୍ଯ୍ୟୋଧନକୁ ସିଂହାସନ ଦେବାପାଇଁ ନିଜେ ହିଁ ପ୍ରସ୍ତାବ ଆଗତ କରିଥାନ୍ତେ ।

ଗାନ୍ଧାରୀଙ୍କ କଥା ଉଠିବାରୁ ମୋତେ କିଛି ସମୟ ପାଇଁ ପଛକୁ ଫେରି ଯିବାକୁ ପଡୁଛି । ସେଥିପାଇଁ କ୍ଷମାଚାହେଁ । ମୋ ସ୍ୱାମୀ କାହିଁକି ଶୀଘ୍ର ସନ୍ତାନ କାମନାରେ ବ୍ୟାକୁଳ ହେଉଥିଲେ, ତାହାର ଏକମାତ୍ର କାରଣ ହେଉଛି ହସ୍ତିନାର ରାଜସିଂହାସନ । ଯଦି ଗାନ୍ଧାରୀ ପ୍ରଥମେ ପୁତ୍ର-ବତୀ ହୁଅନ୍ତି, ତେବେ ମହାରାଜାଙ୍କ ଆଶା ଧୂଳିସାତ୍ ହୋଇଯିବ । ଏହି ବିଶେଷ କାରଣରୁ ଉଭୟ ପରିବାର ମଧ୍ୟରେ ଜ୍ୟେଷ୍ଠ-ସନ୍ତାନ ପାଇଁ ବ୍ୟାକୁଳତା ପ୍ରକାଶ ପାଉଥିଲା ।

ଗାନ୍ଧାରୀ ଗାନ୍ଧାର ନରେଶ ସୁବଳଙ୍କର କନ୍ୟା । ସେ ରୂପଲାବଣ୍ୟରେ ଅସାମାନ୍ୟା ଓ ଅସାଧାରଣ ବୁଦ୍ଧିମତୀ ଥିଲେ । ଯେ କୌଣସି ରାଜପୁତ୍ର ତାଙ୍କ ପାଣିଗ୍ରହଣ କରିବାକୁ ଉତ୍କଣ୍ଠିତ ହେବା ସ୍ୱାଭାବିକ । ମାତ୍ର କେଉଁ ବିଶେଷ କାରଣରୁ ଅନିନ୍ଦ୍ୟ-ସୁନ୍ଦରୀ ଗାନ୍ଧାରୀ ଜଣେ ଜନ୍ମାନ୍ଧ ବ୍ୟକ୍ତିଙ୍କୁ ପତିରୂପେ ସ୍ୱୀକାର କଲେ, ଏକଥା ପ୍ରାୟ ସମସ୍ତଙ୍କୁ ବିସ୍ମିତ କରିବା କଥା । ଏହାର ଗୋପନ ରହସ୍ୟ ହୁଏତ ଅନେକଙ୍କୁ ଜଣା ଥାଇ ନ ପାରେ । ସେହି କାହାଣୀଟି ବର୍ଣ୍ଣନା କରିବା ପରେ ମୁଁ ପୁଣି ମୋ ନିଜ କଥା ଆରମ୍ଭ କରିବି ।

କେବଳ ଧନ ସଂପତ୍ତି, ରାଜ ପ୍ରାସାଦର ପ୍ରାଚୁର୍ଯ୍ୟ ଓ ବିଳାସ ବିଭବକୁ ଆଖି ଆଗରେ ରଖି କୌଣସି ରୂପସୀ ରାଜ-କୁମାରୀ ଜଣେ ଜନ୍ମାନ୍ଧକୁ ସ୍ୱେଚ୍ଛାରେ ପତିରୂପେ ବରଣ କରିବାର ଦୃଷ୍ଟାନ୍ତ ନାହିଁ । ଏହା ଏକ ପ୍ରକାର ଅସମ୍ଭବ ମଧ୍ୟ । ବିବାହ ପରେ କୌଣସି କାରଣରୁ ଯଦି ପତି ଦୁର୍ବିପାକର ଶିକାର ହୋଇ ବିକଳାଙ୍ଗ ହୋଇ ପଡ଼ନ୍ତି, ତେବେ ନାରୀ ତା'ର ଭାଗ୍ୟକୁ ଆଦରି ନେବାକୁ ବାଧ୍ୟ ହୁଏ । ମାତ୍ର ଗାନ୍ଧାରୀଙ୍କ କ୍ଷେତ୍ରରେ ସେପରି କୌଣସି ଅଘଟଣ ଘଟି ନଥିଲା । ତେବେ ସେ କ'ଣ ସ୍ୱଇଚ୍ଛାରେ ଜଣେ ଜନ୍ମାନ୍ଧ ରାଜପୁତ୍ରଙ୍କୁ ହସି ହସି ବରଣମାଳା ପିନ୍ଧାଇ ଦେଇଥିଲେ ? ନାଁ, ଆଦୌ ନୁହେଁ । ଗାନ୍ଧାରୀ ଅନନ୍ୟୋପାୟ ହୋଇ ସେପରି କରିବାକୁ ବାଧ୍ୟ ହୋଇଥିଲେ । ଏହାହିଁ ବାସ୍ତବ ସତ୍ୟ । 'କନ୍ୟା ବରୟେତେ ରୂପଂ' କଥାର ବ୍ୟତିକ୍ରମ ଗାନ୍ଧାରୀଙ୍କ କ୍ଷେତ୍ରରେ ଘଟିଲା କାହିଁକି ? ଏହାର କାରଣ ମଧ୍ୟ ସୁସ୍ପଷ୍ଟ ।

ଧୃତରାଷ୍ଟ୍ରଙ୍କ ପାଇଁ କନ୍ୟା ଖୋଜିବାରେ ଭୀଷ୍ମଦେବ ବହୁ ରାଜ-ପ୍ରାସାଦରୁ ନିରାଶ ହୋଇ ଫେରିଥିଲେ । କୌଣସି ପିତା ଜଣେ ଜନ୍ମାନ୍ଧକୁ ସ୍ୱୀୟ କନ୍ୟା ସମ୍ପ୍ରଦାନ କରିବାକୁ ସମ୍ମତ ହେଲେ ନାହିଁ । ଭୀଷ୍ମଙ୍କ ଚିନ୍ତା ବଢିବାରେ ଲାଗିଲା । ଯଥାଶୀଘ୍ର ଧୃତରାଷ୍ଟ୍ରଙ୍କୁ ବିବାହ ଦେବା ପାଇଁ ସେ ଆପ୍ରାଣ ଚେଷ୍ଟା କରିବାରେ ଲାଗିଲେ ।

ସୁନ୍ଦରୀ ଓ ଗୁଣବତୀ ରାଜକେମା ଗାନ୍ଧାରୀଙ୍କୁ ବିବାହ କରିବା ପାଇଁ ଜଣ ଜଣ ହୋଇ ବାଇଶି ଜଣ ରାଜପୁତ୍ର ବିବାହ ବେଦୀରେ ହିଁ ପ୍ରାଣତ୍ୟାଗ କରିଥିଲେ । ତେଣୁ ଏପରି ଅମଙ୍ଗଳୀ କନ୍ୟାକୁ ବିଭା ହେବା ପାଇଁ ଆଉ କେହି ଆଗ୍ରହୀ ନ ହେବା ସ୍ୱାଭାବିକ ହୋଇଗଲା । ଗାନ୍ଧାରୀଙ୍କ ଅପରାଧ ଏହି ଯେ ସେ ଅମାବାସ୍ୟା ତିଥିରେ ଜନ୍ମଗ୍ରହଣ କରି ''ଉଆଁସୀ କନ୍ୟା''ର କଳଙ୍କ ବହନ କରିଥିଲେ । ଉଆଁସୀ କନ୍ୟାକୁ ବିବାହ କରିବା ଅର୍ଥ ମୃତ୍ୟୁକୁ ଆମନ୍ତ୍ରଣ କରିବା ବୋଲି ଲୋକମୁଖରେ ପ୍ରଚାରିତ ହୋଇଥାଏ । ବାଇଶି ଜଣ ରାଜପୁତ୍ରଙ୍କ ମୃତ୍ୟୁ ଏ ବିଶ୍ୱାସକୁ ଦୃଢ଼ୀଭୂତ କରି ଦେଇଥାଏ । କନ୍ୟାଟି ଚିରକୁମାରୀ ରହିଯିବା ଆଶଙ୍କାରେ ଗାନ୍ଧାର ନରେଶ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଥିଲେ । ଅପର ପକ୍ଷରେ ଭୀଷ୍ମ ମଧ୍ୟ ଧୃତରାଷ୍ଟ୍ରଙ୍କ ପାଇଁ କନ୍ୟା ଖୋଜି ଖୋଜି ଅନୁରୂପ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ସର୍ବଶେଷରେ ସେ ରାଜା ସୁବଳଙ୍କ ନିକଟକୁ ଯାଇ ବିବାହ ପ୍ରସ୍ତାବ ଆଗତ କଲେ ।

ଧୃତରାଷ୍ଟ୍ର ଜନ୍ମାନ୍ଧ ଏକଥା ଗାନ୍ଧାର ରାଜାଙ୍କୁ ଅବିଦିତ ନଥିଲା । ଜାଣି ଶୁଣି ନିଜର ପରମ ରୂପବତୀ, ସର୍ବଗୁଣ ସଂପନ୍ନା ବିଦୂଷୀ କନ୍ୟାକୁ ଜଣେ ଅନ୍ଧ ହସ୍ତରେ ଅର୍ପଣ କରି ତା'ର ଭବିଷ୍ୟତକୁ ଅନ୍ଧକାରମୟ କରି ଦେବା ପାଇଁ ତାଙ୍କ ପିତୃ ହୃଦୟ ବିଦ୍ରୋହ କରି ଉଠିଲା । ସେ ଭୀଷ୍ମଙ୍କୁ କୌଣସି ଉତ୍ତର ଦେଇ ପାରିଲେ ନାହିଁ ।

ସୁବଳ ପୁତ୍ର ଶକୁନୀ କୁଟ ବୁଦ୍ଧିରେ ଅତ୍ୟନ୍ତ ନିପୁଣ ଥିଲେ । ପିତାଙ୍କର ଭାବଭଙ୍ଗୀକୁ ଲକ୍ଷ୍ୟକରି ସେ କହିଲେ,- ''ପିତା, ଯେଉଁ କନ୍ୟାର ନାମ ଶ୍ରବଣ କଲାମାତ୍ରେ ସମଗ୍ର ଆର୍ଯ୍ୟାବର୍ତ୍ତ ନାସିକା କୁଞ୍ଚନ କରୁଛନ୍ତି, ସେହି କନ୍ୟାକୁ ବଧୂରୂପେ ସ୍ୱୀକାର କରିବାକୁ ମହାବୀର ଭୀଷ୍ମ ଆଜି ଆମର ଦ୍ୱାରସ୍ଥ । ଏହାଠାରୁ ବଳି ସୌଭାଗ୍ୟ ଆଉ କ'ଣ ଥାଇପାରେ ? ତାଙ୍କ ଅନୁରୋଧକୁ ଉପେକ୍ଷା କଲେ ପରିଣତି ଭୟାବହ ହୋଇପାରେ । ବୁଦ୍ଧିମାନ ବ୍ୟକ୍ତି ଏପରି ଅପୂର୍ବ ସୁଯୋଗକୁ ହାତଛଡା କରିବା ଆଦୌ ଉଚିତ ହେବ ନାହିଁ । ଏ ପ୍ରସ୍ତାବରେ ସମ୍ମତ ହେଲେ ହସ୍ତିନା ସହିତ ଆମର ସଂପର୍କ ଦୃଢ଼ହେବ ଏବଂ ଗାନ୍ଧାରୀ ରାଜ-ରାଣୀର ଗୌରବ ବିମଣ୍ଡିତା ହୋଇ ଅତ୍ୟନ୍ତ ସୁଖରେ ଜୀବନ ଅତିବାହିତ କରିବ ।''

ସୁବଳ ଦୀର୍ଘ ସମୟ ଚିନ୍ତା କରିବା ପରେ ଶକୁନୀଙ୍କ ପରାମର୍ଶକୁ ଉଚିତ ମନେ କଲେ ଓ ଭୀଷ୍ମଙ୍କ ପ୍ରସ୍ତାବରେ ସମ୍ମତ ହେଲେ ।

ଭୀଷ୍ମ ଗାନ୍ଧାରୀଙ୍କର ଗ୍ରହ ଶାନ୍ତି ପାଇଁ ମହର୍ଷି ବ୍ୟାସଦେବଙ୍କ ସହ ପରାମର୍ଶ କଲେ । ବ୍ୟାସ ପ୍ରଥମେ ଏକ ସାହାଡାବୃକ୍ଷ ସହିତ ଗାନ୍ଧାରୀଙ୍କର ବିବାହ-ସମ୍ପନ୍ନ କରି ନାନା ମନ୍ତ୍ରୋପଚାର ଦ୍ୱାରା ରିଷ୍ଟ ଖଣ୍ଡନର ବ୍ୟବସ୍ଥା କରିଥିଲେ । ଏହାପରେ ଧୃତରାଷ୍ଟ୍ରଙ୍କ ସହ ଗାନ୍ଧାରୀଙ୍କର ବୈଦିକ-ବିଧାନ ଅନୁସାରେ ବିବାହ କାର୍ଯ୍ୟ ସଂପନ୍ନ ହୋଇଥିଲା । ବିବାହ ବେଦୀରେ ମହର୍ଷି ବ୍ୟାସଦେବ ଶତପୁତ୍ରର ଜନନୀ ହେବା ପାଇଁ ଗାନ୍ଧାରୀଙ୍କୁ ଆଶୀର୍ବାଦ ପ୍ରଦାନ କରିଥିଲେ ।

ଗାନ୍ଧାରୀ ବଧୂ ଭାବରେ ହସ୍ତିନା ରାଣୀହଂସ ପୁରରେ ପାଦ ଦେଲେ । ଜନ୍ମାନ୍ଧ ସ୍ୱାମୀଙ୍କୁ ଦେଖି ତାଙ୍କ ମନରେ ଭାବାନ୍ତର ଜାତ ହେବା ସ୍ୱାଭାବିକ । ସବୁ ପାଇ ମଧ କିଛି ନ ପାଇବାର ଦୁଃଖରେ ସେ ମ୍ରିୟମାଣ ହୋଇ ପଡ଼ିଲେ । ଇହକାଳ ପରକାଳର ଦେବତାଙ୍କୁ ଅସମ୍ମାନ ବା ଘୃଣା ଚକ୍ଷୁରେ ଦେଖିବା ଘୋର ପାପ ବୋଲି ଜାଣି ବିଦୂଷୀ ଗାନ୍ଧାରୀ ଆଖିଥାଇ ମଧ୍ୟ ସବୁଦିନ ପାଇଁ ନିଜକୁ ଅନ୍ଧକରି ରଖିଲେ । ସ୍ୱାମୀଙ୍କ ଅନ୍ଧତ୍ୱ ତାଙ୍କୁ ଆଉ ଦେଖାଗଲା ନାହିଁ । ଏହି ଅସାମାନ୍ୟ ତ୍ୟାଗଯୋଗୁ ଗାନ୍ଧାରୀ ସର୍ବପୂଜ୍ୟା ହୋଇଥିଲେ । ଜାଣିଶୁଣି ସାରା-ଜୀବନ ଅନ୍ଧ ହୋଇ ରହିବା ଏକ ଅସାଧ ସାଧନା । ଗାନ୍ଧାରୀଙ୍କ ଏ କାର୍ଯ୍ୟକୁ ଅନେକେ ଅସ୍ୱାଭାବିକତା କହି ସମାଲୋଚନା କରୁଥିଲେ ମଧ ଏହା ଏକ କଠୋର ବ୍ରତ ଓ ଦୃଢ ମନୋବଳର ବାସ୍ତବ ଚିତ୍ର ଅଟେ ।

କିଛି ଦିନ ପରେ ଗାନ୍ଧାରୀ ଗର୍ଭବତୀ ହେବା ସଂବାଦ ମୁଁ ଅରଣ୍ୟ ମଧ୍ୟରେ ଥାଇ ପାଇଲି । ସତ କହୁଛି, ଏପରି ଏକ ସୁସଂବାଦ ପାଇ ମୁଁ ସୁଖୀ ହୋଇ ପାରିନଥିଲି । ମାତୃତ୍ୱ ଲାଭ ପାଇଁ ମୋର ବଳବତୀ ଇଚ୍ଛା ଜାଗ୍ରତ ହେଲା । ମାତ୍ର ଅଦୃଷ୍ଟର କ୍ରୁର ଉପହାସ ସ୍ମରଣ କରି ମୁଁ ବ୍ୟଥିତ ହୋଇ ଉଠିଲି । ଅଳ୍ପ ଦିନ ପରେ ସ୍ୱାମୀ ମୋତେ ନିଯୋଗ ସିକ୍ତ ହୋଇ ସନ୍ତାନ ଉତ୍ପାଦନ ପାଇଁ ପରାମର୍ଶ ଦେଲେ । ପ୍ରଥମେ ମୁଁ ଏହାର ବିରୋଧ କରିଥିଲେ ମଧ୍ୟ ଗାନ୍ଧାରୀ ଗର୍ଭବତୀ ହେବା ସମ୍ବାଦରେ ମୁଁ ମୋର ନାରୀତ୍ୱ ଓ ସ୍ୱାଭିମାନକୁ ଭୁଲିଯାଇ ନିଯୋଗ-ପ୍ରଥା ଗ୍ରହଣ କରିଥିଲି ।

ଆଶ୍ଚର୍ଯ୍ୟର କଥା, ଦୁଇ ବର୍ଷରୁ ଅଧିକ କାଳ ଅତୀତ ହୋଇ ଯାଇଥିଲେ ମଧ୍ୟ ଗାନ୍ଧାରୀଙ୍କ ଗର୍ଭରୁ କୌଣସି ସନ୍ତାନ ଜାତ ହୋଇ ନଥିଲେ । ଅଥଚ ତାଙ୍କ ପଛରେ ଗର୍ଭବତୀ ହୋଇ ମୁଁ ଯୁଧିଷ୍ଠିରକୁ ଜନ୍ମ ଦେଇ ସାରିଥାଏ । ମୋର ପୁତ୍ରଲାଭ ସମ୍ବାଦରେ ଗାନ୍ଧାରୀ ଅତ୍ୟନ୍ତ ମର୍ମାହତ ଓ ଈର୍ଷାନ୍ୱିତ ହୋଇ କହି ଉଠିଲେ,- ''ମହର୍ଷି ବ୍ୟାସ ବାକ୍-ସିଦ୍ଧ ମହା ପୁରୁଷ । ଶତପୁତ୍ର ପ୍ରସବିନୀ ହେବା ପାଇଁ ସେ ମୋତେ ଆଶୀର୍ବାଦ ଦେଇଥିଲେ । ଏବେ ସେ ଆଶୀର୍ବାଦ ମୋ ପାଇଁ ଅଭିଶାପରେ ପରିଣତ ହୋଇଗଲା । ସମସ୍ତେ ଦଶମାସ ଗର୍ଭଧାରଣ କରି ସନ୍ତାନ-ପ୍ରସବ କରିଥାନ୍ତି । ମୁଁ ଦୁଇବର୍ଷ ହେଲା ଗର୍ଭ-ଧାରଣ କରି ଏପର୍ଯ୍ୟନ୍ତ ସାମାନ୍ୟତମ ଗର୍ଭ ବେଦନା ମଧ ଅନୁଭବ କରି ପାରିଲି ନାହିଁ । ଶ୍ୱଶୁର ବ୍ୟାସଦେବଙ୍କର ଏ ଛଳିତ-ଆଶୀର୍ବାଦ ମୋର ନାରୀ-ଅନ୍ତରକୁ ବେଦନା-ଜର୍ଜରିତ କରି ପକାଉଛି । ବିନା ଦୋଷରେ ଦଣ୍ଡ ଅତ୍ୟନ୍ତ ଅସହ୍ୟ । ଏହିପରି କହୁଥିବାବେଳେ ତାଙ୍କ କ୍ରୋଧ ବହୁ ଗୁଣିତ ହୋଇ ଉଠିଲା ଓ ସମଗ୍ର ଶରୀର କମ୍ପିବାରେ ଲାଗିଲା । ଭୀଷଣ କ୍ରୋଧ ଏବଂ ଦାରୁଣ ମାନସିକ ଅବସାଦ ଯୋଗୁଁ ହଠାତ୍ ତାଙ୍କର ଗର୍ଭପାତ ହୋଇଗଲା । ସୁଯୋଗକୁ ଠିକ୍ ଏହି ସମୟରେ ମହର୍ଷି ବ୍ୟାସ ଆସି ସେଠାରେ ଉପସ୍ଥିତ ହୋଇଗଲେ ଓ ସମୁଦାୟ ଘଟଣା ଅବଗତ ହେବାପରେ ଗାନ୍ଧାରୀଙ୍କୁ ଭର୍ତ୍ସନା କରି କହିଲେ,-''ଧୈର୍ଯ୍ୟ ହରାଇ ମନୁଷ୍ୟ ବିପନ୍ନ ହୋଇଥାଏ । ଆଜି ତୁମର ଭବିଷ୍ୟତ ଅଳ୍ପକେ ଅନ୍ଧକାରମୟ ହୋଇ ଯାଇଥାନ୍ତା । ମନେରଖ- ହିଂସା ଓ ପରଶ୍ରୀ କାତରତା ସର୍ବଦା ଦୁଃଖର କାରଣ ହୋଇଥାଏ । ଏହି ହିଂସା ହୁଏତ ତୁମ ଜୀବନର ସୁଖ-ଶାନ୍ତି ନଷ୍ଟ କରିଦେବାର କାରଣ ହୋଇ ଉଠିବ ।''

କାଳ ବିଳମ୍ବ ନକରି ମହର୍ଷି ସେଇ ସ୍ରାବିତ ଭ୍ରୂଣକୁ ନାନା ବିଧି-ବିଧାନ ଓ ମନ୍ତ୍ରୋପଚାର ଦ୍ୱାରା ଶହେ ଏକ ଘୃତକୁମ୍ଭ ମଧ୍ୟରେ ସଂସ୍ଥାପିତ କରି କହିଲେ,- ଆଜିଠାରୁ ପୂର୍ଣ୍ଣ ଏକ ବର୍ଷ ପର୍ଯ୍ୟନ୍ତ ଏହି କୁମ୍ଭ ଗୁଡ଼ିକ ଅତ୍ୟନ୍ତ ଯତ୍ନର ସହିତ ସଂରକ୍ଷିତ ହେବ ।''

ବର୍ଷକ ପରେ ମୋ ଗର୍ଭରୁ ମୋର ଦ୍ୱିତୀୟ ପୁତ୍ର ଭୀମସେନ ଜନ୍ମଲାଭ କଲା । ଖବର ପାଇଲି-ଠିକ୍ ସେହି ଦିନ ମହର୍ଷି ବ୍ୟାସଦେବ ହସ୍ତିନା ପ୍ରାସାଦରେ ଉପସ୍ଥିତ ହୋଇ ସଯତ୍ନ ସମ୍ପାଦିତ ଘୃତକୁମ୍ଭ ଗୁଡ଼ିକରୁ ଏକଶତ ପୁତ୍ର ସନ୍ତାନ

ସହିତ ଏକମାତ୍ର କନ୍ୟାକୁ ବାହାର କଲେ । ଏକା ଥରକେ ଶତପୁତ୍ରର ଜନନୀ ହେବାର ଗୌରବ ଲାଭ କରି ଗାନ୍ଧାରୀ ଅତ୍ୟନ୍ତ ଉଲ୍ଲସିତ ହୋଇ ଉଠିଲେ । ଚାରିଆଡେ ଆନନ୍ଦ ଉଲ୍ଲାସର ଲହରୀ ଖେଳି ବୁଲିଲା । ଗାନ୍ଧାରୀ ମହର୍ଷିଙ୍କ ପ୍ରତି କରିଥିବା କଟୂକ୍ତି ପାଇଁ ଗଭୀର ଭାବରେ ଦୁଃଖ ପ୍ରକାଶ କରିବା ସହିତ କ୍ଷମା ପ୍ରାର୍ଥନା କରିଥିଲେ ।

ଧୃତରାଷ୍ଟ୍ର ଓ ପଣ୍ଡୁ ଉଭୟେ ହସ୍ତିନାର ଭାବୀ ଉତ୍ତରାଧିକାରୀ ପାଇଁ ଚିନ୍ତିତ ଥିଲେ । ଯୁଧିଷ୍ଠିର ଭୂମିଷ୍ଠ ହେବା ସମ୍ବାଦରେ ସ୍ୱଭାବ ହିଂସ୍ର ଧୃତରାଷ୍ଟ୍ର ଖୁବ୍ ବିବ୍ରତ ହୋଇ ଉଠିଲେ । ଏହାର ଦୁଇବର୍ଷ ପରେ ଧୃତରାଷ୍ଟ୍ରଙ୍କର ଗୋଟିଏ ଦୁଇଟି ନୁହେଁ ଏକାଦିନକେ ଶହେ ପୁତ୍ର ଜନ୍ମ ଲାଭ କଲେ । ମାତ୍ର ଜ୍ୟେଷ୍ଠ ପୁତ୍ରର ମାନ୍ୟତା ଯୁଧିଷ୍ଠିର ହିଁ ପାଇଲା । କଳେ ବଳେ କୌଶଳେ ହସ୍ତିନା ସିଂହାସନର ଉତ୍ତରାଧିକାରୀତ୍ୱ ନିଜ ପୁତ୍ର ଦୁର୍ଯ୍ୟୋଧନ ପାଇଁ ସଂରକ୍ଷିତ ରଖିବା ଉଦ୍ଦେଶ୍ୟରେ ସେ ସମସ୍ତ ନୀତି, ନିୟମ ତଥା ପରମ୍ପରାକୁ ଭୁଲି ନିଜ ମନ୍ଦ ଅଭିଳାଷ ଚରିତାର୍ଥ କରିବାର ବାଟ ଚିନ୍ତା କରିବାରେ ଲାଗିପଡ଼ିଲେ ।

ବିରାଡ଼ି କପାଳକୁ ଶିକା ଛିଣ୍ଡି ପଡ଼ିଲା । ମୋ ଭାଗ୍ୟାକାଶର ଦୀପ୍ତିମନ୍ତ ସୂର୍ଯ୍ୟ ସବୁଦିନ ପାଇଁ ଅସ୍ତ ହୋଇ ଗଲା ସିନା, ଦେଢଶୁରଙ୍କ ଭାଗ୍ୟଗଗନରେ ଉଦୀୟମାନ ସୂର୍ଯ୍ୟଙ୍କ କନକ କିରଣ ବିଚ୍ଛୁରୀତ ହୋଇ ପଡ଼ିଲା । ବିଧାତା ମୋ ମଥାରୁ ସିନ୍ଦୂର ପୋଛିଦେଇ ଦେଢଶୁରଙ୍କ ମସ୍ତକରେ ମଣିମୟ ରାଜମୁକୁଟ ପିନ୍ଧାଇ ଦେଲା । ଭାଗ୍ୟ ଅନୁକୂଳ ଥିଲେ କ'ଣ ନହୋଇ ପାରେ ।

ସ୍ୱାମୀଙ୍କ ମୃତ୍ୟୁପରେ ମୁଁ ହସ୍ତିନା ରାଜ-ପ୍ରାସାଦକୁ ଫେରି ଆସିଲି ସତ; ମାତ୍ର ପାଟ-ମହିଷୀର ଗୌରବ ବିମଣ୍ଡିତା ହୋଇ ନୁହେଁ । ଆସିଥିଲି ପାଞ୍ଚୋଟି ପିତୃହୀନ ଅନାଥ ବାଳକଙ୍କର ଉତ୍ତର-ଦାୟିତ୍ୱ ଗ୍ରହଣ କରିଥିବା ଏକ ମାଆ ଭାବରେ ।

ଅନ୍ତଃପୁରରେ ଗାନ୍ଧାରୀ ମୋତେ ସ୍ନେହ, ଶ୍ରଦ୍ଧା ଓ ଆଦର ଦେଖାଇବାରେ ଆଦୌ ତ୍ରୁଟି କରୁ ନଥିଲେ । ଈର୍ଷା ବା ହିଂସା କରିବାର କାରଣ ମଧ୍ୟ କିଛି ନଥିଲା । ସେ ସୀମନ୍ତିନୀ ମୁଁ ବିଧବା, ମୋର ପାଞ୍ଚ ପୁତ୍ର, ସେ ଶତପୁତ୍ରର ଜନନୀ । ସେ ରାଜ ମହିଷୀ, ମୁଁ ଜଣେ ସାଧାରଣ ନାରୀ । ଆମ ଦୁହିଁଙ୍କ ଭିତରେ ଆକାଶ ପାତାଳର ବ୍ୟବଧାନ । ଏ କ୍ଷେତ୍ରରେ ଆମ ମଧ୍ୟରେ ତୁଳନା ଏକ ହାସ୍ୟାସ୍ପଦ ଓ ଅବାସ୍ତବ କଥା ।

ରାଜାହେବା ପରେ ଭାଗ୍ୟଦେବୀ ଦେବଶୂରଙ୍କ ପ୍ରତି ଅତ୍ୟନ୍ତ ପ୍ରସନ୍ନ ହୋଇ ଉଠିଲେ । ତାଙ୍କ ମନର ସମସ୍ତ ଅଶାନ୍ତି ପ୍ରଶାନ୍ତିରେ ରୂପାନ୍ତରିତ ହୋଇଗଲା ସତ, ମାତ୍ର ମୋ ଦୁଃଖ ଦୁର୍ଦ୍ଦଶାର ପରିସୀମା ଧୀରେ ଧୀରେ ବୃଦ୍ଧି ପାଇବାରେ ଲାଗିଲା । ଛାତିକୁ ପଥର କରି ସବୁକିଛି ସହିନେବା ପାଇଁ ମୁଁ ନିଜକୁ ପ୍ରସ୍ତୁତ କରିନେଲି ।

ସମୟକ୍ରମେ ପିଲାମାନଙ୍କର ଶିକ୍ଷାବ୍ୟବସ୍ଥା ଆରମ୍ଭ କରାଗଲା । ସର୍ବପ୍ରଥମେ କୃପାଚାର୍ଯ୍ୟ ଓ ପରେ ଦ୍ରୋଣାଚାର୍ଯ୍ୟ ପିଲାମାନଙ୍କର ଅସ୍ତ୍ରଗୁରୁ ରୂପେ ନିଯୁକ୍ତ ହୋଇଥିଲେ । ଉଭୟ କୌରବ ଓ ପାଣ୍ଡବ ଶହେ ପାଞ୍ଚଭାଇ ଏକତ୍ର ବିଦ୍ୟାଶିକ୍ଷା, ସମରାଭ୍ୟାସ, କ୍ରୀଡା କୌତୁକ ଓ ଆମୋଦ ପ୍ରମୋଦରେ ଯୋଗ ଦେଉଥିଲେ ।

ବିଦ୍ୟାଧ୍ୟୟନ, ଅସ୍ତ୍ରଶିକ୍ଷା ନିୟମିତ ଚାଲିଥାଏ । ମୋ ପିଲାମାନଙ୍କ ମଧ୍ୟରେ ଅର୍ଜୁନ ଧନୁର୍ବିଦ୍ୟାରେ ଅସାଧାରଣ କୃତିତ୍ୱ ଲାଭ କରିଥିବା ଶୁଣି ମୁଁ ଆତ୍ମହରା ହୋଇ ଉଠିଲି । ପରେ ପରେ ମୋର ଦ୍ୱିତୀୟ ପୁତ୍ର ଭୀମସେନ ଗଦାଯୁଦ୍ଧ ଓ ମଲ୍ଲବିଦ୍ୟାରେ ଅତୁଳନୀୟ ବ୍ୟୁତ୍ପତ୍ତି ଲାଭ କରିଥିବା ସଂବାଦରେ ମୁଁ ବିଗତ ଜୀବନର ଯାବତୀୟ ଦୁଃଖ ଓ ଭାଗ୍ୟ ବିପର୍ଯ୍ୟୟକୁ କ୍ଷଣକ ମଧ୍ୟରେ ବିସ୍ମୃତ ହୋଇଗଲି । ଅନନ୍ଦ ଉଲ୍ଲାସରେ ମୋ ମାତୃ ହୃଦୟ ଉଦ୍‌ବେଳିତ ହୋଇ ଉଠିବା ସହିତ ମନରେ ନୂତନ ଆଶା ଓ ସମ୍ଭାବନା ସୃଷ୍ଟି ହେବାରେ ଲାଗିଲା ।

ମୋ ପିଲାମାନଙ୍କ ମଧ୍ୟରେ ଭୀମ ଭବିଷ୍ୟତରେ ଜଣେ ଅସାଧାରଣ ବୀର ଭାବରେ ପ୍ରତିଷ୍ଠିତ ହେବ, ଏକଥା ମୁଁ ତା'ର ଜନ୍ମର ଅଳ୍ପଦିନପରେ ଜାଣି ପାରିଥିଲି । ଗୋଟିଏ ଚମତ୍କପ୍ରଦ ଘଟଣା ମୋ ମନରେ ଏ ପ୍ରକାର ଧାରଣା ବଦ୍ଧମୂଳ କରି ଦେଇଥିଲା । ମନେ ପଡ଼ିଯିବାରୁ ଘଟଣାଟି ଆପଣମାନଙ୍କୁ ନଜଣାଇ ରହି ପାରୁନାହିଁ ।

ଶତଶୃଙ୍ଗ ଆଶ୍ରମରେ ରହୁଥିବା ସମୟରେ ବେଳେ ବେଳେ ମୁଁ ବାହାରେ ବୁଲିବାକୁ ଯାଉଥାଏ । ଦିନେ ଭୀମକୁ କାଖକରି ଠିଆ ହୋଇଥିଲି । ହଠାତ୍ ଗୋଟିଏ ମହାବଳ ବାଘର ଭୀଷଣ ଗର୍ଜନରେ ମୁଁ ଚମକି ପଡ଼ିଲି । ପୁଅ ମୋ କାଖରୁ ଖସି ଶକ୍ତ ପଥର ଚଟାଣ ଉପରେ ପଡ଼ିଗଲା । ''ଆଲୋ ମୋ ପୁଅ'' କହି ତାକୁ ତଳୁ ଉଠାଇ ଆଣି ଭାବିଲି ନିଶ୍ଚେ ତା' କଅଁଳ ମୁଣ୍ଡ ଫାଟି ଯାଇଥିବ,

ଏଇ ଆଶଙ୍କା ମୋତେ ବିବ୍ରତ କରି ପକାଇଲା । ତା' ମୁଣ୍ଡ ଓ ସାରା ଦେହରେ ହାତ ବୁଲାଇ ଦେଖିଲି କ୍ଷତର କୌଣସି ଚିହ୍ନ ନାହିଁ । ମୋ କାଖରୁ ଟାଣ ପଥର ଉପରେ ପଡ଼ିଥିଲେ ମଧ୍ୟ ଭୀମ ଆଦୌ କାନ୍ଦୁ ନଥିବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତଳକୁ ଚାହିଁ ଦେଖିଲି- ଯେଉଁ ପଥର ଚଟାଣ ଉପରେ ପୁଅ ମୋର ପଡ଼ିଯାଇଥିଲା, ତାହା ଦୁଇଫାଳ ହୋଇ ଫାଟି ଯାଇଛି । ଏ ଅସମ୍ଭବ ଘଟଣାରେ ମୁଁ ହତବାକ୍ ହୋଇଗଲି । ଅନ୍ୟ କାହାକୁ କହିଲେ କିଏ ବା ମୋ କଥାକୁ ବିଶ୍ୱାସ କରିବ ! ବରଂ ଶୁଣୁ ଶୁଣୁ ସମସ୍ତେ ମୋତେ ପାଗଳ କହି ନାନା କଟୂ ମନ୍ତବ୍ୟ ଦେବେ । କ'ଣ କରିବି କିଛି ସ୍ଥିର କରି ପାରିଲି ନାହିଁ । ନାନା ପାପ-ଚିନ୍ତା ମୋ ମନକୁ ଆନ୍ଦୋଳିତ କରିବାରେ ଲାଗିଲା । ମୁଁ ଆଦୌ ସ୍ଥିର ହୋଇ ରହିପାରିଲି ନାହିଁ ।

ଆମ ଆଶ୍ରମ ନିକଟରେ ଜଣେ ଋଷି ରହୁଥାନ୍ତି । ଅସ୍ଥିର ମନ ଓ ଉଦ୍‌ବେଳିତ ହୃଦୟ ନେଇ ମୁଁ ତାଙ୍କର ଶରଣାପନ୍ନ ହେଲି ଓ ଆମୁଳାନ୍ତ ସମସ୍ତ ଘଟଣା ବର୍ଣ୍ଣନା କଲି । ସବୁ ଶୁଣିବା ପରେ ସେ କିଛି ସମୟ ଚକ୍ଷୁ-ମୁଦ୍ରିତ କରି ଧ୍ୟାନସ୍ଥ ହେଲେ । ଅଳ୍ପ ସମୟ ପରେ ହସି ହସି କହିଲେ,- କଲ୍ୟାଣି ! ତୁମେ ଅତୀବ ଭାଗ୍ୟବତୀ । ତୁମ ପୁତ୍ରର ଶରୀର ଏକ ସ୍ୱତନ୍ତ୍ର ଉପାଦାନରେ ଗଠିତ । ବଜ୍ର ମଧ୍ୟ ଏହି ବାଳକର ଶରୀରରେ ବାଜି ଚୂର୍ଣ୍ଣ ହୋଇଯିବ । ଆଉ ଅଧିକ ଜାଣିବା ପାଇଁ ମୋତେ କିଛି ପ୍ରଶ୍ନକର ନାହିଁ । ମନେରଖ ଏଇ ବାଳକ ତୁମ ବଂଶର ଅମ୍ଳାନ ଦୀପ-ଶିଖା ରୂପେ ପ୍ରତିଭାତ ହେବ ।''

ମୁଁ ଆଉ ଅଧିକ କିଛି ପଚାରିବା ଆବଶ୍ୟକ ନଥିଲା । ଯେତିକି ଶୁଣିଲି, ସେତିକିରେ ମୋର ଆଶଙ୍କା ସମ୍ପୂର୍ଣ୍ଣ ଦୂରହୋଇ ଗଲା ଓ ମୁଁ ସହର୍ଷ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲି ।

ପୁତ୍ର କନ୍ୟାମାନଙ୍କର ପ୍ରଶଂସାରେ କେଉଁ ପିତାମାତା ଉଲ୍ଲସିତ ନହେବେ । ଭୀମ ଓ ଅର୍ଜୁନର ଉଲ୍ଲେଖନୀୟ ସଫଳତାରେ ମୁଁ ଅତ୍ୟନ୍ତ ଉତ୍‌ଫୁଲ୍ଲିତ ହୋଇ ଉଠିଲି । ଶୁଷ୍କ ହୋଇ ଆସୁଥିବା ମୋ ଜୀବନ ବୃକ୍ଷଟି ପୁଣି ପଲ୍ଲବିତ ହେବାକୁ ଆରମ୍ଭ କଲା ।

ପିଲାମାନେ ବଡ଼ ବଡ଼ ହୋଇଗଲେ । ଅନ୍ୟମାନଙ୍କ ତୁଳନାରେ ଭୀମର ଶରୀର ଅସାଧାରଣ ଭାବରେ ବୃଦ୍ଧି ପାଇଲା ଓ ଦୂରକୁ ଏକ ବିଶାଳ ଶାଳ ବୃକ୍ଷ ପରି ଦେଖାଗଲା । ଦିନକୁ ଦିନ ସେ ଅତି ଦୁଷ୍ଟ ଓ ଦୁର୍ବିନୀତ ହୋଇ କୌରବ

ଭାଇ ମାନଙ୍କୁ ନାନା ହଇରାଣ କରିବାରେ ଲାଗିଲା । ତାର ବଳିଷ୍ଠ ଶରୀର ଓ ଅମାପ ଶକ୍ତି କୌରବ ମାନଙ୍କର ହିଂସାର କାରଣ ହୋଇ ପଡ଼ିଲା । ସେମାନେ ଏତେ ହିଂସ୍ର ହୋଇ ଉଠିଲେ ଯେ ତାକୁ ଜୀବନରେ ମାରିଦେବା ପାଇଁ ଗୋପନରେ ମନ୍ତ୍ରଣା କରିବାରେ ଲାଗିଲେ ।

ପିଲାମାନେ ଦୁଷ୍ଟାମି କରିବା ସ୍ୱାଭାବିକ । ଦୁଷ୍ଟାମିର ମାତ୍ରା ଅସହ୍ୟ ହେଲେ ସେମାନଙ୍କୁ ଦଣ୍ଡ ଦିଆଯାଏ । ମାତ୍ର ଦୁଷ୍ଟାମି ପାଇଁ କାହାକୁ ଜୀବନରେ ମାରିଦେବା କଥା ମୁଁ କଳ୍ପନା କରି ପାରୁ ନଥିଲି । ଯେଉଁ ଭୀମ ଆମ ପରିବାରର ମୁଖ ଉଜ୍ଜ୍ୱଳ କରିବ ବୋଲି ଋଷି ଭବିଷ୍ୟତ ବାଣୀ ଶୁଣାଇ ଥିଲେ, ସେଇ ଭୀମକୁ ହତ୍ୟା କରାଯିବା ପାଇଁ ଷଡ଼ଯନ୍ତ୍ର କଥା ଶୁଣି ମୁଁ ଅତ୍ୟନ୍ତ ଶଙ୍କାକୁଳ ହୋଇ ଉଠିଲି । ଭୀମ ମୋ ମୁଣ୍ଡ ବ୍ୟଥାର କାରଣ ହୋଇ ପଡ଼ିଲା । ସାମାନ୍ୟ ଦୁଷ୍ଟାମି ପାଇଁ ପ୍ରାଣଦଣ୍ଡର ବ୍ୟବସ୍ଥା ଘୋର ଅନ୍ୟାୟ କାର୍ଯ୍ୟ । ମାତ୍ର କାହାକୁ କହିବି ? ମୋର ହୋଇ କିଏ ଅଛି ଯେ ନ୍ୟାୟ ଅନ୍ୟାୟର ବିଚାର କରିବ ? କୌରବ ମାନଙ୍କ ପକ୍ଷରେ ଅନ୍ୟାୟହିଁ ନ୍ୟାୟ ଉପରେ ପ୍ରଭୁତ୍ୱ ବିସ୍ତାର କରେ । ଧୃତରାଷ୍ଟ୍ରଙ୍କ ପିଲାମାନେ ପିତାଙ୍କ ସକଳ ଦୁର୍ଗୁଣ ଗ୍ରହଣ କରି ଜନ୍ମ ହୋଇଥିଲେ । ଦେଢଶୁର କିପରି ଚରିତ୍ରର ଥିଲେ ତାହା ମହର୍ଷି ବ୍ୟାସଦେବଙ୍କ ଗୋଟିଏ ଉକ୍ତିରୁ ସ୍ପଷ୍ଟ ହୋଇ ଯାଇଥିଲା । ଧୃତରାଷ୍ଟ୍ରଙ୍କ ହୀନ ଆଚରଣ ଓ କୂଟନୀତି ପ୍ରତି ଅତ୍ୟନ୍ତ ବିରକ୍ତ ହୋଇ ବ୍ୟାସଦେବ ତାଙ୍କୁ ''ବିଷବୃକ୍ଷ'' ବୋଲି କହିଥିଲେ । ଏଇ ବିଷବୃକ୍ଷରେ ଶହେଟି ଫଳ ଧରିଛି । ବିଷଫଳରୁ ଅମୃତ ଆଶା କରିବା ବିଡ଼ମ୍ବନା ମାତ୍ର ।

ଦିନେ ବଣ-ଭୋଜି କରିବା ପାଇଁ କୌରବ ଭାଇମାନେ ଭୀମକୁ ଡାକିନେଲେ । ଖାଦ୍ୟ-ଲୋଭୀ ଭୀମ ଅତ୍ୟନ୍ତ ଆଗ୍ରହରେ ଭୋଜିରେ ଯୋଗ ଦେଇ ପ୍ରଚୁର ଖାଇଦେଲା । ଖାଦ୍ୟରେ ବିଷ ମିଶା ଯାଇଥିବା କଥା ସେ ଅବା ଜାଣିବ କିପରି । ଅଳ୍ପ ସମୟ ପରେ ତାର ଚେତା ବୁଡିଗଲା । ଦୁଷ୍ଟ କୌରବମାନେ ହାତ ଗୋଡ ବାନ୍ଧି ତାକୁ ନଦୀରେ ଫୋପାଡ଼ି ଦେଲେ । ସୌଭାଗ୍ୟ ବଶରୁ ସେ ଯାଇ ପାତାଳ ପୁରର ନାଗଲୋକରେ ପହଞ୍ଚି ଗଲା । ନାଗମାନେ ଭୀମକୁ ବାରମ୍ବାର ଦଂଶନ କରିବାରୁ ତା'ର ଚେତା ଫେରି ଆସିଲା- ବିଷସ୍ୟ ବିଷ ମୌଷଧି । ତା' ଦେହରେ ଥିବା ବିଷକୁ ନାଗମାନଙ୍କର ବିଷ ନଷ୍ଟ କରି ଦେଲା ।

ଚେତା ଫେରିବା ପରେ ନାଗକନ୍ୟାମାନେ ଭୀମର ପରିଚୟ ପାଇ ବହୁତ ଖୁସି ହେଲେ ଓ ତାକୁ ଆଣି ନଦୀକୂଳରେ ଛାଡିଦେଇ ଗଲେ । ଏହା ଭିତରେ କିଛି ଦିନ ବିତି ଯାଇଥିଲା । ମୁଁ ଅନ୍ନଜଳ ତ୍ୟାଗ କରି ପଡ଼ି ରହିଥାଏ । ଭାଇମାନଙ୍କ ମନରେ ଆଦୌ ସୁଖ ନଥାଏ । ଭୀମର ଅଦର୍ଶନ ସମସ୍ତଙ୍କ ପ୍ରାଣକୁ ବ୍ୟାକୁଳିତ କରି ପକାଇଥାଏ ।

ଏହି ସମୟରେ ହଠାତ୍ ଭୀମ ଆସି ଆଗରେ ଠିଆ ହୋଇଗଲା । ମୋତେ କୋଟିନିଧି ମିଳିଗଲା ପରି ଲାଗିଲା । ମୁଁ ତାକୁ କୁଣ୍ଢାଇ ପକାଇ ଆନନ୍ଦରେ ତା' ଦେହ ମୁଣ୍ଡ ଆଉଁଶିବାରେ ଲାଗିଲି । ଅବାରିତ ଆନନ୍ଦାଶ୍ରୁ ବାଧା ମାନିଲା ନାହିଁ । ଉଦ୍‌ଗତ ଅଶ୍ରୁ ଧାରକୁ ପୋଛୁ ପୋଛୁ ଭୀମ କହିଲା,- ''ମା, ତୁ ଧୈର୍ଯ୍ୟ ଧର । ମୁଁ ସବୁ କଥା କହିବି ।''

ଭୀମଠାରୁ ସମସ୍ତ ଘଟଣା ଶୁଣିବା ପରେ ମୋର ସର୍ବାଙ୍ଗ ଭୟରେ ଶିହରି ଉଠିଲା । ମୁଁ ଆଉ ଥୟ ଧରି ରହିପାରିଲି ନାହିଁ । ବିପଦ ଆପଦରେ ମୋ ପିଲାମାନଙ୍କୁ ସାହା ହେଉଥିବା ବିଦୂରଙ୍କ ନିକଟରେ ଦୁଃଖ ଜଣାଇଲି । ସେ ସମସ୍ତ ଶୁଣିବା ପରେ କହିଲେ,- ''କାନ୍ଦିବା ଦ୍ୱାରା କୌଣସି ସମସ୍ୟାର ସମାଧାନ ହୋଇ ପାରେ ନାହିଁ । ଧୈର୍ଯ୍ୟ, ସାହସ ଓ ସହନଶୀଳତା ବଳରେ ଅନେକ କିଛି କରି ହୁଏ । କୌରବମାନେ ବିଷବୃକ୍ଷର ଫଳ । ତାଙ୍କ ଠାରୁ ସ୍ନେହ, ଶ୍ରଦ୍ଧା, ମମତା, ଭାତୃତ୍ୱ ଆଦି ମାନବୋଚିତ ସୁଗୁଣ ଆଶା କରିବା ବିଡମ୍ବନା ମାତ୍ର । ବିଷରୁ ଜନ୍ମିଥିବା କୌରବମାନେ ଅନେକଙ୍କୁ ବିଷଜର୍ଜରିତ କରିବେ ଏବଂ ଶେଷରେ ସେଇ ବିଷହିଁ ସେମାନଙ୍କ ସର୍ବନାଶର କାରଣ ହେବ । କୌରବମାନେ ପାଣ୍ଡବ ମାନଙ୍କୁ ସେମାନଙ୍କ ରାସ୍ତାରୁ ହଟାଇ ନିଷ୍କଣ୍ଟକ ରାଜ୍ୟ ଭୋଗର ସ୍ୱପ୍ନ ଦେଖିବା ଆରମ୍ଭ କଲେଣି । ଭୀମ ପ୍ରତି ଯେଉଁ ଅମାନୁଷିକ ବ୍ୟବହାର କରାଗଲା, ତାହା କୌରବମାନଙ୍କ ହୀନ ଚକ୍ରାନ୍ତର ଏକ ନଗ୍ନଚିତ୍ର । ତୁମେ ଧୈର୍ଯ୍ୟ ଧରି ଅପେକ୍ଷା କର । ଚିରସୁଖ ବା ଚିର ଦୁଃଖ କାହାର ଭାଗ୍ୟ ଲିପି ନୁହେଁ । ଦୁଃଖପରେ ସୁଖ ତା'ର ସାଙ୍ଗସାଥୀ ମାନଙ୍କୁ ନେଇ ଆସିବ । ମନେରଖ ''ଚକ୍ରବତ୍ ପରିବର୍ତ୍ତନ୍ତି ସୁଖାନି ଚ ଦୁଃଖାନିଚ'' । ଦୁଃଖ ଓ ସୁଖର ମିଶ୍ରଣହିଁ ଜୀବନ । ମୋର ଏଇ କେତେପଦ କଥାକୁ ସ୍ମରଣକରି ଅଗ୍ରସର ହୁଅ । ଧୀରେ ଧୀରେ ତୁମ ଜୀବନ-ପଥ କୁସୁମିତ ହୋଇ ଉଠିବ । ଏଥର, ପିଲାମାନଙ୍କ ନିକଟକୁ ଫେରିଯାଅ ।''

ମନ କିଛି ପରିମାଣରେ ଆଶ୍ୱସ୍ତ ହେଲା । ମୁଁ ଉଆସକୁ ଫେରି ଆସିଲି । ଗୁଡିଏ ବିଷଧର ସର୍ପଙ୍କ ଗହଣରେ ରହି କିପରି ସତର୍କତା ଅବଲମ୍ବନ କରିବି, ଆଦୌ ଚିନ୍ତା କରି ପାରିଲି ନାହିଁ । ଶେଷରେ ଅଗତିର ଗତିଦାତା, ପରମେଶ୍ୱରଙ୍କ ନିକଟରେ ଶରଣ ଭିକ୍ଷା କଲି ।

ଭୀମର ଆଶ୍ଚର୍ଯ୍ୟ ଜନକ ପ୍ରତ୍ୟାବର୍ତ୍ତନ କୌରବମାନଙ୍କୁ ବିସ୍ମୟ ବିମୂଢ଼ କରିପକାଇଲା । ସେମାନେ ପୁଣି ନୂତନ ଯୋଜନା ପ୍ରସ୍ତୁତ କରିବାରେ ଲାଗି ପଡ଼ିବେ ଏଇ ଚିନ୍ତା ମୋତେ ଅସ୍ଥିର କରି ପକାଇଲା ।

ଆଗରୁ କହିଛି- ଭୀମ ଓ ଅର୍ଜୁନଙ୍କର ଅତୁଳନୀୟ ଦକ୍ଷତା କୌରବ ମାନଙ୍କ ଈର୍ଷା-ନଳରେ ଘୃତାହୁତି ପରି ହୋଇ ଗଲା । ସେମାନେ ଅଧିକରୁ ଅଧିକ ହିଂସ୍ର ଓ ଅସୂୟା ଜର୍ଜରିତ ହୋଇ ଉଠିଲେ । ଗୁରୁ ଅନେକ ଛାତ୍ରଙ୍କୁ ଶିକ୍ଷା ଦେଉଥିଲେ ମଧ ସବୁ ଶିଷ୍ୟ ସମାନ ନୈପୁଣ୍ୟର ଅଧିକାରୀ ହୋଇ ପାରନ୍ତି ନାହିଁ । ତେଣୁ ପଣ୍ଡିତମାନଙ୍କ ନିମ୍ନ ଉକ୍ତିଟି ଏକାନ୍ତ ପ୍ରଣିଧାନ ଯୋଗ୍ୟ-

ଶୈଳେ ଶୈଳେ ନମାଣିକ୍ୟଂ ... ଚନ୍ଦନଂ ନ ବନେବନ ।

ସ୍ୱାର୍ଥାନ୍ଧ ମାନବ ଏହି ନିରାଟ ସତ୍ୟକୁ ସ୍ୱୀକାର କରିବାକୁ ଆଦୌ ପ୍ରସ୍ତୁତ ନହୋଇ ଅନ୍ୟର ପ୍ରଶଂସାରେ ଅସୂୟା ପରବଶ ହୋଇ ଉଠିଥାଏ । କ୍ରୁର କୌରବମାନେ ମୋ ପିଲାଙ୍କର ପ୍ରଶଂସା ସହ୍ୟ କରିନପାରି ଏକାନ୍ତ ଭାବରେ ହିଂସ୍ର ଓ ପ୍ରତିହିଂସା ପରାୟଣ ହୋଇ ଉଠୁଥିଲେ ।

କିଛିଦିନ ପରେ ଆଚାର୍ଯ୍ୟ ଦ୍ରୋଣ ଏକ ଅସ୍ତ୍ର-ପରୀକ୍ଷାର ଆୟୋଜନ କଲେ । ଦେଶର ଚତୁର୍ଦ୍ଦିଗରୁ ବହୁ ରାଜା, ରାଜପୁତ୍ର ଓ ମୁନୀ ଋଷିଙ୍କ ଗହଣରେ ଭୀଷ୍ମଦେବ ଏବଂ ମହାରାଜା ଧୃତରାଷ୍ଟ୍ରଙ୍କ ସହ ବହୁ ଶାସନ-ମୁଖ୍ୟ ଅସ୍ତ୍ରକୌଶଳ ଦେଖିବା ପାଇଁ ଉପସ୍ଥିତ ହୋଇଥାନ୍ତି । ମୁଁ ଗାନ୍ଧାରୀଙ୍କ ସହିତ ସ୍ୱତନ୍ତ୍ର ଆସନରେ ଉପବେଶନ କରିଥାଏ । ବିଦୂର ଧୃତରାଷ୍ଟ୍ରଙ୍କୁ ଓ ମୁଁ ଗାନ୍ଧାରୀଙ୍କୁ କ୍ରୀଡ଼ା କୌଶଳର ବର୍ଣ୍ଣନା କରିବା ସ୍ଥିର ହୋଇଥାଏ ।

ପ୍ରଥମେ ଭୀମ ଓ ଦୁଃଶାସନଙ୍କ ମଧ୍ୟରେ ଗଦାଯୁଦ୍ଧ ହେବାର ଘୋଷଣା କରାଗଲା । ଉଭୟେ ପ୍ରାଙ୍ଗଣରେ ଉପସ୍ଥିତ ହେବା ଦେଖି ମୋ ଦେହରୁ ରକ୍ତ ଶୁଖି ଆସିଲା । ଆଶଙ୍କା ହେଲା,- ଏହା କ୍ରୀଡା ନୁହେଁ, ମୃତ୍ୟୁର ଆମନ୍ତ୍ରଣ । ମୁଁ ନିର୍ନିମେଷ ନୟନରେ ଉଭୟ ଯୋଦ୍ଧାଙ୍କୁ ଅତି ଆତଙ୍କିତ ହୋଇ ଚାହିଁ ରହିଥାଏ । ଯୁଦ୍ଧ ଆରମ୍ଭ ହୋଇଗଲା । କିଏ କାହାକୁ ପରାସ୍ତ କରିବ ଏକଥା ଆଦୌ କଳନା

କରି ହେଉନଥାଏ । ହଠାତ୍ ଉଭୟ ଯୋଦ୍ଧା ଏପରି ଭୟଙ୍କର ବିବାଦରେ ମାତି ଉଠିଲେ ଯେ, ଆଚାର୍ଯ୍ୟ ମହାଶୟ ଅଧାରୁ ପ୍ରତିଦ୍ୱନ୍ଦିତାରେ ପୂର୍ଣ୍ଣଚ୍ଛେଦ ପକାଇବାକୁ ବାଧ୍ୟ ହେଲେ । ଗଦାଯୁଦ୍ଧ ବନ୍ଦ ହୋଇଗଲା ।

ଏହାପରେ ଗୁରୁ ଦ୍ରୋଣ କହିଲେ,- ''ଅସ୍ତ୍ର ପରୀକ୍ଷା ଏକ କ୍ରୀଡା, ଯୁଦ୍ଧ ନୁହେଁ । ଏଠାରେ କେହି କାହାର ଶତ୍ରୁ ନୁହନ୍ତି । ଏହି ମହତ ଉଦ୍ଦେଶ୍ୟକୁ ଭୁଲିଗଲେ ଆୟୋଜନଟି ବ୍ୟର୍ଥ ହୋଇଯିବ । ସ୍ନେହ, ସଦ୍‌ଭାବ ଓ ପବିତ୍ର ଭ୍ରାତୃତ୍ୱର ସ୍ଥାନ ଅସୂୟା, ହିଂସା ଓ ବିଦ୍ୱେଷ ଅଧିକାର କରି ବସିବ । ଏଣୁ ଏହାକୁ କ୍ରୀଡା ଦୃଷ୍ଟିରେ ଦେଖି ଆନନ୍ଦ ଉପଭୋଗ କରିବା ଉଚିତ ।

ଅଳ୍ପ ସମୟ ପରେ ଦ୍ରୋଣ ନିଜର ପ୍ରିୟତମ ଶିଷ୍ୟ ଅର୍ଜୁନକୁ ଆହ୍ୱାନ କଲେ ଓ ସମବେତ ସଜ୍ଜନଙ୍କୁ ଲକ୍ଷ୍ୟ କରି କହିଲେ,- ''ବର୍ତ୍ତମାନ ଆପଣମାନେ ବୀର ଅର୍ଜୁନର ଅତି ବିଚିତ୍ର ରଣ-କୌଶଳ ଦର୍ଶନ କରି ନିଶ୍ଚୟ ଆମୋଦିତ ହେବେ । ମୋର ଏକମାତ୍ର ପୁତ୍ର ଅଶ୍ୱତ୍ଥମା ଠାରୁ ମଧ୍ୟ ମୁଁ ଏହି ଶିଷ୍ୟଟିକୁ ଅଧିକ ଶ୍ରଦ୍ଧା କରେ । ଯୋ ମୋ ପୁତ୍ରାତ୍ ପ୍ରିୟତରଃ ଆଚାର୍ଯ୍ୟଙ୍କ ଏଇ ପଦିଏ କଥା ମୋ ପ୍ରାଣରେ ଅମୃତର ସ୍ରୋତ ବୁହାଇ ଦେଇଥିଲା । ମୁଁ ସ୍ନେହ-ସିକ୍ତ ନୟନରେ ଦେଖିଲି,- ସ୍ୱଭାବ- ସୁନ୍ଦର ଫାଲ୍ଗୁନୀ ରମଣୀୟ ପୋଷାକରେ ସଜ୍ଜିତ ହୋଇ ଆହୁରି ସୁନ୍ଦର ଓ ଆକର୍ଷଣୀୟ ଦେଖା ଯାଉଛି । ମାତୃହୃଦୟ ମୋର ପୁଲକରେ ପୂରି ଉଠିଲା । ସମବେତ ଦର୍ଶକ ମଣ୍ଡଳୀ ଅପଲକ ନେତ୍ରରେ ଅର୍ଜୁନ ଉପରେ ଦୃଷ୍ଟି ନିବଦ୍ଧ କରିଥାନ୍ତି । କ୍ରୀଡା ଆରମ୍ଭ ହେବା ମାତ୍ରେ ବିବରଣୀ ଜାଣିବା ପାଇଁ ମହାରାଜା ବାରମ୍ୱାର ପ୍ରଶ୍ନ କରିବାରେ ଲାଗିଥାନ୍ତି । ବିଦୂର ବିଳମ୍ୱ ନକରି ଅର୍ଜୁନର ବିଚିତ୍ର ରଣ-କୌଶଳ ମାନ ଟିଖିନିଖି ବର୍ଣ୍ଣନା କରି ଚାଲିଥାନ୍ତି । ଦର୍ଶକମାନଙ୍କ ହର୍ଷଧ୍ୱନୀ ଓ କରତାଳି ନାଦରେ କ୍ରୀଡା ପ୍ରାଙ୍ଗଣ ମୁଖରିତ ହୋଇ ଉଠୁଥାଏ । ଧୃତରାଷ୍ଟ୍ର ବାରମ୍ୱାର ମୋତେ ଭାଗ୍ୟବତୀ ବୋଲି କହୁଥାନ୍ତି । ବାସ୍ତବରେ ଯେଉଁ ମାଆ ଏପରି ଏକ ଅସାମାନ୍ୟ ବୀରତ୍ୱସଂପନ୍ନ ପୁତ୍ରକୁ କୋଳରେ ଧରିପାରିଛି ତା' ପାଇଁ ଆଉ ଅଧିକ ସୌଭାଗ୍ୟ କ'ଣ ହୋଇପାରେ ? ଦେବଶୁର କହୁଥିଲେ-

ଧନ୍ୟୋଽସ୍ମ୍ୟନୁ ଗୃହୀତୋଽସ୍ମି
ରକ୍ଷିତୋଽସ୍ମି ମହାମତେ ।
ପୃଥାରଣୀ ସମୁଦ୍‌ଭୂତୈ ସ୍ତ୍ରିଭିଃ
ପାଣ୍ଡବ ବହ୍ନିଭିଃ ।.

ଉପର ମନରେ ହେଲେ ମଧ୍ୟ ଦେବଶୂରଙ୍କ ତୁଣ୍ଡରୁ ମୁଁ ପ୍ରଥମଥର ପାଇଁ ଏପରି ପ୍ରଶଂସା ବାକ୍ୟ ଶୁଣିବାକୁ ପାଇଥିଲି । ଏଥିରେ ସେ ଆଦୌ ଆନନ୍ଦିତ ହେଉନଥିଲେ, ବରଂ ଈର୍ଷାରେ ତାଙ୍କ ଦେହ ପୋଡିଜଳି ଯାଉଥିଲା ଏକଥା ମୋତେ ଆଦୌ ଅବିଦିତ ନ ଥିଲା । ମୁଁ କିନ୍ତୁ କୁବେର ସଂପତ୍ତି ଲାଭ କଲାପରି ଆନନ୍ଦ ଅନୁଭବ କରୁଥାଏ ।

ଏହାପରେ ଏକ ତେଜୋଦ୍ଦୀପ୍ତ ଯୁବକ ହସ୍ତରେ ଧନୁର୍ବାଣ ସହ ହଠାତ୍ ସଭାସ୍ଥଳରେ ଉପସ୍ଥିତ ହୋଇଗଲେ । ଏହି ସୌମ୍ୟ ଦର୍ଶନ ଯୁବକଙ୍କ ପ୍ରତି ସଭାସ୍ଥ ସଜ୍ଜନ ମାନଙ୍କ ଦୃଷ୍ଟି ଆପେ ଆପେ ଆକର୍ଷିତ ହୋଇ ଉଠିଲା । ଯୁବକଙ୍କ ଶରୀରର ସ୍ୱର୍ଗୀୟ ତେଜ, ସହଜାତ କବଚ-କୁଣ୍ଡଳର ଅପୂର୍ବ ଦ୍ୟୁତି ପ୍ରତି ସମସ୍ତେ ଏକ ଲୟରେ ଚାହିଁ ରହିଲେ । ଏହି ବୀର-ଯୁବକ ପ୍ରଥମେ ସଭାସ୍ଥ ଗୁରୁଜନ ମାନଙ୍କୁ ପ୍ରଣାମ କରିବା ପରେ ଅର୍ଜୁନଙ୍କୁ ଲକ୍ଷ୍ୟକରି କହିଲେ,- ''ହେ ଅର୍ଜୁନ, ତୁମେ ଅତି ସାଧାରଣ ଅସ୍ତ୍ର-କୌଶଳ ପ୍ରଦର୍ଶନ କରି ଦର୍ଶକମାନଙ୍କ ପ୍ରଶଂସାରେ ନିଜକୁ ଗୌରବାନ୍ୱିତ ମନେ କରୁଥିବ ନିଶ୍ଚୟ । ମାତ୍ର ବର୍ତ୍ତମାନ ମୁଁ ତୁମଠାରୁ ଶତଗୁଣ ଶ୍ରେଷ୍ଠ ରଣ-କୌଶଳ ଦେଖାଇ ତୁମ ଗୌରବ ଓ ପ୍ରଶଂସାକୁ ଅତି ତୁଚ୍ଛ ପ୍ରତିପାଦିତ କରିଦେବି । ଅଦ୍ୱିତୀୟ ବୀର ବୋଲି ତୁମର ଯେଉଁ ଅହମିକା ସୃଷ୍ଟି ହୋଇଛି, ତାହା ଅଚିରେ ଧୂଳିସାତ୍ ହୋଇଯିବ । ସାମାନ୍ୟ ଅପେକ୍ଷା କରି ମୁଁ କହିଥିବା କଥାର ପ୍ରମାଣ ନିଅ । ତୁମେ ମୋର ପରିଚୟ ପାଇ ନଥିବ । ଶୁଣ, ମୋ ନାମ କର୍ଣ୍ଣ । ମୁଁ ଧନୁର୍ବିଦ୍ୟାରେ ଅସାଧାରଣ କୃତିତ୍ୱ ଲାଭ କରି ପାରିଛି । ମୋ ସହିତ ତୁମେ ବା ସଂସାରର ଆଉ କେହି ସମକକ୍ଷୀ ନୁହନ୍ତି ।

ପ୍ରଥମରୁ କବଚ କୁଣ୍ଡଳକୁ ଲକ୍ଷ୍ୟକରି ମୋର ବିସ୍ମୃତ ଅତୀତର ସ୍ମୃତି ଜାଗ୍ରତ ହୋଇ ଉଠିଥିଲା । ବର୍ତ୍ତମାନ 'କର୍ଣ୍ଣ' ନାମ ଶୁଣିବା ମାତ୍ରେ ମୁଁ ଚମକି ପଡ଼ିଲି । ସନ୍ଦେହ ସତ୍ୟରେ ପରିଣତ ହୋଇଗଲା । ପ୍ରଥମର 'ବସୁଷେଣ' ନାମ ପରେ 'କର୍ଣ୍ଣ' ହୋଇଥିବା ମୁଁ ଜାଣେ । ଏହି ତେଜସ୍ୱୀ ଯୁବକ ଯେ ମୋ କୁମାରୀ

ଜୀବନର ଅଶୁଭ ସ୍ମୃତି ଏଥିରେ ମୋର ତିଳେ ହେଲେ ସନ୍ଦେହ ରହିଲା ନାହିଁ। ମୁଣ୍ଡ ଘୂରିବାରେ ଲାଗିଲା । ସ୍ୱଷ୍ଟ ଦିବାଲୋକରେ ମଧ୍ୟ ମୋ ଆଖିକୁ କିଛି ଦେଖାଗଲା ନାହିଁ । ଉପସ୍ଥିତ କ୍ଷେତ୍ରରେ କର୍ତ୍ତବ୍ୟ ନିର୍ଦ୍ଧାରଣ ଅସମ୍ଭବ ହୋଇ ପଡ଼ିଲା । କର୍ଣ୍ଣ ଯେ ଅର୍ଜୁନର ବଡ଼ ଭାଇ ଏ ସତ୍ୟ ମୁଁ କଦାପି ପ୍ରକାଶ କରି ପାରିବି ନାହିଁ । କ'ଣ କରିବି ? ଏଇ କଥା ଚିନ୍ତା କରୁଥିବା ବେଳେ ଅର୍ଜୁନ ଉଚ୍ଚ ସ୍ୱରରେ କହିଲା,- ''ବିନା ନିମନ୍ତ୍ରଣରେ ଆସି ବୃଥା ଆସ୍ଫାଳନ ଦେଖାଇବା କେବଳ ମୂର୍ଖମାନଙ୍କ ପକ୍ଷେ ସମ୍ଭବ । ସଭ୍ୟ, ଶିକ୍ଷିତ ଓ ମର୍ଯ୍ୟାଦା-ସମ୍ପନ୍ନ ବ୍ୟକ୍ତିମାନେ ଏପରି କରିବାକୁ ସଙ୍କୋଚବୋଧ କରିଥାନ୍ତି । ଅନାହୂତ ଭାବରେ ଆସି ଯେଉଁ ଔଦ୍ଧତ୍ୟ ପ୍ରଦର୍ଶନ କରି ସାରିଲାଣି ତା'ର ଯଥାଯୋଗ୍ୟ ପୁରସ୍କାର ତୁମକୁ ମିଳିଯିବାରେ ଆଦୌ ବିଳମ୍ବ ହେବ ନାହିଁ । ମନେରଖ- ମୃତ୍ୟୁହିଁ ହେବ ତୁମ ଅପରିଣାମ ଦର୍ଶିତାର ଯୋଗ୍ୟ ପୁରସ୍କାର ।'' ଏଇପଦକ କଥା ମୋ ଛାତି ଥରାଇ ଦେଲା । ପିଣ୍ଡରୁ ପ୍ରାଣ ଅଲଗା ହୋଇଗଲା ପରି ଅନୁଭବ କଲି ।''

ଅର୍ଜୁନର ତୀବ୍ର ବାକ୍ୟ-ବାଣରେ ଜର୍ଜରିତ ହୋଇ କର୍ଣ୍ଣ କହିଲା,- ''ଭୁଲିଯିବା ଉଚିତ ନୁହେ ଯେ ଏହା ଏକ ସାଧାରଣ ସ୍ଥାନ ଓ କ୍ରୀଡା ପ୍ରାଙ୍ଗଣଟି ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ । ଅସ୍ତ୍ରଚାଳନାର ବିଭିନ୍ନ କୌଶଳ ପ୍ରଦର୍ଶନ ହିଁ ଏହି ଆୟୋଜନର ମୂଳ ଉଦ୍ଦେଶ୍ୟ । ନିଜ ଅପାରଗତାକୁ ଘୋଡାଇବାର ଅପଚେଷ୍ଟା ନକରି ଅସ୍ତ୍ର-କୌଶଳ ଲକ୍ଷ୍ୟ କର । ଅତିଶୀଘ୍ର ତୁମର ଭ୍ରମ ଦୂର ହୋଇଯିବ ।

ମୋ ଛାତି ଥରି ଉଠିଲା । ଘନଘନ ନିଃଶ୍ୱାସ ବହିର୍ଗତ ହେଲା । ଭାବିଲି ଏଇ ଖେଳହିଁ ମୋର କାଳ ହେବ । ଏକା ମାଆ ପେଟର ଦୁଇଭାଇ ପରସ୍ପରକୁ ନଚିହ୍ନି ଯୁଦ୍ଧରେ ବ୍ୟାପୃତ ହେବେ । ମୋରି ଚକ୍ଷୁ ସମକ୍ଷରେ ନାନା ଅଘଟଣମାନ ଘଟିଯିବ । କୌଣସି ମାଆ ପକ୍ଷରେ ଏହା ସହ୍ୟ କରିବା ସମ୍ଭବ ନୁହେଁ । ମୋତେ କିଛି ବୁଦ୍ଧି ଦେଖାଗଲା ନାହିଁ । ଏକାନ୍ତ ନିରୂପାୟ ହୋଇ ସେଇ ପରମପିତାଙ୍କୁ ପ୍ରାର୍ଥନା କଲି,- ପ୍ରଭୁ, ମୁଁ ଯାବତୀୟ ଦୁଃଖକଷ୍ଟ ସହିବାକୁ ପ୍ରସ୍ତୁତ ଅଛି; ମାତ୍ର ଆସନ୍ନ ବିପଦରୁ ମୋତେ ଉଦ୍ଧାର କର । ମୁଁ ଚେତାଶୂନ୍ୟ ହେଲାପରି ଅନୁଭବ କଲି ।

ହଠାତ୍ କୃପାଚାର୍ଯ୍ୟ କର୍ଣ୍ଣଙ୍କୁ ଚାହିଁ ପ୍ରଶ୍ନ କଲେ,- ଯୁବକ, ତୁମର ପରିଚୟ ପ୍ରଦାନ କର । ଯାହାଙ୍କ ସହିତ ତୁମେ ବାକ୍-ଯୁଦ୍ଧରେ ପ୍ରବୃତ୍ତ ଥିଲ, ସେ କୁରୁକୁଳ ସମ୍ଭୂତ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନ । ତୁମେ କେଉଁ ରାଜବଂଶରେ ଜନ୍ମ ଗ୍ରହଣ କରିଛ ପ୍ରକାଶ କରିବା ପରେ ପ୍ରତିଯୋଗିତା ଆରମ୍ଭ କରାଯିବ । ଜାଣିଥିବ, ରାଜ-କୁମାରମାନେ ହିଁ ରାଜ-କୁମାର ମାନଙ୍କ ସହିତ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେବାର ପରଂପରା ପ୍ରାଚୀନ କାଳରୁ ଚଳି ଆସୁଛି ।''

କର୍ଣ୍ଣଙ୍କୁ ସୁଯୋଗରୁ ବଞ୍ଚିତ କରିବା କୃପାଚାର୍ଯ୍ୟଙ୍କ ଏକ ଅପକୌଶଳ ମନେ କରି ଦୁର୍ଯ୍ୟୋଧନ କହି ଉଠିଲେ,- ''ଆଚାର୍ଯ୍ୟ ମହୋଦୟ, ବୀରତ୍ୱର ପରିଚୟ ବଂଶ ଗୌରବରୁ ନୁହେଁ, ବ୍ୟକ୍ତିର ପୌରୁଷରୁ ପ୍ରତିପାଦିତ ହୋଇଥାଏ । ଜାତି ପ୍ରଥା ଓ ଉଚ୍ଚ ନୀଚ ଭେଦଭାବ ମନୁଷ୍ୟ ସୃଷ୍ଟ ଏକ ଘୃଣ୍ୟ ବ୍ୟବସ୍ଥା । ତଥା-କଥିତ ନୀଚ ଜାତିର ଲୋକ ମଧ୍ୟ ସାଧନା ଓ ନିଷ୍ଠା ବଳରେ ଅତି ଉଚ୍ଚ ସମ୍ମାନର ଅଧିକାରୀ ହୋଇଥାଏ । ଯଦି ଆପଣ ମତ ପରିବର୍ତ୍ତନ ନକରନ୍ତି ତେବେ ବର୍ତ୍ତମାନ ମୁଁ ବନ୍ଧୁ କର୍ଣ୍ଣଙ୍କୁ ଅଙ୍ଗରାଜ୍ୟର ଅଧିଶ୍ୱର ରୂପେ ଅଭିଷିକ୍ତ କରୁଛି । ତା' ହେଲେ ରାଜ କୁମାର ଅର୍ଜୁନ ଅଙ୍ଗରାଜାଙ୍କ ସହିତ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେବାରେ ଥିବା ଅନ୍ତରାୟ ଦୂର ହୋଇଯିବ ।''

କୌଣସି ଉତ୍ତରକୁ ଅପେକ୍ଷା ନକରି ଦୁର୍ଯ୍ୟୋଧନ ସେହି କ୍ରୀଡା ପ୍ରାଙ୍ଗଣରେ ହିଁ ଅଭିଷେକର ଆୟୋଜନ କରିଦେଲେ । ବର୍ତ୍ତମାନ କର୍ଣ୍ଣ ଅଙ୍ଗରାଜ୍ୟର ଅଧିପତି । ଆଶ୍ୱସ୍ତ ଥିଲି, ବଂଶ ପରିଚୟ ଯୋଗୁ କର୍ଣ୍ଣ ପ୍ରତିଯୋଗିତାରେ ଭାଗ ନେଇ ପାରିବ ନାହିଁ । ମାତ୍ର ବର୍ତ୍ତମାନ ଯାହା ଘଟିଗଲା, ସେଥିରେ ଦୁଇ ଭାଇଙ୍କ ମଧ୍ୟରେ ଯୁଦ୍ଧ ନିଶ୍ଚୟ ଲାଗିଯିବ ! ମୋର ବା କି ଶକ୍ତି ଅଛି ଯେ ମୁଁ ଏ ପ୍ରକାର ଦ୍ୱନ୍ଦ୍ୱକୁ ପ୍ରତିହତ କରି ପାରିବି ? ପାରନ୍ତି, ମାତ୍ର ଏବେ ମୁଁ ସଂପୂର୍ଣ୍ଣ ବିବଶ । ଭାଇ ଭାଇ ପାଇଁ ଜୀବନ ଦେବାକୁ ପଛାଉ ନଥିବା ବେଳେ ମୋ ଅପକର୍ମର ଫଳ ସ୍ୱରୂପ ଏବେ ଭାଇ ଭାଇର ଜୀବନ ନେବାକୁ ଆଗେଇ ଆସୁଛି । ଏ ଅଘଟଣ କେବଳ ମୋ ଯୋଗୁ ଘଟିବାକୁ ଯାଉଛି ସିନା ! ହାୟ, ପ୍ରାଣ ମୋର ବ୍ୟାକୁଳିତ ହୋଇ ଉଠିଲା, ମୁଁ ନିଜକୁ ସମ୍ଭାଳି ପାରିଲି ନାହିଁ । ମନ ହେଲା- ଦୁଇ ପୁଅଙ୍କୁ କୋଳେଇ ନେଇ ଏ ଆସନ୍ନ ବିପଦର ଅବସାନ ଘଟାଇ ଦେବି । ମାତ୍ର ପାରିଲି ନାହିଁ । ଆତ୍ମ ମର୍ଯ୍ୟାଦା ମୋର ଗତିରୋଧ କରି ପକାଇଲା । ମୁଁ ସତ୍ୟ ପ୍ରକାଶ କରିବାକୁ ଭୟ କରି ଆତ୍ମ-ସମ୍ମାନକୁ ଯାବୁଡି ଧରିଲି ।

ଠିକ୍ ଏହି ସମୟରେ ଏକ ଅଘଟଣ ଘଟିଗଲା । କେଜାଣି କେଉଁ ସୂତ୍ରରୁ ସାରଥୀ ଅଧିରଥ ଜାଣିବାକୁ ପାଇଲା,- ତା' ପୁଅ କର୍ଣ୍ଣ ହସ୍ତିନା ରାଜପୁତ୍ରମାନଙ୍କ ସହିତ ବିବାଦ-ଲିପ୍ତ ହୋଇ ପଡ଼ିଛି । ସେ ଆଉ ଥୟ ଧରି ରହି ପାରିଲା ନାହିଁ । କ୍ଷିପ୍ର ଗତିରେ କ୍ରୀଡ଼ା ପ୍ରାଙ୍ଗଣ ମଧ୍ୟରେ ପ୍ରବେଶ କରି ଉଚ୍ଚ ସ୍ୱରରେ କହିଲା,- ''ବସୁରେ, ତୁ କେଉଁଠି ଅଛୁ ମୋ ପାଖକୁ ଚାଲିଆ ବାପା ।'' ପିତାଙ୍କ ବ୍ୟାକୁଳିତ କଣ୍ଠସ୍ୱର ଶୁଣି କର୍ଣ୍ଣ ତୁରନ୍ତ ଆସି ଅଧିରଥଙ୍କ ଚରଣ ବନ୍ଦନା କଲା । ପିତା-ପୁତ୍ରକୁ ତଳୁ ଉଠାଇ କୋଳାଗ୍ରତ କଲେ ଓ ତା'ର ସର୍ବାଙ୍ଗ ଆଉଁଶିବାରେ ଲାଗିଲେ । ସେ ଏପରି ଭାବ-ବିହ୍ୱଳ ଓ ବାତ୍ସଲ୍ୟ ବିମୁଗ୍ଧ ହୋଇ ଯାଇଥାନ୍ତି ଯେ ତାଙ୍କ ପାଟିରୁ କଥା ପଦେବି ବାହାରୁ ନଥାଏ । ଏ ସ୍ୱର୍ଗୀୟ ମମତାକୁ ଲକ୍ଷ୍ୟକରି ମୁଁ ନିଜକୁ ଶତ ଧିକ୍କାର କରିବାରେ ଲାଗିଲି । ମୋର ମନ ମୋତେ ଘୃଣା କରିବାରେ ଲାଗିଲା । ମୁଁ ଇତସ୍ତତଃ ହୋଇ ଭାବିଲି - ଏ ଅଧିରଥ କିଏ ? କର୍ଣ୍ଣ ସହିତ ଏହାର ସଂପର୍କ କ'ଣ ? ଯାହାକୁ ମୋ ପୁଅ, ମୋ ଧନ କହି ସେ କୋଳାଗ୍ରତ କରୁଛି, ତା ସହିତ ତା'ର ରକ୍ତ ସଂପର୍କ ଅଛି କି ? କର୍ଣ୍ଣ ଅଧିରଥର ପାଳିତ ପୁତ୍ର । ମୁଁ ତା'ର ପ୍ରକୃତ ମାଆ । ମୋରି ଚକ୍ଷୁ ସମକ୍ଷରେ ଯାହା ସବୁ ଘଟିଗଲା, ମୁଁ ତା'ର ନୀରବ ଦ୍ରଷ୍ଟା ହୋଇ ରହିଗଲି ସିନା, ପାଟି ଫିଟାଇବାର ସତ୍ ସାହସ ମୋର ନଥିଲା । ଅଧିରଥ ଶୈଶବରୁ ତାକୁ ପିତାର ସ୍ନେହ ଓ ବାତ୍ସଲ୍ୟ ଦେଇ ଆସିଛି । ନିଜର ଜନ୍ମିତ ପୁତ୍ରଠାରୁ କୌଣସି ଗୁଣରେ ଊଣା ଦୃଷ୍ଟିରେ ଦେଖିନାହିଁ । ମାତ୍ର ମୁଁ ତା ପାଇଁ କ'ଣ କରିଛି ? ମୋ ଆଖି ଆଗରେ ମୋ ଅଧିକାରକୁ ଜଣେ ଇତର ଲୋକ ଛଡାଇ ନେଉଥିବା ଦେଖି ମୁଁ ବିଦ୍ରୋହୀ ହୋଇ ଉଠୁଛି । କିନ୍ତୁ କାହିଁକି ? କେଉଁ ଅଧିକାର ବଳରେ କର୍ଣ୍ଣକୁ ମୋ ପୁଅ ବୋଲି କହିବି ? ମୁଁ ତାକୁ କ'ଣ ଦେଇଛି ? ମମତା ? ସ୍ନେହ ? ବାତ୍ସଲ୍ୟ ? ନାଁ ଆଦୌ ନୁହେଁ । ଏ ସବୁ କର୍ଣ୍ଣର ଉଚିତ ପ୍ରାପ୍ୟ ହେଲେ ମଧ୍ୟ ମୁଁ ତାକୁ ତହିଁରୁ ବଞ୍ଚିତ କରିଛି । ବରଂ ଜାଣି ଶୁଣି ତାକୁ ହତ୍ୟା କରିଛି କହିଲେ ଆଦୌ ଭୁଲ ହେବ ନାହିଁ ।

ମୁଁ ଏହିପରି ନିଜକୁ ଧିକ୍କାର କରୁଥିବା ବେଳେ ହଠାତ୍ ଭୀମ ଗର୍ଜନ କରି କହିଉଠିଲା,- ''ହେ ସୂତପୁତ୍ର, ବଂଶ ପରମ୍ପରାକୁ ବିସ୍ମୃତ ନହୋଇ କୌଳିକ ବୃତ୍ତିରେ ମନୋନିବେଶ କର । ତୁମ ପରି ଏକ ଇତର ଲୋକକୁ ହତ୍ୟା କରି ଅର୍ଜୁନ ତା'ର ଧନୁତୂଣୀରକୁ ଅପବିତ୍ର କରିବ ନାହିଁ ।''

ଭୀମର ଏ କଟୂମନ୍ତବ୍ୟରେ ଦୁର୍ଯ୍ୟୋଧନ ଉତ୍କ୍ଷିପ୍ତ ହୋଇ କହିଲା,- ରସନା ସଂଯତ କର । ନଚେତ୍ ପରିଣତି ଭୟାବହ ହୋଇ ଉଠିବ । କୁଳ, ମାନ, ବଂଶ-ପରମ୍ପରା ସହିତ ପୌରୁଷ ସମ୍ବନ୍ଧିତ ନୁହେ । କିଏ କେଉଁକୂଳରେ ଜନ୍ମହେବ, ତାହା ଦୈବର ନିୟନ୍ତ୍ରଣାଧୀନ । ମାତ୍ର ବୀରତ୍ୱ, ପୌରୁଷ ଆଦି ମନୁଷ୍ୟର ସ୍ୱୀୟ ସାଧନାର ଫଳ । ଏକଥା ଭୁଲିଯିବା ଉଚିତ ନୁହେଁ ଯେ,- ତୁମ ପାଞ୍ଚଭାଇଙ୍କର ପରିଚୟ ପ୍ରଶଂସନୀୟ ନୁହେ । ମାତା ଏକ ହେଲେ ମଧ୍ୟ ତୁମ୍ଭମାନଙ୍କର ପିତୃ-ପରିଚୟ ଭିନ୍ନ । ଏପରି ସନ୍ତାନ ମାନଙ୍କୁ ଜାରଜ କୁହାଯାଏ । ଆଉ ଅଧିକ କିଛି କହିବାକୁ ମୁଁ ଇଚ୍ଛା କରୁନାହିଁ । ଯାହାକୁ ତୁ ସୂତପୁତ୍ର କହି ତାଛଲ୍ୟ କରୁଛୁ, ତାଙ୍କ ଶରୀରର ଦିବ୍ୟ ତେଜ ଓ ସହଜାତ କବଚ କୁଣ୍ଡଳ ପ୍ରତି ତୋର ଗର୍ବସ୍ଫୀତ ଦୃଷ୍ଟି ବୋଧହୁଏ ଏ ଯାଏ ପଡିନାହିଁ । ସ୍ୱର୍ଗୀୟ ଜ୍ୟୋତି ବିମଣ୍ଡିତ ଏହି ତେଜୋଦୀପ୍ତ ଯୁବକ କଦାପି ଇତର କୁଳରଂ ହୋଇ ନପାରନ୍ତି ।''

ମୁଁ ପଥର ପରି ସବୁ ଶୁଣୁଥାଏ ସିନା କିଛି କହିବାର ସତ୍ ସାହସ ନଥାଏ । ଦୁର୍ଯ୍ୟୋଧନର କଥା ଗୁଡ଼ାକ ଶାଣିତ ଓ କ୍ରୋଧୋଦ୍ଦୀପକ ହେଲେ ମଧ୍ୟ ସତ୍ୟ । ଏ ସତ୍ୟ ମୋ ବ୍ୟତୀତ ଅନ୍ୟ କିଏ ବା ଜାଣିବ କିପରି ? କର୍ଣ୍ଣର ଜନ୍ମ-ରହସ୍ୟ ଉଦ୍‌ଘାଟିତ ହୋଇ ପାରିଲେ ଆଜିର ଏ ବୈରତା ଭ୍ରାତୃତ୍ୱରେ ରୂପାନ୍ତରିତ ହୋଇ ପାରନ୍ତା । ମାତ୍ର ମୋର ଏ ପ୍ରକାର କଳ୍ପନା ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ଫଳ ସ୍ୱରୂପ ଆଜିଠାରୁ ମୋ ଗର୍ଭଜାତ ସନ୍ତାନ କର୍ଣ୍ଣ ଆମ୍ଭମାନଙ୍କର ପରମ-ଶତ୍ରୁ କୌରବଙ୍କ ପକ୍ଷ ଗ୍ରହଣ କରି ମୋ ମୁଣ୍ଡବ୍ୟଥାର କାରଣ ହୋଇଗଲା ।

ସନ୍ଧ୍ୟା ହୋଇ ଆସିବାରୁ କ୍ରୀଡା ପ୍ରଦର୍ଶନ ବନ୍ଦ କରିଦିଆଗଲା । ଦର୍ଶକ ଓ ଅନ୍ୟମାନେ ଯେ ଯାହା ଗନ୍ତବ୍ୟ ସ୍ଥାନକୁ ଚାଲିଗଲେ । ଏକ ଆସନ୍ନ ବିପଦରୁ ରକ୍ଷା ପାଇ ଯିବାରୁ ମୁଁ ଈଶ୍ୱରଙ୍କୁ ନିଜର କୃତଜ୍ଞତା ଜଣାଇବାରେ ଲାଗିଲି ।

ପରଦିନଠାରୁ ମୁଁ ଭୀମ ବା ଅର୍ଜୁନର ମୁହଁକୁ ସିଧାସଳଖ ଚାହିଁ ପାରିଲି ନାହିଁ । ଉଦ୍‌ଗତ କ୍ରୋଧକୁ ମନରେ ଚାପିରଖିବାକୁ ବାଧ୍ୟ ହୁଏ ସିନା ପ୍ରକାଶ କରିବାର ଉପାୟ ନଥାଏ । ଯାହା ସବୁ ଘଟି ଯାଉଛି, ସେ ସବୁର ମୂଳ-ଉତ୍ସ ମୁଁ ନିଜେ ହୋଇ ଥିବାରୁ ଅଯଥା କାହା ଉପରେ ରୋଷ ବା ବିରକ୍ତି ପ୍ରକାଶ କରିବା ନିତାନ୍ତ ଅନ୍ୟାୟ ମନେ ହୁଏ । ଭୀମ ବା ଅର୍ଜୁନ ଯଦି କର୍ଣ୍ଣର ପ୍ରକୃତ ପରିଚୟ ପାଇଥାଆନ୍ତେ ତେବେ ସେମାନେ କ'ଣ ପରସ୍ପର ପ୍ରତି ଏପରି କଟୂକ୍ତି ପ୍ରୟୋଗ

କରିଥାନ୍ତେ ? ଭାଇକୁ ଭାଇର ଶତ୍ରୁ କରିଦେବା, ସେମାନଙ୍କୁ ପରସ୍ପର ଠାରୁ ଦୂରେଇ ରଖିବା ପରି ଘୃଣ୍ୟ କାର୍ଯ୍ୟର ମୂଳ ମୁଁ । ମୋର ଅତୀତ ଅପକର୍ମ ପାଇଁ ମନରେ ନିଜକୁ ଧିକ୍‌କାର କରିବାରେ ଲାଗିଲି । ତୀବ୍ର ବିତୃଷ୍ଣା ଜାତ ହେଲା । ମୋ ଜୀବନ ଏକ ଭିନ୍ନ ଉପାଦାନରେ ଗଢ଼ା, ସବୁ ସହି ବଞ୍ଚି ରହିବା ପାଇଁ ମୋର ଜନ୍ମ । ସମସ୍ତ ବେଦନାକୁ ଚାପି ରଖି ମୁଁ ପୁଣି ପୂର୍ବପରି ଚଳିବାରେ ଲାଗିଲି ।

କର୍ଣ୍ଣ ସଂପୂର୍ଣ୍ଣ ରୂପେ କୌରବ ମାନଙ୍କ ଅନ୍ତରଙ୍ଗ ବନ୍ଧୁ ହୋଇଗଲା । ଅଳ୍ପଦିନ ପରେ ଦ୍ରୋଣପୁତ୍ର ଅଶ୍ୱତ୍ଥାମା କୌରବମାନଙ୍କ ପକ୍ଷଭୁକ୍ତ ହେବା ସମ୍ବାଦରେ ମୋର ଚିନ୍ତା ବହୁଗୁଣ ବଢ଼ିଗଲା । ଅଶ୍ୱତ୍ଥାମା ଥିଲା ଅଦ୍ୱିତୀୟ ଧନୁର୍ଦ୍ଧର । ସ୍ୱଭାବ ଆଦରଣୀୟ ନଥିଲା ସତ, ମାତ୍ର ବୀରତ୍ୱରେ ସେ ଅଗ୍ରଗଣ୍ୟ ଥିଲା । ପିତା ଦ୍ରୋଣାଚାର୍ଯ୍ୟଙ୍କ ଏକମାତ୍ର ପୁତ୍ର ହୋଇ ଥିବାରୁ ଲାଳନର ଆତିଶଯ୍ୟ ତାକୁ ଉତ୍ତମ-ଚରିତ୍ରବାନ ହେବାର ସୁଯୋଗ ଦେଇନଥିଲା । ସେ ଯାହା ହେଉ କୌରବମାନଙ୍କ ଶକ୍ତି ବୃଦ୍ଧି ମୋ ପିଲାଙ୍କ ପାଇଁ- ''ବକାନାଂ ଦୀର୍ଘ କଣ୍ଠତ୍ୱ ସଫରୀଣାଂ ବିପତ୍ତୟେ'' ପରି ହୋଇ ଆସିଲା ।

ରାଜ-ପ୍ରାସାଦରେ ରହି ମଧ୍ୟ ଆମେ ଏକ ଜ୍ୱାଳାମୁଖୀ ଉପରେ ବସିଥିବା ପରି ଅନୁଭବ କରୁଥାଉ । କେତେବେଳେ ଉଦ୍‌ଗୀରଣ ଆରମ୍ଭ ହୋଇ ଆମକୁ ଭସ୍ମ କରିଦେବ, ଏଇ ଚିନ୍ତା ମୋତେ ସର୍ବଦା ଶଙ୍କାକୁଳ କରିରଖିଥାଏ । ଏପରି ପରିସ୍ଥିତିରେ ମୁଁ ବିବ୍ରତ ଥିବା ବେଳେ କୁଚକ୍ରୀ, କୂଟବୁଦ୍ଧି ସୁବଳ ନନ୍ଦନ ଶକୁନୀ କୌରବ ମାନଙ୍କର ପରାମର୍ଶଦାତା ରୂପେ ହସ୍ତିନା ଆସିଗଲେ । ଧୀରେ ଧୀରେ ଆମର ଶତ୍ରୁ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିବାରୁ ହସ୍ତିନା ରାଜପୁରୀ ଆମ ପାଇଁ ହିଂସ୍ର ମଗର, କୁମ୍ଭୀର ପୂର୍ଣ୍ଣ ସମୁଦ୍ର ସମ ହୋଇ ଉଠିଲା ।

ଉପାୟ ଶୂନ୍ୟ ହୋଇ ପଡୁଥିବା ସମୟରେ ମୁଁ ବିଦୁରଙ୍କ ସାହାଯ୍ୟ ତଥା ପରାମର୍ଶ ପାଇଁ ଧାଇଁ ଯାଏ । ସେ ଏକମାତ୍ର ମହତ-ବ୍ୟକ୍ତି ଯେ କି ସବୁ ସମୟରେ ମୋତେ ସାହସ ଓ ସାନ୍ତ୍ୱନା ଦେଇ ଧୈର୍ଯ୍ୟ ଧରିବାକୁ ପରାମର୍ଶ ଦେଇଥାନ୍ତି ।

ଦିନେ ଦେଢ଼ଶୁର କହିଲେ,- ''ଦେଖ, ସାମାନ୍ୟ ସାମାନ୍ୟ କାରଣରୁ ପିଲାମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେଉଛି । ବାରଣାବତ ଠାରେ ଆମର ଏକ ସୁଦୃଶ୍ୟ ପ୍ରାସାଦ ନିର୍ମାଣ କରାଯାଇଛି । ତୁମେ ପିଲାମାନଙ୍କ ସହ କିଛିଦିନ ପାଇଁ

ସେଇ ନବ ନିର୍ମିତ ପ୍ରାସାଦରେ ଅବସ୍ଥାନ କଲେ ଭଲ ହୁଅନ୍ତା । ସେଠାରେ ତୁମେ ନିଶ୍ଚିନ୍ତରେ ରହିବା ସହିତ ପିଲାମାନେ ମଧ୍ୟ ପଛକଥା ସବୁ ଧୀରେ ଧୀରେ ଭୁଲି ଯାଆନ୍ତେ ।''

ଦେଢଶୁରଙ୍କ ଏ ପ୍ରସ୍ତାବ ମୋତେ ଭଲ ଲାଗିଲା । ଭାବିଲି କିଛି ନହେଲେ ହସ୍ତିନା ରାଜ-ପ୍ରାସାଦରୁ ଦୂରରେ ରହିପାରିଲେ ଆମେ ଅପାର ଶାନ୍ତି ଲାଭ କରି ପାରିବୁ । କେବଳ ଶାନ୍ତି ପାଇବା ଆଶାରେ ମୁଁ ଦେଢଶୁରଙ୍କ ପ୍ରସ୍ତାବରେ ସମ୍ମତ ହେଲି । ମାତ୍ର କାହୁଁ ଜାଣିବି ଯେ ଦେଢଶୁର ଶକୁନୀ ଓ ଦୁର୍ଯ୍ୟୋଧନଙ୍କ କୂଟଚକ୍ରାନ୍ତକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ମୋତେ ବାରୁଣାବତର ଶାନ୍ତିମୟ ପରିବେଶକୁ ପଠାଉଛନ୍ତି । ହସ୍ତିନାରେ ଯେଉଁ କାର୍ଯ୍ୟ ଆଦୌ ସମ୍ଭବପର ନୁହେଁ, ବାରୁଣାବତରେ ତାହା ଅନାୟାସରେ ସାଧିତ ହୋଇ ପାରିବ । ସେଠାରେ ଆମକୁ ଜୀଅନ୍ତା ପୋଡି ପାଉଁଶ କରିଦେଲେ ମଧ କେହି କିଛି ଜାଣି ପାରିବେ ନାହିଁ । ଧନ୍ୟ ମହାରାଜା ଧୃତରାଷ୍ଟ୍ର , ତୁମ ନିଷ୍କପଟ ଉଦାର ହୃଦୟର ପଟାନ୍ତର ନାହିଁ । ତୁମ ଅନୁଗ୍ରହ ମଧ୍ୟ ପ୍ରାଣନାଶର ବାର୍ତ୍ତା ବହନ କରିଥାଏ । କଥାରେ ଅଛି- ଅବ୍ୟବସ୍ଥିତ ଚିତ୍ତସ୍ୟ,

ପ୍ରସାଦୋଽପି ଭୟଙ୍କର

ଅଶାନ୍ତିରୁ ରକ୍ଷା ପାଇବା ପାଇଁ ମୁଁ ବାରଣାବତ ଯିବାକୁ ରାଜି ହୋଇଥିଲି, ମାତ୍ର ତା' ପଛରେ ଛପି ରହିଥିବା ହୀନ ଚକ୍ରାନ୍ତର ଗନ୍ଧ ମଧ୍ୟ ମୋତେ ଅଜ୍ଞାତ ଥିଲା ।

ବାରଣାବତ ଯିବାର ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହେଲା । ଆମେ ଯାତ୍ରାରମ୍ଭ କରୁଥବା ସମୟରେ ବିଦୁର ଯୁଧିଷ୍ଠିରକୁ ସାଙ୍କେତିକ ଭାଷାରେ କିଛି କହିଲେ । ମୁଁ ବୁଝି ପାରି ନଥିଲେ ମଧ୍ୟ ଯୁଧିଷ୍ଠିର ''ସବୁକଥା ଉତ୍ତମରୂପେ ଅବଗତ ହେଲି'' ବୋଲି ଜଣାଇ ଦେଲା ।

ମନ୍ତ୍ରୀ ପୁରୋଚନ ବାରଣାବତରେ ଆମ ପାଇଁ ଏକ ସୁଦୃଶ୍ୟ ପ୍ରାସାଦ ନିର୍ମାଣ କରିଥାଏ । ପ୍ରାସାଦର ପରିପାଟୀ ବେଶ୍ ଆକର୍ଷଣୀୟ ଥିଲା । ହସ୍ତିନାର କଣ୍ଟକିତ ପରିବେଶଠାରୁ ଏହା ଶତଗୁଣ ଶାନ୍ତିପ୍ରଦ ହେବ ଭାବି ମୁଁ ଆଶ୍ୱସ୍ତ ହେଲି । ମାତ୍ର ଦିନ କେଇଟା ନଯାଉଣୁ ମୁଁ ମୋ ହିତାକାଙ୍କ୍ଷୀ ଦେଢଶୁର ଓ ଉଦାର ହୃଦୟ କୌରବମାନଙ୍କ ହୀନଚକ୍ରାନ୍ତ ସଂପର୍କରେ ସବିଶେଷ ଅବଗତ ହୋଇ ଏକାନ୍ତ ଦୁଃଖିତ ଓ ଅବସନ୍ନ ହୋଇ ପଡ଼ିଲି । ଆମକୁ ଧରାପୃଷ୍ଠରୁ ସମ୍ପୂର୍ଣ୍ଣ ଲୋପ

ନକରିବା ଯାଏ କୌରବମାନେ ଶାନ୍ତିରେ ନିଃଶ୍ୱାସ ମାରି ପାରିବେ ନାହିଁ- ଏ ଧାରଣା ମୋର ଦୃଢ ହୋଇ ଆସିଲା । ଶାସ୍ତ୍ରରେ ଅଛି- ''ଚକ୍ରବତ୍ ପରିବର୍ତ୍ତନ୍ତି ସୁଖାନିଚ ଦୁଃଖାନିଚ ।'' ମାତ୍ର ମୋ ଭାଗ୍ୟର ଚକ୍ର ତ ସମ୍ପୂର୍ଣ୍ଣ ଗତି ରହିତ ହୋଇଗଲା ପରି ମନେ ହେଉଛି । ଦୁଃଖ ପରେ ସୁଖ ନ ଆସି ଦୁଃଖପରେ ଦୁଃଖହିଁ ପୁଣି ମାଡି ଆସୁଛି ।

ଏକସ୍ୟ ଦୁଃଖସ୍ୟ ନ ଯା ବଦନ୍ତଂ
ତାବଦ୍ଵିତୀୟ ସମୁପସ୍ଥିତମେ ।

ଏହି ଶବ୍ଦୋକ୍ତି ମୋ ପାଇଁ ଏକାନ୍ତ ପ୍ରଜୁଯ୍ୟ ବୋଲି ମୋର ଦୃଢ ଧାରଣା ହେଲା । ତ୍ରସ୍ତା ହରିଣୀ ପରି ମୁଁ ଶଙ୍କାକୁଳ ଅବସ୍ଥାରେ ଦିନ କାଟିବାରେ ଲାଗିଲି ।

କିଛିଦିନପରେ ଆମ ପାଖରେ ଜଣେ ଅଚିହ୍ନା ଲୋକ ଆସି ପହଞ୍ଚିଲା । ପଚାରି ବୁଝିଲି- ଏକ ଗୋପନୀୟ କାର୍ଯ୍ୟ ସାଧନ ପାଇଁ ବିଦୂର ତାକୁ ଏଠାକୁ ପଠାଇଛନ୍ତି । ଲୋକଟି ପରିଚୟ ଦେଇ ସଙ୍ଗେ ସଙ୍ଗେ ତା' କାମ ଆରମ୍ଭ କରିଦେଲା । ଅଳ୍ପ ଦିନ ମଧ୍ୟରେ ଆମ ଶୟନ କକ୍ଷରୁ ଏକ ସୁଡ଼ଙ୍ଗ ଖୋଳାଯାଇ ଦୂରବର୍ତ୍ତୀ ବନ ପ୍ରଦେଶ ପର୍ଯ୍ୟନ୍ତ ପ୍ରସାରିତ ହୋଇଥିଲା । ସୁଡ଼ଙ୍ଗଟିର ଅଭ୍ୟନ୍ତର ବେଶ୍ ପ୍ରଶସ୍ତ ମଧ୍ୟ ଥିଲା । ଦିନବେଳେ ପିଲାମାନେ ମୃଗୟା ଉଦ୍ଦେଶ୍ୟରେ ବଣ ପାହାଡ଼ରେ ବୁଲି ସୁଡ଼ଙ୍ଗ ମଧ୍ୟରେ ବିଶ୍ରାମ କରନ୍ତି । ରାତ୍ରି ଆମ ପକ୍ଷରେ ଏକାନ୍ତ ଭୀତିପ୍ରଦ ସମୟ ରୂପେ ବିବେଚିତ ହେଉଥିଲା ।

ସବୁବେଳେ ଆମ୍ଭମାନଙ୍କୁ ପ୍ରଫୁଲ୍ଲଚିତ୍ତ ଦେଖି ଧୂର୍ତ୍ତ ପୁରୋଚନ ପୈଶାଚିକ ଆନନ୍ଦ ଅନୁଭବ କରୁଥାଏ । କୌରବମାନେ ବିଛାଇଥିବା ଜାଲ ମଧ୍ୟରେ ପାଣ୍ଡବ-ମୃଗ ପଲ୍ଲ ଅତିଶୀଘ୍ର ଧରାପଡ଼ି ମୃତ୍ୟୁ ବରଣ କରିବେ, ଏ ଧାରଣା ତା'ର ଦୃଢ ହୋଇଯାଇଥିଲା ।

ମୁଁ ଏକ ବ୍ରତ କରୁଥିଲି । ସେଇ ବ୍ରତର ଉଦ୍‌ଯାପନ ଦିନ ଏକ ବିରାଟ ଭୋଜିର ଆୟୋଜନ କରାଯାଇଥିଲା । ନଗରବାସୀ ଓ ପୁରପରିଜନ ସମସ୍ତେ ଭୋଜନ କରି ଆପ୍ୟାୟିତ ହୋଇଥିଲେ । କେତେବେଳେ କେଜାଣି ଜଣେ ଅରଣ୍ୟ-ବାସୀ ସ୍ତ୍ରୀଲୋକ ତା'ର ପାଞ୍ଚୋଟି ବଳିଷ୍ଠ ସ୍ୱାସ୍ଥ୍ୟ-ସଂପନ୍ନ ପିଲାମାନଙ୍କ ସହ ଆସି ଭୋଜି ଖାଇଲା । ମଦ ନିଶାରେ ସେମାନେ ଏତେ ବେଶୀ ଖାଇଦେଲେ ଯେ, ବସିବା ସ୍ଥାନରୁ ଆଉ ଉଠିବା ସମ୍ଭବପର ହେଲା ନାହିଁ । ସେମାନେ ସେହି ଖାଇବା ସ୍ଥାନରେ ହିଁ ଟଳିପଡ଼ିଲେ । ରାତି ବହୁତ ହୋଇ ଯାଇଥିବାରୁ ଏକଥା

କେହି ଜାଣି ପାରିଲେ ନାହିଁ ।

ଠିକ୍ ଅର୍ଦ୍ଧରାତ୍ରିକୁ ଚାରିଆଡ଼ ଶୂନ୍‌ଶାନ୍ ହୋଇ ଆସିଲା । ଏହାହିଁ ଉପଯୁକ୍ତ ସମୟ ଭାବି ବୀରୋଚନ ଆମ୍ଭମାନଙ୍କ ଶୟନ ଗୃହରେ ଅଗ୍ନି ସଂଯୋଗ କରି ନିଜ ଶୟନ କକ୍ଷରେ ଆରାମରେ ଶୋଇ ପଡ଼ିଲା । ସମସ୍ତେ ନିଦ୍ରିତ ଥିବାବେଳେ ଜାଗ୍ରତ ରହିବା ଆମ ଭାଗ୍ୟଲିପି । ଏହା ଆମପ୍ରତି ଦୈବର ଏକ ଅଭିଶାପ ବୋଲି ଆମେ ଧରିନେଇଥାଉ । ମାତ୍ର ସେହି ଅଭିଶାପ ଆଜି ଆମ ପାଇଁ ଆଶୀର୍ବାଦରେ ପରିଣତ ହୋଇଗଲା । ଅଗ୍ନି ସଂଯୋଗ ହେବାମାତ୍ରେ ଆମେ ଜାଣିଗଲୁ । ଭୀମ ତତ୍‌କ୍ଷଣାତ୍ ବୀରୋଚନର ଶୟନ କକ୍ଷରେ ତାଲା ପକାଇ ଅଗ୍ନି ସଂଯୋଗ କରିଦେଲା । ଆମ ଉଆସ ସହିତ ବୀରୋଚନର ବାସଗୃହ ମଧ୍ୟ ଧୂ ଧୂ ହୋଇ ଜଳି ଉଠିଲା । ସମୁଦାୟ ଉଆସଟି ଲାଖ ଓ ଘୃତ ଲିପ୍ତ ଝୋଟ ଆଦି ଅତ୍ୟନ୍ତ ଦାହ୍ୟ ପଦାର୍ଥରେ ନିର୍ମିତ ହୋଇଥିବାରୁ ତାହା ଶୀଘ୍ର ଶୀଘ୍ର ଜଳିବାରେ ଲାଗିଲା । କାଳ ବିଳମ୍ବ ନକରି ଆମେ ସୁଡ଼ଙ୍ଗର ଗୁପ୍ତ ପଥ ଦେଇ ଦ୍ରୁତପଦରେ ପଳାୟନ କଲୁ । ଏକଥା କେହି ଜାଣିବାର ଉପାୟ ନଥିଲା । ଅଗ୍ନି ନିର୍ବାପିତ ହେବାପରେ ସୁଡ଼ଙ୍ଗର ପ୍ରବେଶପଥ ପାଉଁଶରେ ପୋତି ହୋଇ ପଡ଼ିଥିଲା ।

ଆମେ ରାତ୍ରିର ଅନ୍ଧକାର ମଧ୍ୟରେ ଅଗ୍ରସର ହୋଇ ପ୍ରଭାତ ସମୟକୁ ଗଙ୍ଗାନଦୀ ତଟରେ ଉପସ୍ଥିତ ହେଲୁ । ସେତେବେଳକୁ ସମସ୍ତେ କ୍ଳାନ୍ତ ହୋଇ ପଡ଼ିଥାଉ । ହଠାତ୍ ଜଣେ ନାବିକ ଆସି କହିଲା,- ''ନୌକା ପ୍ରସ୍ତୁତ ଅଛି । ଆସନ୍ତୁ, ମୁଁ ଆପଣମାନଙ୍କୁ ନଦୀ ପାର କରାଇ ଦେବି ।'' ଆମେ ଖୁବ୍ ଆନନ୍ଦିତ ହୋଇ ଉଠିଥିଲେ ମଧ୍ୟ ଅଜଣା ଲୋକ ପ୍ରତି ସନ୍ଦେହ ସୃଷ୍ଟି ହେବାରୁ ଆମେ ପରସ୍ପର ଆଡ଼କୁ ଚାହିଁଲୁ । ଏହା ଦେଖି ଲୋକଟି କହିଲା,- ''ଭାବୁଛନ୍ତି କ'ଣ ? ବିଦୂର ଆପଣମାନଙ୍କ ପାଇଁ ଏ ନୌକାର ବ୍ୟବସ୍ଥା କରିଛନ୍ତି । ଆମେ ସନ୍ଦେହମୁକ୍ତ ହେବା ସଙ୍ଗେ ସଙ୍ଗେ ବିଦୂରଙ୍କୁ ଶତ ଶତ ଧନ୍ୟବାଦ ଦେବାରେ ଲାଗିଲୁ । ତାଙ୍କ ପ୍ରତି କୃତଜ୍ଞତାରେ ଆମ ହୃଦୟ ପୂରି ଉଠିଲା । ନୌକାଟି ଆମ୍ଭମାନଙ୍କୁ ନେଇ କ୍ଷିପ୍ରଗତିରେ ଅଗ୍ରସର ହେଲା । କିଛି ସମୟ ପରେ ଧୀବର ନୌକାଟି କୂଳରେ ଲଗାଇ କହିଲା,- ''ଏହି ସ୍ଥାନରେ ହିଁ ଆପଣମାନଙ୍କୁ ଛାଡ଼ି ଦେବାର ନିର୍ଦ୍ଦେଶ ଥିଲା । ମୋତେ ବିଦାୟ ଦିଅନ୍ତୁ ।'' ବିଦୂରଙ୍କ ମହନୀୟତା ସ୍ମରଣ କରି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ଭାବିଲି- ସଂସାରରେ ଏବେ ମଧ୍ୟ ଦୟାଳୁ ଓ ହୃଦୟବାନ୍ ବ୍ୟକ୍ତି ବଞ୍ଚି ରହିଛନ୍ତି ।

ରାତ୍ରିର ଗଭୀର ଅନ୍ଧକାର । ଚାଲି ଚାଲି ପାଦ ଥକି ପଡ଼ିଲାଣି । କ୍ଷୁଧା ଓ ତୃଷାରେ ଶରୀର ଅବସନ୍ନ ହୋଇ ପଡ଼ିଥାଏ । ଆଉ ଅଧିକ ଅଗ୍ରସର ହେବାର ଶକ୍ତି ମୋର ନଥିଲା । ପାଣିପାଇଁ ଆତୁର ହୋଇ ଉଠିବାରୁ ଭୀମ କିଛି ପାଣି ଆଣି ମୋତେ ଦେଲା । ପିଇବା ପରେ ମୁଁ ସେଇ ଘାସ-ଶଯ୍ୟା ଉପରେ ଶୋଇ ପଡ଼ିଲି । ମୋ ପାଖକୁ ଲାଗି ପିଲାମାନେ ମଧ ଶୋଇ ପଡ଼ିଲେ । ବିଳାସ-ଲାଳିତ ସୁକୁମାର ରାଜ-କୁମାର ମାନଙ୍କର ଶୋଚନୀୟ ଭାଗ୍ୟ ବିପର୍ଯ୍ୟୟ ଲକ୍ଷ୍ୟକରି ମୋ ହୃଦୟ ବିଦୀର୍ଣ୍ଣ ହୋଇ ଉଠିଲା ।

ମୋତେ ଛାଇ ନିଦ ଲାଗି ଯାଇଥାଏ । ହଠାତ୍ ନିଦ ଭାଙ୍ଗିଗଲା । ଦେଖିଲି ସ୍ତ୍ରୀ ଲୋକଟିଏ ମୋ ପାଦ ପାଖରେ ବସି ଚାପା କଣ୍ଠରେ କାନ୍ଦିବାରେ ଲାଗିଛି । ମୁଁ ଶୋଇବି କ'ଣ ? ଉଠିପଡ଼ି ତାକୁ ପଚାରିଲି,- ''ମା', ତୁ କିଏ ? ଏପରି କାନ୍ଦୁଛୁ କାହିଁକି ? ତୋର କ'ଣ ହୋଇଛି ?''

ଯୁବତୀଟି ଅତ୍ୟନ୍ତ ଭୟ କାତର ସ୍ୱରରେ କହିଲା,- ''ମା, ମୁଁ ରାକ୍ଷସ କନ୍ୟା ହିଡ଼ିମ୍ବା । ମୋ ଭାଇ ହିଡ଼ିମ୍ବ ଏ ବଣ ମୂଲକର ରାଜା । ପାଣ୍ଡବମାନେ ଏଠାକୁ ଆସିବା ଜାଣି ସେମାନଙ୍କୁ ଧରି ଆଣିବା ପାଇଁ ଭାଇ ମୋତେ ପଠାଇଥିଲା । ଆଦେଶ ପାଳନ କରି ମୁଁ ଆସିଲି । ଆପଣଙ୍କ ପାଖରେ ଭୀମଙ୍କୁ ଦେଖି ପ୍ରଥମ-ଦର୍ଶନରେ ହିଁ ମୁଁ ଏକାନ୍ତ ପ୍ରଣୟାସକ୍ତ ହୋଇ ପଡ଼ିଲି । ଦୀର୍ଘ ଦିନ ହେଲା ପୁରୁଷ ମୁଖ ଦର୍ଶନରୁ ବଞ୍ଚିତା ହୋଇ ମୁଁ ଏକ ପ୍ରକାର ବନ୍ଦିନୀ ଜୀବନ ଯାପନ କରୁଥିଲି । ଆସିଥିଲି ଆପଣମାନଙ୍କୁ ବାନ୍ଧି ନେଇ ଭାଇ ପାଖରେ ପହୁଞ୍ଚାଇ ଦେବାକୁ, ମାତ୍ର ଏଠାକୁ ଆସି ଭୀମଙ୍କ ପ୍ରେମ ଜାଲରେ ନିଜେ ଛନ୍ଦି ହୋଇ ପଡ଼ିଲି । ପାଣ୍ଡବମାନଙ୍କୁ ହତ୍ୟା କରିବା କଥା ସଂପୂର୍ଣ୍ଣ ଭୁଲିଯାଇ ନିଜକୁ ପ୍ରଣୟିନୀ ରୂପେ ଭୀମଙ୍କ ଚରଣ ତଳେ ସମର୍ପଣ କରିଦେଇଛି । ବର୍ତ୍ତମାନ ଭୀମ ଏଠାରୁ ଯାଇ ହିଡ଼ିମ୍ବ ସହିତ ମଲ୍ଲଯୁଦ୍ଧରେ ବ୍ୟାପୃତ । ଭାଇ ଯଦି ତାଙ୍କ ହାତରେ ମୃତ୍ୟୁ ବରଣ କରେ, ତେବେ ସେ କଦାପି ମୋତେ କ୍ଷମା କରିବେ ନାହିଁ । ମୁଁ ପାଣ୍ଡବମାନଙ୍କର କୌଣସି ଅନିଷ୍ଟ କରିବାକୁ ଆସିନାହିଁ । ଏତିକି କଥା ଭୀମଙ୍କୁ ବୁଝାଇବାକୁ ହୁଏତ ମୋତେ ବେଳ ମିଳିବ ନାହିଁ । ଭାଇଙ୍କ ପରେ ପରେ ମୋର ମୃତ୍ୟୁ ନିଶ୍ଚିତ ଜାଣି ମୋର ସର୍ବାଙ୍ଗ ଥରି ଉଠୁଛି । ପାଟିରୁ କଥା ବାହାରୁ ନାହିଁ । ମା, ମୁଁ ଆପଣଙ୍କ ପାଦତଳେ ଶରଣ ପ୍ରାର୍ଥନା କରୁଛି । ମୋ ଜୀବନ ରକ୍ଷା କରନ୍ତୁ ।''

ଏତିକିବେଳେ ଅନ୍ୟ ଚାରିଭାଇଙ୍କ ନିଦଭାଙ୍ଗିଗଲା । ଭୀମ ହିଡିମ୍ବ ସହିତ ଯୁଦ୍ଧରତ ଥିବା ଜାଣି ସମସ୍ତେ ତାକୁ ସାହାଯ୍ୟ କରିବା ପାଇଁ ଅଗ୍ରସର ହେଲେ । ଭାଇମାନେ ପହଞ୍ଚିବା ପୂର୍ବରୁ ଭୀମ ହିଡିମ୍ବକୁ ଏକାକୀ ହତ୍ୟା କରି ସାରିଥିଲା ।

ହିଡିମ୍ବାର ଆଶଙ୍କା ସତ୍ୟରେ ପରିଣତ ହେଲା । ଭୀମ ନିଶ୍ଚୟ ତାକୁ ଅତି ନିର୍ଦ୍ଦୟ ଭାବରେ ହତ୍ୟା କରିବ, ଏଥିରେ ତା'ର ଆଉ ସନ୍ଦେହ ରହିଲା ନାହିଁ । ଅନ୍ୟ ଉପାୟ ନଦେଖି ହିଡିମ୍ବା ମୋ ପାଦକୁ ଯାବୁଡି ଧରି କାନ୍ଦିବାକୁ ଲାଗିଲା । ତା'ର ଅସହାୟତାକୁ ହୃଦୟଙ୍ଗମ କରି କହିଲି,- ''ତୁ ନିଶ୍ଚିନ୍ତ ରହ । କେହି ତୋର କେଶାଗ୍ର ମଧ୍ୟ ସ୍ପର୍ଶ କରିବାର ଦୁଃସାହସ କରି ପାରିବେ ନାହିଁ । ପୁତ୍ରମାନେ ମୋର ଅତ୍ୟନ୍ତ ବଳଶାଳୀ, ମହାଧନୁର୍ଦ୍ଧର ମାତ୍ର ମୋ ଆଦେଶ ଅବମାନନା କରିବାର ଧୃଷ୍ଟତା କେହି କରି ପାରିବେ ନାହିଁ ।

ମୋ କଥାରେ ହିଡିମ୍ବା ଆଶ୍ୱସ୍ତ ହୋଇ କହିଲା,- ''ମା, ଭାଇ ମୋର ଏ ବଣ ମୁଲକର ରାଜା ଥିଲା । ବର୍ତ୍ତମାନ ସେ ମୃତ । ମୁଁ ଦୀର୍ଘକାଳ କୁମାରୀ ବ୍ରତ ପାଳନ କରି ଭାଇ ପାଖରେ ଥିଲି । ଦୈବ ଯୋଗରୁ ପ୍ରଥମ ଦର୍ଶନରୁହିଁ ମୁଁ ଭୀମଙ୍କ ପ୍ରତି ଏକାନ୍ତ ଭାବରେ ପ୍ରଣୟାସକ୍ତ ହୋଇ ପଡିଛି । ନାରୀ ହୋଇ ଆପଣ ଆଉ ଜଣେ ନାରୀ ହୃଦୟର ବ୍ୟଥା, ପ୍ରେମ ଓ ପ୍ରଣୟକୁ ନିଶ୍ଚୟ ଉପଲବ୍ଧି କରି ପାରିବେ । ଆପଣଙ୍କ ପୁତ୍ରକୁ ମୁଁ ମନେ ମନେ ପତିରୂପେ ବରଣ କରି ସାରିଛି । କୌଣସି ମତେ ପଛକୁ ଫେରିବା ଆଉ ସମ୍ଭବ ନୁହେଁ । ବ୍ୟର୍ଥ ହେଲେ ହସି ହସି ମୃତ୍ୟୁକୁ ଆଲିଙ୍ଗନ କରିବାକୁ ମୁଁ ତିଳେ ହେଲେ ଭୟ କରିବି ନାହିଁ । ଆପଣ ଏକମାତ୍ର ବ୍ୟକ୍ତି ଯେ କି ମୋ ମନକଥା ଭୀମଙ୍କୁ ବୁଝାଇ ତାଙ୍କ କ୍ରୋଧକୁ ପ୍ରେମରେ ରୂପାନ୍ତରିତ କରି ପାରିବେ ।''

ମୁଁ ହିଡିମ୍ବାର ସ୍ପଷ୍ଟୋକ୍ତିରେ ଅଭିଭୂତ ହୋଇ ପଡିଲି । ମନେ ମନେ ତା'ର ଦୃଢତାକୁ ପ୍ରଶଂସା ନକରି ରହି ପାରିଲି ନାହିଁ । ଦେଖିଲି- ପ୍ରେମର ସ୍ୱର୍ଗୀୟ ପ୍ରଭାବ ହିଡିମ୍ବା ହୃଦୟର ଆସୁରୀ ପ୍ରକୃତିକୁ ଲୋପକରି ତାକୁ ଏକ ସଚ୍ଚା ପ୍ରଣୟିନୀରେ ପରିବର୍ତ୍ତିତ କରି ଦେଇଛି । ବିନା ବିଚାର, ବିନା ସ୍ୱୀକୃତିରେ ସେ ଭୀମକୁ ନିଜ ହୃଦୟ ସିଂହାସନରେ ଅଭିଷିକ୍ତ କରି ସାରିଲାଣି । ଖାଲି ସେତିକି ନୁହେଁ ବିଫଳ ମନୋରଥ ହେଲେ ମୃତ୍ୟୁବରଣ କରିବା କଥା ମଧ୍ୟ କହି ସାରିଲାଣି । ଧନ୍ୟ ହିଡିମ୍ବା, ଧନ୍ୟ ତୋର ଅନାବିଳ ପ୍ରେମ । କଥାରେ ଅଛି-

'ଢ଼ଳିଗଲା ବନ ଭଳିଗଲା ମନ, ଆଉ କି ଆସଇ ଫେରି ।'
ହିଡିମ୍ବାର ମନ ଭଳି ଯାଇଛି । ସେ ଆଉ କୌଣସି ମତେ ପଛକୁ ଫେରି ପାରିବ ନାହିଁ । ତା' ପ୍ରତି ମନରେ ମୋର ଖୁବ୍ ଦୟା ହେଲା । ଆଶ୍ୱାସନା ଦେଇ କହିଲି,- ''ତୁ ଯାହା ଚାହୁଁଛୁ ତା' ନିଶ୍ଚୟ ପାଇବୁ । ମନରୁ ଦୁଃଖ, ଆଶଙ୍କା ଓ ଭୟ ଦୂରକରି ନିଶ୍ଚିନ୍ତ ରହ ।''

ହିଡିମ୍ବାର ମୁଖ-ମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା । ସେ ମୋ ପାଦ ଉପରେ ମୁଣ୍ଡ ଥାପି କହିଲା,- ''ମା, ଭାଇର ମୃତ୍ୟୁ ମୋତେ ଅକଥନୀୟ ଯନ୍ତ୍ରଣା ଦେଉଛି । ମାତ୍ର ଆପଣଙ୍କ ଆଶୀର୍ବାଦରୁ ଏ ବଣ ରାଇଜ ପାଇଁ ଜଣେ ରାଜା ମିଳିଯିବେ, ଏଇ ଆଶାରେ ମୁଁ ଉଲ୍ଲସିତ ହୋଇ ଉଠୁଛି ।'' ଚମକି ପଡ଼ିଲି । ଭାବିଲି ଏ ରାକ୍ଷସୀଟା ଭୀମକୁ ସବୁଦିନ ପାଇଁ ତା' ପ୍ରେମ ଫାଶରେ ବାନ୍ଧି ଏ ବଣରେ ରଖିବାକୁ ମନସ୍ଥ କରିଛି କି ? ସଙ୍ଗେ ସଙ୍ଗେ ପଚାରିଦେଲି- ହିଡିମ୍ବା, ତୁ କ'ଣ ଚାହୁଁ ସ୍ପଷ୍ଟ କରି କହ । ଅସୁରୀ ମାୟା ତ୍ୟାଗ ନକଲେ ସବୁକିଛି ଓଲଟ ପାଲଟ ହୋଇଯିବ । ସାବଧାନ ।''

ହିଡିମ୍ବା ଭୀତତ୍ରସ୍ତ ହୋଇ କହିଲା,- ''ମା, କଥା କହିବାରେ କିଛି ଭୁଲ ହୋଇଥିଲେ କ୍ଷମା କରନ୍ତୁ । ମୋର ଉଦ୍ଦେଶ୍ୟ ସ୍ପଷ୍ଟ କରି ଆପଣଙ୍କ ସନ୍ଦେହ ମୋଚନ କରୁଛି । ମାତ୍ର ଏକ ବର୍ଷ ପାଇଁ ମୁଁ ଭୀମଙ୍କୁ ଆପଣଙ୍କ ପାଖରୁ ନେବି । ମୋର ପୁଅଟିଏ ହେଲେ, ସେ ହେବ ଏ ବଣ ମୁଲକର ରାଜା । ଭୀମଙ୍କ ସହିତ ମୋର ଆଉ ଦୈହିକ ସମ୍ବନ୍ଧ ରହିବ ନାହିଁ । ମାତ୍ର ସବୁଦିନ ପାଇଁ ସେ ମୋ ହୃଦୟ ସିଂହାସନର ଆରାଧ୍ୟ ଦେବତା ରୂପେ ପୂଜା ପାଇବେ । ମୁଁ ରାକ୍ଷସୀ, ଏକଥା ସତ; ମାତ୍ର ଆଜି ଆପଣଙ୍କ ଚରଣ ସ୍ପର୍ଶ କରି ପ୍ରତିଜ୍ଞା କରୁଛି, ମୁଁ ମୋର ସତୀତ୍ୱ ଓ ନାରୀତ୍ୱକୁ କଦାପି ଅପବିତ୍ର ହେବାକୁ ଦେବି ନାହିଁ ।

ମୋର ଭ୍ରମ ଦୂରହେବା ସଙ୍ଗେ ସଙ୍ଗେ ହିଡିମ୍ବା ପ୍ରତି ସ୍ନେହ, ଶ୍ରଦ୍ଧା ଓ ମମତା ବହୁ ଗୁଣରେ ବୃଦ୍ଧି ପାଇଲା । ମନେ ମନେ ଭାବିଲି,- କେଡେ ପ୍ରାଣସ୍ପର୍ଶୀ ହିଡିମ୍ବାର ଏଇ କଥା କେଇପଦ । ନାରୀତ୍ୱ ଓ ସତୀତ୍ୱ ତା ପାଖରେ କେଡେ ମୂଲ୍ୟବାନ । ଧନ୍ୟ ହିଡିମ୍ବା । ଧନ୍ୟ ତୋର ଅକୃତ୍ରିମ ପ୍ରେମ । ସ୍ତ୍ରୀମାନେ ସାଧାରଣତଃ ଲଜ୍ଜାଶୀଳା । ମାତ୍ର ତୁ ସ୍ତ୍ରୀ ହୋଇ ତୋ ମନକଥା ଯେପରି ଭାବରେ ପ୍ରକାଶ କରିପାରିଲୁ ତାହା ଅନ୍ୟ ପକ୍ଷରେ ଆଦୌ ସମ୍ଭବପର ନୁହେଁ ।

ମୁଁ ଗାନ୍ଧର୍ବ-ବିଧାନ ଅନୁସାରେ ଭୀମ-ହିଡିମ୍ବାର ବିବାହ କାର୍ଯ୍ୟ ସଂପନ୍ନ କରିବାକୁ ଚିନ୍ତା କରୁଛି,- ଏତିକିବେଳେ ଭୀମ ବିକଟାଳ ଗର୍ଜନ କରି କହିଲା,- ''କାହିଁଗଲା ସେ ରାକ୍ଷସୀ । ଯେଉଁଠି ଥାଉନା କାହିଁକି ତାକୁ ହତ୍ୟା ନକରିବା ଯାଏ ଆମେ ଏ ବଣରେ ଶାନ୍ତିରେ ନିଃଶ୍ୱାସ ମାରି ପାରିବୁ ନାହିଁ । ଆଜି ତା'ର ମୃତ୍ୟୁ ନିଶ୍ଚିତ । ଭୀମର ଗର୍ଜନ ଶୁଣି ହିଡିମ୍ବା କାକୁସ୍ଥ ହୋଇ ମୋ ପଣନ୍ତ କାନିରେ ମୁହଁ ଲୁଚାଇ ଥରିବାକୁ ଲାଗିଲା ।

ଭୀମ କଥା ଶୁଣି ଯୁଧିଷ୍ଠିର ବଡପାଟି କରି କହିଲା,- ''ଭୀମ ତୁ ସର୍ବଦା ଅତିଉଗ୍ର ହୋଇ ଉଠୁଛୁ । ହଠାତ୍ କ୍ରୋଧିତ ହେବା ଉଚିତ ନୁହେଁ । ଆମର ଶତ୍ରୁ ହିଡିମ୍ବକୁ ତୁ ହତ୍ୟା କରି ସାରିଛୁ । ବର୍ତ୍ତମାନ ଯାହାକୁ ହତ୍ୟା କରିବୁ ବୋଲି ଗର୍ଜନ କରୁଛୁ ସେ ଆମର ଶତ୍ରୁ ବୋଲି ତୁ ଜାଣିଲୁ କିପରି ? ନିର୍ଦ୍ଦୋଷକୁ ଦଣ୍ଡଦେବା ଶାସ୍ତ୍ର ବିରୁଦ୍ଧ । ପୁନଶ୍ଚ ନାରୀବଧ ଘୋର ପାପ । ଉତ୍ୟକ୍ତ ନହୋଇ ହିଂସାରୁ ନିବୃତ୍ତ ହୁଅ ।''

ଭୀମର ରାଗ ତ ପଞ୍ଚମକୁ ଉଠିଯାଇଥିଲା । ସେ କହିଲା,- ''ମୁଁ ଏ ରାକ୍ଷସୀର ଭାଇକୁ ହତ୍ୟା କରିଛି । ଭ୍ରାତୃ ହତ୍ୟାର ପ୍ରତିଶୋଧ ରୂପେ ସେ ମାୟା ବିସ୍ତାର କରି ଆମ ସମସ୍ତଙ୍କୁ ଶେଷ କରିଦେବ । ତେଣୁ ସେ ନାରୀ ହେଉ, ପୁରୁଷ ହେଉ ମୁଁ ତାକୁ ନିଶ୍ଚୟ ହତ୍ୟା କରିବି ।''

ଯୁଧିଷ୍ଠିର ତା'ର ସ୍ୱଭାବ-ସୁଲଭ କୋମଳ କଣ୍ଠରେ କହିଲା,- ''ତୁ ଯାହା କିଛି କରିବାକୁ ଯାଉଛୁ, ତା ପୂର୍ବରୁ ଉତ୍ତମ ରୂପେ ଚିନ୍ତା କରିବା ଉଚିତ । ଏବେ ତ ସେ ଆମ ମାଆଙ୍କ ପାଖରେ ଶରଣ ପ୍ରାର୍ଥିନୀ । ମାରିବୁ କ'ଣ ? ମାଆ ହୁଏତ ତୋତେ ତାକୁ ଦେଖିବାକୁ ଅନୁମତି ଦେଇ ନପାରନ୍ତି । ଏପରି ଯଦି ହୁଏ, ତେବେ ତୁ କାହାକୁ ହତ୍ୟା କରିବୁ ବୋଲି ଗର୍ଜନ କରୁଛୁ ?''

ଭୀମ ଉତ୍ତେଜିତ ହୋଇ କହିଲା,- ''ଭାଇ, ତୁମେ କି ବିରାଟ ଭୁଲ କରି ବସିଲ ? ସେ ମାୟାବିନୀଟାକୁ ମାଆଙ୍କ ପାଖରେ ଛାଡି ଦେଲ କିପରି ? ମାଆ କ'ଣ ଆଉ ଜୀବନରେ ଥିବେ । ସେ ରାକ୍ଷସୀ ନିଶ୍ଚୟ ମାଆଙ୍କୁ ଖାଇ ସାରିବଣି । ଜାଣି ଶୁଣି ତୁମେ ସମସ୍ତେ ଏ ଅଘଟଣ ଘଟିବାକୁ ଦେଲ କିପରି ?''

ମୁଁ ଦୂରରୁ ପାଟିକରି କହିଲି,- ''ଭୀମ, ରାକ୍ଷସୀ ମୋତେ ଖାଇନାହିଁ । ମୁଁ ଠିକ୍ ଅଛି । ମୁଁ ତା'ର କିଛି ଅନିଷ୍ଟ କରିନାହିଁ । ତେଣୁ ସେ ମୋତେ ହତ୍ୟା

କରିବା ପ୍ରଶ୍ନ ଉଠିବ କାହିଁକି ? ତା' ଭାଇର ପ୍ରକୃତ ହତ୍ୟାକାରୀ ହିସାବରେ ତୁ ତା'ର ଏକମାତ୍ର ଶତ୍ରୁ । ତେଣୁ ସେ ଖୁବ୍ ରାଗି ଯାଇଛି । ତୋତେ ଦେଖିଲେ ତୋ ଅନ୍ତରର କ୍ରୋଧ, ହିଂସା ଓ ସନ୍ଦେହ ଆଦିକୁ ସେ ନିଶ୍ଚୟ ହତ୍ୟା କରିଦେବ । ତୋତେ ବାନ୍ଧିନେବା ପାଇଁ ସେ ଯେଉଁ ଶକ୍ତ ଜାଲ ବିଛାଇଛି, ସେଥିରେ ତୁ ନିଶ୍ଚୟ ଛନ୍ଦି ହୋଇ ଯିବୁ । ତୋ ହସ୍ତପଦ ଅଚଳ ହୋଇପଡ଼ିବ । ଏଇ ସୁଯୋଗରେ ସେ ତା' ମାୟାବଳରେ ତୋତେ ଦୂରକୁ ବହୁ ଦୂରକୁ ଉଡାଇ ନେବ । ଖୁବ୍ ବଡ ବୀର ବୋଲି ତୋର ଯେଉଁ ଆସ୍ପର୍ଦ୍ଧା ଅଛି, ତାହା ଏ ମାୟାବିନୀର ମାୟାଜାଲ ଛିଣ୍ଡାଇବା ପାଇଁ ଆଦୌ ସମର୍ଥ ହେବ ନାହିଁ । ତୁ ନିଶ୍ଚୟ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହେବୁ । ଏକଥା ଭାବିଲା ବେଳକୁ ମୋ ମନ ଅସ୍ଥିର ହୋଇ ଉଠୁଛି । ମୋ ମହା ପରାକ୍ରମୀ ପୁତ୍ରର ଏ ଶୋଚନୀୟ ପରାଜୟ ମୁଁ ସହ୍ୟ କରି ପାରିବି ତ !''

ଭୀମ ଏପରି କ୍ରୋଧାନ୍ଧ ହୋଇ ଯାଇଥିଲା ଯେ, ସେ ମାଆଙ୍କ ଦ୍ୱିଅର୍ଥ ବୋଧକ ବାକ୍ୟ ଗୁଡ଼ିକ ପ୍ରତି ଧ୍ୟାନ ନଦେଇ କହିଲା,- ଦେଖ୍ ମାୟାବିନୀ ! ତୋର ଯାବତୀୟ କୌଶଳ ମୋ ପାଖରେ ଅକାମୀ ହୋଇଯିବ । ତୋ ଭାଇକୁ ମୁଁ ଅଳ୍ପ ସମୟ ପୂର୍ବରୁ ଶେଷ କରି ଆସିଛି । ବିଳମ୍ବ ନକରି ମୁଁ ତୋତେ ତୋ ଭାଇ ପାଖକୁ ପଠାଇ ଦେଉଛି । ହିଡିମ୍ବେ ବ୍ରଜ ପନ୍ଥାନଂ ତ୍ୱମିମାଂ ଭ୍ରାତୃ ସେବିତମ୍ । ତୁ ମଲେ ଯାଇ ଏ ବଣ ଅସୁର ଶୂନ୍ୟ ହୋଇଯିବ ।''

ମୁଁ ଭୀମକୁ ପାଖରେ ବସାଇ ତାକୁ ଶାନ୍ତ କରାଇଲି । ପରେ ସମସ୍ତ କଥା ଜଣାଇ ମୋର ନିଷ୍ପତ୍ତି ମଧ୍ୟ ଶୁଣାଇ ଦେଲି । ସେ ନୀରବରେ ଯୁଧିଷ୍ଠିର ଆଡ଼କୁ ଚାହିଁବାରୁ ଯୁଧିଷ୍ଠିର କହିଲା,- ''ତୋତେ ମାତାଙ୍କ ଆଦେଶ ପାଳନ କରିବାକୁ ହେବ । ମୋ ବିଚାରରେ ହିଡିମ୍ବା ଯୋଗୁହିଁ ଆମେ ସମସ୍ତେ ଏ ପର୍ଯ୍ୟନ୍ତ ବଞ୍ଚି ରହିଥାଏଁ । ଭାଇର ଆଦେଶ ନେଇ ସେ ଆସିଲା୍‌ବେଳକୁ ଆମେ ସମସ୍ତେ ନିଦ୍ରାରେ ଅଚେତନ ଥିଲୁ । ସେଇ ସୁଯୋଗରେ ସେ ଆମକୁ ସହଜରେ ହତ୍ୟାକରି ପାରିଥାନ୍ତା । ଦୈବ ଯୋଗରୁ ତୋତେ ଦେଖିବା ମାତ୍ରେ ସେ ତୋ ପ୍ରତି ଆସକ୍ତ ହୋଇ ପଡ଼ିଲା ଓ ତା'ର ରାକ୍ଷସୀ ପ୍ରକୃତିକୁ ସଂପୂର୍ଣ୍ଣ ଭୁଲିଗଲା । ତେଣୁ ଭାଇର ଆଦେଶକୁ ଅବମାନନା କରି ସେ ଆମ୍ଭମାନଙ୍କୁ ଜୀବନ ଦାନ କରିଛି କହିଲେ ଅତ୍ୟୁକ୍ତି ହେବନାହିଁ ।''

ଆଉ କାହାର କିଛି କହିବାର ନଥିଲା । ଗାନ୍ଧର୍ବରୀତିରେ ବିବାହ କାର୍ଯ୍ୟ ସଂପନ୍ନ ହେବାପରେ ହିଡିମ୍ବା ଭୀମକୁ ଏକ ବର୍ଷ ପାଇଁ ଅନ୍ୟତ୍ର ନେଇଗଲା ।

ଅନାବିଳ ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ହିଡିମ୍ବା ସବୁଦିନ ପାଇଁ ମୋ ମନରେ ରହିଗଲା । ଭାବିଲି ମାତ୍ର ବର୍ଷଟିଏ ପାଇଁ ଦାମ୍ପତ୍ୟ ଜୀବନ । ହାୟ ନାରୀ ପକ୍ଷରେ ଏହା କେତେ ସ୍ୱଳ୍ପ । ଠିକ୍ ବର୍ଷଟିଏ ପରେ ହିଡିମ୍ବା ସ୍ୱାମୀ ବିଚ୍ଛେଦର ମର୍ମନ୍ତୁଦ ଦୁଃଖକୁ ଅସୀମ ଧୈର୍ଯ୍ୟର ସହିତ ସହିନେବା ପାଇଁ ସଂକଳ୍ପବଦ୍ଧ । ବର୍ଷଟିଏ ପରେ କେବଳ ସ୍ମୃତିକୁ ସମ୍ବଳ କରି ସେ ତା'ର ଅବଶିଷ୍ଟ ଜୀବନ ଏକ ସନ୍ନ୍ୟାସିନୀ ଭାବରେ କଟାଇବ । ମୁଁ ତା'ର ସାହସ, ଧୈର୍ଯ୍ୟ ଓ ଦୃଢ ମନୋବଳକୁ ପ୍ରଶଂସା ନକରି ରହି ପାରିଲି ନାହିଁ । ରାକ୍ଷସୀ ହେଲେ ମଧ୍ୟ ଆମ ନିକଟରୁ ଯିବା ପୂର୍ବରୁ ସେ ମାନବିକ ଶିଷ୍ଟାଚାରକୁ ଭୁଲି ନଥିଲା । ପ୍ରଥମେ ମୋର ପାଦ ବନ୍ଦନା ଓ ପରେ ପରେ ଯୁଧିଷ୍ଠିରକୁ ଭୂମିଷ୍ଠ ପ୍ରଣାମ ଜଣାଇଥିଲା ।

ଆମେ ସେଇ ବଣରେ ଥାଉ । ଚାହୁଁ ଚାହୁଁ ବର୍ଷଟିଏ ବିତିଗଲା । ବର୍ଷ ପୂରିବାର ଠିକ୍ ପରଦିନ ହିଡିମ୍ବା ଭୀମକୁ ମୋ ପାଖରେ ଛାଡିଦେଇ ନିତାନ୍ତ ବିମର୍ଷ ମନରେ ଠିଆ ହୋଇ ରହିଲା । ତା ପାଟିରୁ କଥା ବାହାରୁ ନଥାଏ । ଆଖି ଦୁଇଟି ଲୋତକ ପୂର୍ଣ୍ଣ । ମନରେ ଭାବନାର ଅସରନ୍ତି ଜୁଆର । ଭୀମକୁ ସବୁଦିନ ପାଇଁ ଛାଡି ଦେଉଥିବାରୁ ତା ମନର ଅସହ୍ୟ ବେଦନା ଆଖିର ଭାଷାରୁ ବେଶ୍ ବୁଝି ହୋଇ ଯାଉଥାଏ । ଦୁଃଖକୁ ଗୋପନ ରଖିବାକୁ ଆପ୍ରାଣ ଚେଷ୍ଟାକରି ମଧ୍ୟ ସେ ଅକୃତକାର୍ଯ୍ୟ ହୋଇ ପଡୁଥାଏ । ଦିନଟିଏ ମଧ୍ୟ ବ୍ୟତିକ୍ରମ ହୋଇ ନାହିଁ, ଠିକ୍ ବର୍ଷ ପୂରିବାର ପରଦିନ ଭୀମକୁ ମୋ ପାଖେ ଛାଡ଼ିଦେବା ଦେଖି ମୁଁ ଜଣେ ରାକ୍ଷସୀର ସତ୍ୟନିଷ୍ଠାକୁ ପ୍ରଶଂସା ନକରି ରହି ପାରିଲି ନାହିଁ । ହିଡିମ୍ବାର ମାନସିକ ଅବସ୍ଥା ମୁଁ ଉପଲବ୍ଧି କରି ପାରୁଥିଲେ ମଧ୍ୟ କିଛି କହିବାର ଉପାୟ ନଥାଏ । ହିଡିମ୍ବା ନିଜେ ସର୍ତ୍ତମୂଳକ ବିବାହ ପ୍ରସ୍ତାବ ଦେଇ ତାହା ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରିଛି । ମାତ୍ର ଏକ ବର୍ଷର ସ୍ୱାମୀ ସୁଖକୁ ଅବଶିଷ୍ଟ ଜୀବନର ପାଥେୟ ରୂପେଗ୍ରହଣ କରି ସେ ଯେଉଁ ଅସୀମ ଧୈର୍ଯ୍ୟ ଓ ସହନଶୀଳତାର ପରିଚୟ ଦେଲା, ତା'ର ପଟାନ୍ତର ନାହିଁ । ଭୀମର ସାମୟିକ ବିଚ୍ଛେଦ ଆମେ ଭୁଲିଗଲୁ । ମାତ୍ର ହିଡିମ୍ବା ଆମଠାରୁ ବିଦାୟ ନେବାର ଦୃଶ୍ୟ ଏବେ ମଧ୍ୟ ମୋ ଆଖି ଆଗରେ ଉଦ୍‌ଭାସିତ ହୋଇ ଉଠୁଛି । ତା'ର ନାରୀତ୍ୱ, ସତ୍ୟନିଷ୍ଠା, ଦୁଃଖ ସହିବାର ଶକ୍ତି,

ଦୃଢମନୋବଳ ଓ ସର୍ବୋପରି ଏକାନ୍ତ ନିର୍ଲିପ୍ତ ଭାବ ସାଧାରଣ ନାରୀ ପକ୍ଷରେ ସମ୍ଭବ ନୁହେଁ ।

ସେଇ ଗୋଟିଏ ସ୍ଥାନରେ ଆମେ ଦୀର୍ଘ ଦିନ ରହିଯିବାରୁ ମନରେ ବିରକ୍ତି ଆସି ଯାଇଥିଲା । ତେଣୁ ସ୍ଥାନ ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ଆମେ ଏକଚକ୍ରା ନଗରୀ ଅଭିମୁଖେ ଅଗ୍ରସର ହେଲୁ । ପିଲାମାନେ ସମସ୍ତେ ମୃଗଚର୍ମ ପରିଧାନ କରି ବ୍ରହ୍ମଚାରୀ ବେଶ ଧାରଣ କଲେ । ନଗର ମଧ୍ୟରେ ଆଶ୍ରୟ ଅନୁସନ୍ଧାନ କରୁଥିବା ବେଳେ ଜଣେ ସଦାଶୟ ବ୍ରାହ୍ମଣ ଆମକୁ ତାଙ୍କ ନିଜ ଗୃହରେ ସ୍ଥାନ ଦେଲେ । ବ୍ରାହ୍ମଣଙ୍କର ଏ ଉଦାରତା ପାଇଁ ଆମେ ତାଙ୍କୁ ଗଭୀର କୃତଜ୍ଞତା ଜଣାଇଥିଲୁ ।

ଏକଚକ୍ରା ଏକ ସମୃଦ୍ଧ ନଗରୀ । ଭିକ୍ଷା ଏଠାରେ ସହଜଲଭ୍ୟ । ପିଲାମାନେ ପ୍ରତିଦିନ ଭିକ୍ଷାଟନରେ ବାହାରି ଯାଆନ୍ତି । ମୁଁ ଏକାକିନୀ ଗୃହ ମଧ୍ୟରେ ରହିଥାଏ । ପ୍ରଚୁର ଭିକ୍ଷା ମିଳୁଥିବାରୁ ଖାଦ୍ୟାଭାବର ପ୍ରଶ୍ନ ପ୍ରାୟ ନଥାଏ । ମାତ୍ର ମନ ଭିତରେ ଜମା ହୋଇ ରହିଥିବା ଅଭାବଟିକୁ ସମସ୍ତେ ଅନୁଭବ କରୁଥିଲେ ମଧ୍ୟ କେହି କାହାକୁ କିଛି କହୁନଥାଉ । କାହିଁ ହସ୍ତିନା ରାଜ-ଉଆସର ବିଳାସ-ବ୍ୟସନ, କାହିଁ ଏକଚକ୍ରା ନଗରୀର ଭିକ୍ଷାନ୍ନ ଭୋଜନ ! ସବୁ ଆମ ଭାଗ୍ୟର ଫଳ ଭାବି ନୀରବରେ ଯାବତୀୟ କଷ୍ଟ ସହିବାକୁ ପ୍ରସ୍ତୁତ ହେଉଥାଉ ।

ଅଳିଅଳ ରାଜପୁତ୍ର ଉଦର ପୋଷଣ ପାଇଁ ପ୍ରତ୍ୟହ ଭିକ୍ଷାଝୁଲି ଧରି ଦ୍ୱାରଦ୍ୱାର ବୁଲିବା କିପରି ଯନ୍ତ୍ରଣା ଦାୟକ ସେ କଥା ନକହିବା ଭଲ । ପିଲାମାନେ ଏଥିପାଇଁ ଖୁବ୍ ଦୁଃଖ କରୁଥିବା କଥା ମୋତେ ଅଛପା ନଥାଏ । ମାତ୍ର ଏଠାରେ ଭାଇ ଭାଇକୁ ହତ୍ୟା କରିବାର ହୀନ ଚକ୍ରାନ୍ତ ନାହିଁ କି ପ୍ରତି ପଦକ୍ଷେପରେ ମୃତ୍ୟୁର ଆଶଙ୍କା ମଧ୍ୟ ନାହିଁ । ତେଣୁ ଭିକ୍ଷାନ୍ନ ମୋ ପାଇଁ ରାଜଭୋଗ ଠାରୁ ଆହୁରି ଆନନ୍ଦ ଦାୟକ ହୋଇଥାଏ । ଅରଣ୍ୟବାସ ହିଁ ପ୍ରାସାଦ ବିଳାସଠାରୁ ସହସ୍ର ଗୁଣରେ ପ୍ରୀତିପ୍ରଦ ମନେ ହେଉଥାଏ । ଯତୁ ଗୃହର ଅନୁଭୂତି ମୃତ୍ୟୁପରେ ମଧ୍ୟ ମୁଁ ବିସ୍ମୃତ ହୋଇ ପାରିନଥିଲି । ତେଣୁ ଏକଚକ୍ରାର ନିବାସ ମୋତେ ପରମ-ଶାନ୍ତିପ୍ରଦ ମନେ ହେଉଥିଲା ।

ଦିନଯାକ ମୁଁ ଏକୁଟିଆ ଘର ଭିତରେ ରହିଥାଏ । କାମ ମଧ୍ୟ ସେପରି କିଛି ନଥାଏ । ପିଲାମାନଙ୍କର ଏ ଦୟନୀୟ ଅବସ୍ଥା ଦେଖି ମୋ ମନ ବେଳେ

ବେଳେ ବିଦ୍ରୋହ କରି ଉଠେ । ଭାବେ- କେଉଁ ଅପରାଧର ଫଳ କିମ୍ବା କେଉଁ ପାପର ପ୍ରାୟଶ୍ଚିତ ପାଇଁ ମୋ ପିଲାମାନେ ରାଜକୁମାର ରୂପେ ଜନ୍ମଲାଭ କରି ମଧ୍ୟ ଭିକ୍ଷା ପରି ହୀନବୃତ୍ତି ଅବଲମ୍ବନ କରି ବଞ୍ଚୁଛନ୍ତି । ପୁଣି କେଉଁ ପୁଣ୍ୟ ପ୍ରଭାବରୁ ଗାନ୍ଧାରୀଙ୍କ ପୁତ୍ରମାନେ ରାଜକୀୟ ଭୋଗବିଳାସରେ ସାରା ଜୀବନ ଅତିବାହିତ କରିବାର ଏକଚାଟିଆ ଅଧିକାର ପ୍ରାପ୍ତ ହୋଇଛନ୍ତି ? ମନ ଭିତରେ ଆତ୍ମ ଗୋପନ କରିଥିବା ହିଂସା ବେଳେ ବେଳେ ମୋତେ ବ୍ୟଥିତ କରିପକାଏ । ନିତାନ୍ତ ଅବସନ୍ନ ହୋଇ ପଡ଼ିଲେ ମୁଁ ମହାରାଜା ଦାନବୀର ହରିଶ୍ଚନ୍ଦ୍ର, ରାଣୀ ଶୈବ୍ୟା ଏବଂ କୁମାର ରୋହିତଙ୍କ ଜୀବନ-ଚରିତ ସ୍ମରଣ କରି ଆଶ୍ୱସ୍ତ ହେଉଥାଏ । ରାଜା ନଳ ଓ ଦମୟନ୍ତୀଙ୍କ ଧୈର୍ଯ୍ୟ ଏବଂ ସହନଶୀଳତା ମୋତେ ପ୍ରେରଣା ଦିଏ । ମୁଁ ପରମେଶ୍ୱରଙ୍କ ନିକଟରେ ସମସ୍ତ ଗୁହାରି ଜଣାଇ ଶରଣ ନେଉଥିଲି ।

ଦିନେ ଭୀମ କେଜାଣି କାହିଁକି ଭିକ୍ଷା କରିବାକୁ ଗଲା ନାହିଁ । ମୁଁ ମଧ୍ୟ ତାକୁ ବାଧ୍ୟ କରି ନଥିଲି । ଭାବିଲି ଆଜି ଦିନଟା ତା' ସହିତ କଥା ଭାଷା କରି କଟାଇ ଦେବି । ଅନ୍ୟ ପିଲାମାନେ ଚାଲିଯିବାପରେ ଆମେ ମା' ପୁଅ ଦୁହେଁ ନାନା ଆଲୋଚନାରେ ସମୟ କଟାଉଥିଲୁ ।

ଯେଉଁ ବ୍ରାହ୍ମଣଙ୍କ ଘରେ ଆମେ ରହୁଥିଲୁ- ତାଙ୍କ ପରିବାରର ସମସ୍ତେ ଶାନ୍ତି-ପ୍ରିୟ ଓ ଅତ୍ୟନ୍ତ ସରଳ ପ୍ରକୃତିର ଥିଲେ । ପରିବାର କହିଲେ, ବ୍ରାହ୍ମଣ ଓ ତାଙ୍କ ଧର୍ମପତ୍ନୀଙ୍କ ସହିତ ପୁଅ ଝିଅ ଦୁଇଟି । ଚାରିଜଣଯାକ ବେଶ୍ ହସ ଖୁସିରେ ଦିନ କଟାଉଥାନ୍ତି । ପ୍ରାଚୁର୍ଯ୍ୟର ଗରିମା ନଥିଲେ ମଧ୍ୟ ଅଭାବର ଦଂଶନ ବି ନଥିଲା । ଏପରି ଗୋଟିଏ ଆଦର୍ଶ ପରିବାର ମଧ୍ୟରେ ରହି ମୁଁ ଯଥେଷ୍ଟ ଆନନ୍ଦ ଓ ଶାନ୍ତି ଲାଭ କରୁଥିଲି ।

ହଠାତ୍ ବ୍ରାହ୍ମଣଙ୍କ ଘରୁ କ୍ରନ୍ଦନର ଶବ୍ଦ ଶୁଣି ମୁଁ ଚମକି ପଡ଼ିଲି । ସୁଖଶାନ୍ତି ଭରା ଏଇ ସୁନ୍ଦର ପରିବାରଟିରେ ଆକସ୍ମିକ ବଜ୍ରପାତର କାରଣ ଜାଣିବା ପାଇଁ ମୁଁ ଚଞ୍ଚଳ ଘର ଭିତରକୁ ପଶିଗଲି । ଦେଖିଲି ସମସ୍ତଙ୍କ ମୁହଁରେ ବିଷାଦର କଳାମେଘ ଓ ଆଖିରେ ଅଶ୍ରୁର ପ୍ଳାବନ । କାହାରି ପାଟିରୁ କଥା ବାହାରୁ ନଥାଏ । ସମସ୍ତେ ନୀରବ । ବହୁ କଷ୍ଟରେ ବ୍ରାହ୍ମଣଙ୍କ ଠାରୁ ଯାହା ଶୁଣିଲି ତହିଁରେ ମୋ ଛାତି ଥରି ଉଠିଲା ।

ସେ କମ୍ପିତ କଣ୍ଠରେ କହିଲେ,- ''ଏହି ନଗରୀ ଉପକଣ୍ଠରେ ଥିବା

ଅରଣ୍ୟ ମଧ୍ୟରେ ବକ ନାମକ ଏକ ଭୟଙ୍କର ରାକ୍ଷସ ବାସକରେ । ଆଗେ ସେ ପ୍ରତିଦିନ ନଗର ମଧ୍ୟରେ ପ୍ରବେଶ କରି ମନଇଚ୍ଛା ନର ସଂହାର କରି ଚାଲି ଯାଉଥିଲା । କ୍ରମେ ଅସୁରର ଅତ୍ୟାଚାର ବଢ଼ିବାରୁ ନଗରବାସୀ ଅତିଷ୍ଠ ହୋଇ ପଡ଼ିଲେ । ମାତ୍ର ଏ ଅତ୍ୟାଚାରର ପ୍ରତିରୋଧ ଶକ୍ତି କାହାର ନଥିଲା । ତେଣୁ ଅସୁର ସହିତ ବୁଝାମଣା କରି ପ୍ରତିଦିନ ଗୋଟିଏ ମଣିଷ, ଶଗଡେ ପିଠା ଓ ହଳେ ବଳଦ ତା' ଖାଦ୍ୟ ପାଇଁ ପଠାଯିବା ସ୍ଥିର ହେଲା । ବିନା ପରିଶ୍ରମରେ ଦୈନିକ ଖାଦ୍ୟ ଯଥା ସମୟରେ ପହଞ୍ଚି ଯିବାର ପ୍ରତିଶ୍ରୁତି ପାଇ ଅସୁର ଏ ପ୍ରସ୍ତାବରେ ସମ୍ମତ ହୋଇଗଲା । ସେହିଦିନ ଠାରୁ ନଗରବାସୀ ପାଳିକରି ପ୍ରତିଦିନ ନିର୍ଦ୍ଧାରିତ ଖାଦ୍ୟ ସହିତ ମଣିଷଟିଏ ପଠାଇ ଆସୁଛନ୍ତି । ଆଜି ମୋ ପାଳି ପଡିଛି ।'' ଏତିକି କହି ବ୍ରାହ୍ମଣ ନୀରବ ରହିଗଲେ । କ୍ରନ୍ଦନର କାରଣ ମୁଁ ସହଜରେ ଅନୁମାନ କରିନେଲି ।

କିଛି ସମୟ ପରେ ବ୍ରାହ୍ମଣ ଆରମ୍ଭ କଲେ,- ''ପିଲା ଦୁଇଟି ଆମ ଜୀବନ ଠାରୁ ଅଧିକ ପ୍ରିୟ । ମୁଁ ଯଦି ଅସୁରର ଖାଦ୍ୟ ରୂପେ ଯାଏ, ତେବେ ପିଲା ଦୁଇଟି ବଞ୍ଚି ପାରିବେ ନାହିଁ । ଆମ ଭିତରୁ ଯେ କୌଣସି ଜଣକୁ ଅସୁର ପାଇଁ ପଠାଇଲେ ମଧ୍ୟ ମୁଁ ଜୀବନ ଧରି ରହି ପାରିବି ନାହିଁ ।'' ବ୍ରାହ୍ମଣୀ କହିଲେ,- ''ପିଲାମାନେ ବଡ଼ ହୋଇ ଗଲେଣି । ମୋ ଅଭାବରେ ସେମାନେ ଚଳିଯାଇ ପାରିବେ । ପୁଣି ସଧବା ହୋଇ ମୃତ୍ୟୁ ବରଣ କଲେ ସ୍ୱର୍ଗଲାଭ ହୁଏ । ତେଣୁ ମୁଁ ଅସୁରର ଖାଦ୍ୟ ରୂପେ ଯିବାହିଁ ଅତ୍ୟନ୍ତ ଯୁକ୍ତଯୁକ୍ତ ହେବ ।''

ସ୍ତ୍ରୀଙ୍କ କଥା ଶୁଣି ବ୍ରାହ୍ମଣ ହତବାକ୍ ହୋଇଗଲେ । କିଛି କହିବାକୁ ତାଙ୍କ ତୁଣ୍ଡ ଫିଟିଲା ନାହିଁ । ସେ ସ୍ତ୍ରୀଙ୍କୁ କୁଣ୍ଢାଇ ଧରି କାନ୍ଦିବାରେ ଲାଗିଲେ ।

ଆଖି ଆଗରେ ଘଟିଯାଉଥିବା ଏ କରୁଣ ଦୃଶ୍ୟ ମୋ ସହିବାର ସୀମା ଅତିକ୍ରମ କରିଗଲା । ମୁଁ ବ୍ରାହ୍ମଣଙ୍କ ନିକଟକୁ ଯାଇ କହିଲି,- ''ମୋର ପାଞ୍ଚପୁଅ । ସେଥି ମଧ୍ୟରୁ ଜଣକୁ ମୁଁ ପ୍ରସ୍ତୁତ ଖାଦ୍ୟ ସହ ଅସୁର ନିକଟକୁ ପଠାଇ ଦେବି । ତୁମେ ସମସ୍ତେ ଚିନ୍ତା ତ୍ୟାଗ କର ।''

ଏ କଥା ଶୁଣିବା ମାତ୍ରେ ବ୍ରାହ୍ମଣ ଚମକି ପଡି କହିଲେ,- ''ନାଁ, ନାଁ ଏକି ଅଘଟଣ କଥା ତୁଣ୍ଡରେ ଧରୁଛନ୍ତି ! ଆପଣ ଆମର ଅତିଥି । ଶାସ୍ତ୍ରରେ ଅଛି ଅତିଥି ଦେବତା ପରି ପୂଜ୍ୟ । ''ଅତିଥି ଦେବୋ ଭବ'' । ଆମେ ଆପଣଙ୍କ

ପାଇଁ କିଛି ହେଲେ କରି ନାହୁଁ, ଅଥଚ ଆପଣ ଆମ ପାଇଁ ଏତେବଡ଼ ତ୍ୟାଗ କରିବାକୁ ପ୍ରସ୍ତୁତ ହେଉଛନ୍ତି କିପରି ? ଆପଣଙ୍କ ପ୍ରସ୍ତାବରେ ସ୍ୱୀକୃତ ହେଲେ ଆମେ ବଞ୍ଚିଯିବୁ ସତ, ମାତ୍ର ନିଜ ସ୍ୱାର୍ଥ ପାଇଁ ଅତିଥିଙ୍କୁ ବଳିଦେବା ଅପରାଧରେ ନର୍କଭୋଗ କରିବୁ । ନାଁ ନାଁ ଜାଣି ଶୁଣି ମୁଁ ଏ ପାପ-ପଙ୍କରେ ଘାଣ୍ଟି ହେବାକୁ ଆଦୌ ଇଚ୍ଛା କରୁନାହିଁ । ମାଆ ହୋଇ ତୁମେ ଯେଉଁ ମହାନ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଗଲ, ସେଥିପାଇଁ ଧନ୍ୟବାଦ ଜଣାଇବାକୁ ମୋ ପାଖରେ ଭାଷା ନାହିଁ । ପରପାଇଁ କୌଣସି ମାଆ ତା'ର ଗର୍ଭଜାତ ସନ୍ତାନକୁ ବଳିଦେବାର ଦୃଷ୍ଟାନ୍ତ ନାହିଁ । ଆପଣ ମୋତେ କ୍ଷମା କରନ୍ତୁ । ମୁଁ ମୋ ଭାଗ୍ୟ ଭୋଗ କରିବାକୁ ବାଧ୍ୟ । ଆପଣଙ୍କୁ ଶୋକାକୁଳ କରି ମୁଁ ସୁଖ-ଭୋଗ କରିବାକୁ ଆଦୌ ଉଚିତ ମନେ କରୁନାହିଁ ।''

ଦେଖିଲି,- ଚରମ ଦୁର୍ବିପାକର ସମ୍ମୁଖୀନ ହୋଇ ମଧ୍ୟ ବ୍ରାହ୍ମଣ ସ୍ୱଧର୍ମ ତ୍ୟାଗ କରିବାକୁ ଏକାନ୍ତ ଅନିଚ୍ଛୁକ । ପ୍ରକାଶ୍ୟରେ କହିଲି,- ''ଆପଣ ଉପର ମନରେ ମୋର ପ୍ରଶଂସା କରୁଛନ୍ତି ସତ ମାତ୍ର ବାସ୍ତବରେ ମୋତେ ଅତ୍ୟନ୍ତ ଘୃଣା କରୁଥିବେ । ଆପଣ ଭାବୁଥିବେ ଯେଉଁ ମାଆ ଜାଣି ଶୁଣି ନିଜର ପ୍ରାଣପ୍ରିୟ ସନ୍ତାନକୁ ମୃତ୍ୟୁ ମୁହଁକୁ ଠେଲି ଦିଏ, ତାକୁ ମାଆ କହିବା ଦ୍ୱାରା ସେ ପବିତ୍ର ନାମର ଅମର୍ଯ୍ୟାଦା ହୋଇଥାଏ । ମାଆ ନକହି ତାକୁ ପିଶାଚୀ କହିବା ଅଧିକ ଯୁକ୍ତି ସଂଗତ ହେବ । ତେବେ ଦଶମାସ ଗର୍ଭରେ ଧାରଣ କରି ମୁଁ ଏପରି ମମତା-ଶୂନ୍ୟ ହେଉଛି କିପରି ? ଏହି ପ୍ରଶ୍ନହିଁ ଆପଣମାନଙ୍କୁ ସନ୍ଦେହାଚ୍ଛନ୍ନ କରିଥିବ । ମନେରଖନ୍ତୁ ସବୁ ମାଆଙ୍କ ପରି ମୁଁ ମଧ୍ୟ ମୋ ପିଲାମାନଙ୍କୁ ପ୍ରାଣ ଭରି ସ୍ନେହ କରେ । ତେବେ ଯେଉଁ ପୁଅଟିକୁ ଅସୁର ନିକଟକୁ ପଠାଇବା ପାଇଁ କହୁଛି, ତା' ଦେହରେ କେତେ ଶକ୍ତି ଅଛି, ସେ କଥା ମୋ ଠାରୁ କେହି ଅଧିକ ଜାଣନ୍ତି ନାହିଁ । ଅସୁର ହତ୍ୟା କରିବା ତା ବାଆଁ ହାତର ଖେଳ । ତେଣୁ ବକ ପରି ଛାର ଅସୁରଟାକୁ ହତ୍ୟା କରିବାରେ ତାକୁ ଆଦୌ ଅସୁବିଧା ହେବ ନାହିଁ । ତୁରନ୍ତ ଖାଦ୍ୟ-ଦ୍ରବ୍ୟ ପ୍ରସ୍ତୁତ କରନ୍ତୁ । ଆଜିଠାରୁ ଏ ନଗର ଉପରୁ ଅସୁରର କଳାଛାଇ ସବୁଦିନ ପାଇଁ ଅପସରି ଯିବ । ମନେ ରଖନ୍ତୁ ମୋ ପୁଅ ଅସୁର ପାଖକୁ ଯାଇଥିବା କଥା ଏକାନ୍ତ ଗୋପନୀୟ ହୋଇ ରହିବା ଉଚିତ ।''

ଭୀମ ଖାଦ୍ୟ ଶଗଡ ନେଇ ଅରଣ୍ୟକୁ ଗଲା । ଶଗଡ ଫିଟାଇବା ମାତ୍ରେ ଲୋଭ ସମ୍ବରଣ କରି ନପାରି ନିଜେ ଆନନ୍ଦରେ ଖାଦ୍ୟ ଦ୍ରବ୍ୟସବୁ ଖାଇବାରେ ଲାଗିଗଲା ।

ସନ୍ଧ୍ୟା ସମୟକୁ ପିଲାମାନେ ଫେରି ଆସିବାରୁ ମୁଁ ସେମାନଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଦେଲି । ଯୁଧିଷ୍ଠିର ଏକାନ୍ତ ଶଙ୍କାକୁଳ ହୋଇ ଭୀମକୁ ସାହାଯ୍ୟ କରିବାକୁ ବାହାରିବାରୁ ମୁଁ କହିଲି,- ''ବାବୁ, ମାତୃ ଆଶୀର୍ବାଦ ଲାଭ କରି ଭୀମ ପୃଥିବୀର ଯେ କୌଣସି ଶକ୍ତିକୁ ପ୍ରତିହତ କରିବା ପାଇଁ ଏକାକୀ ସମର୍ଥ । ଅପେକ୍ଷାକର, ଅଳ୍ପ ସମୟ ମଧ୍ୟରେ ସେ ଅସୁର ସଂହାର କରି ମୋ କୋଳକୁ ଫେରି ଆସିବ । ଅଧିକ ଚିନ୍ତିତ ହେବା ପ୍ରୟୋଜନ ନାହିଁ ।

ପାଟିରୁ କଥା ସରିନାହିଁ, ଭୀମ ହସି ହସି ଆସି ମୋ ପାଖରେ ଠିଆ ହୋଇଗଲା । ମୁଁ ଆନନ୍ଦ ବିହ୍ୱଳ ହୋଇ ତାକୁ କୁଣ୍ଢାଇ ପକାଇଲି । ଏହି ଅସମ୍ଭବ ଘଟଣାରେ ନଗରବାସୀ ସ୍ତମ୍ଭିତ ହୋଇଗଲେ । ଅସୁର ବିନାଶ-ଜନିତ.ଆନନ୍ଦରେ ଆତ୍ମହରା ହୋଇ ସେମାନେ ନାଚିବାରେ ଲାଗିଲେ । ବ୍ରାହ୍ମଣଙ୍କ ଲାଗି ଏକଚକ୍ରା ନଗରୀ ସବୁଦିନ ପାଇଁ ବିପଦମୁକ୍ତ ହୋଇଥିବାରୁ ସମସ୍ତେ ତାଙ୍କୁ ଅତ୍ୟନ୍ତ ସମ୍ମାନ ପ୍ରଦର୍ଶନ କରିଥିଲେ ।

ଏକଚକ୍ରାରେ କିଛିଦିନ ବେଶ୍ ହସ ଖୁସିରେ କଟିଗଲା । କେବଳ ଗୋଟିଏ ସ୍ଥାନରେ ଅଧିକ ଦିନ ରହିଯାଇଥିବାରୁ ମୁଁ ଅନ୍ୟ କୌଣସି ସ୍ଥାନକୁ ଚାଲିଯିବା ପାଇଁ ଚିନ୍ତା କରୁଥାଏ । କିଛିଦିନ ପରେ ଜଣେ ବ୍ରାହ୍ମଣ ଆସି ଆମ ବସାରେ ପହଞ୍ଚିଗଲେ । ପିଲାମାନେ ବ୍ରାହ୍ମଣ ଦେବତାଙ୍କର ଉପଯୁକ୍ତ ସତ୍କାର କରିବା ପରେ ସେ କହିଲେ,- ''ମୁଁ ଏଠାରେ ଅଧିକ ସମୟ ରହି ପାରିବି ନାହିଁ । ତୁମେ ବୋଧହୁଏ ଜାଣିନଥିବ- ପାଞ୍ଚାଳ ନରେଶଙ୍କ ପରମା ସୁନ୍ଦରୀ, ସର୍ବଗୁଣ ସଂପନ୍ନା ବିଦୂଷୀ କନ୍ୟା ଦ୍ରୌପଦୀଙ୍କ ସ୍ୱୟଂବର ହେଉଛି । ମୁଁ ସେହି ଉତ୍ସବରେ ଯୋଗଦେବା ପାଇଁ ବାହାରିଛି । ବହୁ ରାଜା, ରାଜକୁମାର ଓ ମୁନୀ ଋଷି ଏହି ସଭାରେ ଯୋଗଦେବା ପାଇଁ ନିମନ୍ତ୍ରିତ ହୋଇଛନ୍ତି । ମୁଁ ଏବେ ପ୍ରସ୍ଥାନ କରିବି ।''

ଭସ୍ମାଚ୍ଛାଦିତ ବହ୍ନି ଦୀର୍ଘକାଳ ଆତ୍ମଗୋପନ କରି ନ ପାରିଲା ପରି ମୋ ପିଲାମାନଙ୍କ ମନରେ ସୁପ୍ତ କ୍ଷତ୍ରିୟ-ସୁଲଭ ବୀରତ୍ୱ ଜାଗ୍ରତ ହୋଇ ଉଠିଲା । ସେମାନେ ସମସ୍ତେ ପାଞ୍ଚାଳ ଯିବା ପାଇଁ ମୋର ଅନୁମତି ଚାହିଁଲେ । ମୁଁ ମଧ୍ୟ

ସ୍ଥାନ ପରିବର୍ତ୍ତନ ପାଇଁ ଚିନ୍ତା କରୁଥିଲି । ଦୈବ କ୍ରମେ ଏପରି ଏକ ସୁଯୋଗ ପାଇ ଆମେ ଉକ୍ତ ବ୍ରାହ୍ମଣଙ୍କ ସହିତ ପାଞ୍ଚାଳ ଯିବା ପାଇଁ ପ୍ରସ୍ତୁତ ହେଲୁ । ଭାବିଲି ଅବସ୍ଥା ଚକ୍ରରେ ପଡ଼ି ମୋ ପିଲାମାନେ ବ୍ରହ୍ମଚାରୀର ଛଦ୍ମବେଶ ଧାରଣ କରିବାକୁ ବାଧ୍ୟ ହୋଇଛନ୍ତି ସିନା, ବାସ୍ତବରେ ସମସ୍ତେ ପୂର୍ଣ୍ଣମାତ୍ରାରେ କ୍ଷତ୍ରିୟ ଓ ରାଜବଂଶୋଦ୍ଭବ ଅଟନ୍ତି । ତେଣୁ ଦୀର୍ଘଦିନ ଛଦ୍ମବେଶରେ ଆତ୍ମଗୋପନ କରି ପାରିବେ ନାହିଁ । କେତେବେଳେ କ'ଣ ଘଟିବ କିଏ କହିବ ?

ଆମେ ସାଥି ହୋଇ ଯାତ୍ରାରମ୍ଭ କଲୁ । ପଥ ମଧ୍ୟରେ ବ୍ରାହ୍ମଣ ସ୍ୱତଃ ପ୍ରବୃତ୍ତ ହୋଇ କହିଲେ,-''ଆପଣମାନେ ହୁଏତ ଜାଣିନଥିବେ, ଦ୍ରୁପଦ ନନ୍ଦିନୀ ଯଜ୍ଞ ସମ୍ଭୂତା ହୋଇ ଥିବାରୁ ତାଙ୍କ ନାମ ଯାଜ୍ଞସେନୀ । ମାତ୍ର ତାଙ୍କର ପ୍ରକୃତ ନାମ କୃଷ୍ଣା । ଦ୍ରୁପଦ ରାଜାଙ୍କ ଦୁହିତା ହୋଇଥିବାରୁ ସେ ଦ୍ରୌପଦୀ ନାମରେ ମଧ୍ୟ ସୁପରିଚିତା । ଦ୍ରୌପଦୀଙ୍କ ଅପୂର୍ବ ରୂପସମ୍ଭାର ବର୍ଣ୍ଣନାରେ ଏକାନ୍ତ ବିହ୍ୱଳ ହୋଇ ସେ କହିଲେ,-

★ ★ ★ ★ ★ ★ ★ ★ ★ ★ ★ ★

ଶ୍ୟାମା ପଦ୍ମ ପଳାଶାକ୍ଷୀ
ନୀଳ କୁଞ୍ଚିତ ମୂର୍ଦ୍ଧଜା,
ତାମ୍ର ତୁଙ୍ଗ ନଖୀ ସୁଭ୍ରୂ
ଚାରୁ ପୀନ ପୟୋଧରା,

★ ★ ★ ★ ★ ★ ★ ★ ★ ★ ★ ★

ନୀଳୋତ୍ପଳ ସମୋ ଗନ୍ଧୋ
ଯସ୍ୟା କ୍ରୋଶାତ୍ ପ୍ରଧାବିତଃ ।

ଏପରି ଚଟୁଳ ବର୍ଣ୍ଣନାରେ ଯେ କେହି ମୁଗ୍ଧ ହୋଇଯିବା ସ୍ୱାଭାବିକ । ଆଦୌ ନ ଦେଖି ମଧ୍ୟ ମୁଁ ବ୍ରାହ୍ମଣଙ୍କ କଥା ଶୁଣି ମମତା-ସିକ୍ତ ହୋଇ ଉଠିଲି । ପର ମୁହୂର୍ତ୍ତରେ ମନକଥା ମନରେ ମାରିବାକୁ ବାଧ୍ୟ ହେଲି । ଗଭୀର ଦୁଃଖ ଓ ନୈରାଶ୍ୟରେ ମୋ ଅନ୍ତରାତ୍ମା ବ୍ୟାକୁଳ ହୋଇ ଉଠିଲା । ଭାବିଲି ରାଜପୁତ୍ରର ପରିଚୟ ନେଇ ସ୍ୱୟଂବର ସଭାରେ ଯୋଗଦେଇଥିଲେ ମୋ ପିଲାମାନେ ଭାଗ୍ୟ ପରୀକ୍ଷା କରିବାର ସୁଯୋଗ ପାଇଥାନ୍ତେ । ଏବେ ରାଜା ବା ରାଜପୁତ୍ରମାନଙ୍କ ପାଇଁ ଉଦ୍ଦିଷ୍ଟ ଆସନରେ ବସିବା ପାଇଁ ମଧ୍ୟ ସେମାନେ ଯୋଗ୍ୟ ବିବେଚିତ

ହେବେ ନାହିଁ । ସେମାନଙ୍କର ସ୍ଥାନ ହେବ ସାଧାରଣ ଦର୍ଶକମାନଙ୍କ ଗହଣରେ । ଅଥଚ ଦୁର୍ଯ୍ୟୋଧନ ସହିତ କୌରବ ଭ୍ରାତାମାନେ ବହୁ ମୂଲ୍ୟ ବସନ ଭୂଷଣରେ ମଣ୍ଡିତ ହୋଇ ରାଜକୀୟ ସମ୍ମାନର ଅଧିକାରୀ ହୋଇଥିବେ । ଭାଗ୍ୟର ବିପର୍ଯ୍ୟୟହିଁ ମୋ ପିଲାମାନଙ୍କୁ ସକଳ ସୁଖ, ସୁବିଧା ଓ ଆନନ୍ଦରୁ ବଞ୍ଚିତ କରିବାରେ ଲାଗିଛି । କ'ଣ ବା କରିପାରିବି । ସେଇ ପରମେଶ୍ୱରଙ୍କୁ ଦୁଃଖ ଜଣାଇ ଆଗକୁ ଚାଲିବାରେ ଲାଗିଲି ।

ପଥ ମଧ୍ୟରେ ମହର୍ଷି ଧୌମ୍ୟଙ୍କ ମନୋରମ ତପୋବନ ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷଣ କଲା । ସ୍ଥାନଟିର ଅବସ୍ଥିତି ଓ ଶାନ୍ତଶୀତଳ ପରିବେଶ ମୋତେ ସମ୍ମୋହିତ କରି ପକାଇଲା । ମୁଁ ଏକ ନୈସର୍ଗିକ ଆନନ୍ଦ ଅନୁଭବ କଲି । ଜୀବନର ଅବଶିଷ୍ଟ ସମୟତକ ଏହି ପବିତ୍ର ଆଶ୍ରମରେ କଟାଇ ପାରିଲେ କେଡେ ଭଲ ହୁଅନ୍ତା ସତେ । ପୁଣି ଭାବିଲି ମଣିଷ ଇଚ୍ଛାର କିଛି ମୂଲ୍ୟ ନାହିଁ । ନିୟତିହିଁ ସମସ୍ତଙ୍କ ଇଚ୍ଛାକୁ ନିୟନ୍ତ୍ରଣ କରେ । ମନକଥା ମନରେ ରହିଲା । ସମସ୍ତେ କୁଟୀର ଅଭ୍ୟନ୍ତରକୁ ଯାଇ ଋଷିଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲୁ । ଆମ୍ଭମାନଙ୍କୁ ଆଶ୍ରମରେ ପାଇ ଋଷି ଅତ୍ୟନ୍ତ ପ୍ରସନ୍ନ ହୋଇ ଉଠିଲେ । ଆମ ବଂଶର କୁଳ ପୁରୋହିତ ହେବା ପାଇଁ ଆମେ ମହର୍ଷିଙ୍କୁ ବିନମ୍ର ନିବେଦନ କଲୁ ।

ଧୌମ୍ୟ ସମସ୍ତ କାମନା, ବାସନା ବିବର୍ଜିତ ଏକ ଉଦାରଚେତା ତପସ୍ୱୀ । ସେ ଆମ ପ୍ରସ୍ତାବରେ ସମ୍ମତି ପ୍ରଦାନ କରି ଆମ୍ଭମାନଙ୍କୁ ଅନୁଗୃହୀତ କରିଥିଲେ । ବହୁ ଦିନ ପରେ ଭାଗ୍ୟ ଆମ ପ୍ରତି ଅନୁକୂଳ ହୋଇଛି ଭାବି ଆମେ ଅତ୍ୟନ୍ତ ଆନନ୍ଦିତ ହୋଇ ପଡ଼ିଲୁ ।

ପଥ ମଧ୍ୟରେ ଯାଉଥିବା ସମୟରେ ଅନେକ ସାଧୁ, ସନ୍ନ୍ୟାସୀଙ୍କ ସହିତ ଦେଖା ହେଲା । ପାଞ୍ଚାଳରେ ପହଞ୍ଚିଲା ବେଳକୁ ଆମ ସଂଖ୍ୟା ବହୁତ ବଢ଼ି ଯାଇଥାଏ । କିଛି ସମୟ ପରେ ଆମେ ରାଜଧାନୀରେ ଉପସ୍ଥିତ ହେଲୁ ।

ପୁଣିଥରେ ସ୍ୱୟଂବର ସଭାର ଅପୂର୍ବ ଶୋଭା ଦେଖିବାର ସୌଭାଗ୍ୟ ଲାଭକରି ମୁଁ ଯୁଗପତ୍ ହର୍ଷ ଓ ବିଷାଦରେ ଅଭିଭୂତ ହୋଇ ପଡିଲି । ଅତୀତର ଅନେକ ସ୍ମୃତି ମୋ ଚକ୍ଷୁ ସମକ୍ଷରେ ଝଲସି ଉଠିଲା ।

ଆମେ ପାଞ୍ଚାଳ ନଗରୀର ଶେଷ ଭାଗରେ ଜଣେ କୁମ୍ଭାରଙ୍କ ଉହାଶାଳରେ ରହିବାର ବ୍ୟବସ୍ଥା କଲୁ । ସ୍ଥାନଟିର ନିକାଞ୍ଚନ ପରିବେଶ

କୋଳାହଳ ଶୂନ୍ୟ ହୋଇଥିବାରୁ ମୋତେ ପରମ-ଶାନ୍ତିପ୍ରଦ ମନେ ହେଲା । ହସ୍ତିନାର ପାଟ-ମହିଷୀ ଉହାଶାଳ ପାଉଁଶକୁ ଚନ୍ଦନ କର୍ପୂର ପରି ମନେକଲେ ।

କୁମ୍ଭକାରସ୍ୟ ଶାଳାୟାଂ ନିବାସଂ ଚକ୍ରିରେ ତଦା

ସ୍ୱୟଂବର ଦିନ ନିକଟ ହୋଇ ଆସିଲା । ଶୁଣିଲି କୌରବ ଭାଇମାନଙ୍କ ସହିତ ମଦ୍ରରାଜ ଶଲ୍ୟ, ଦ୍ରୋଣପୁତ୍ର ଅଶ୍ୱତ୍ଥାମା ଓ କୃଷ୍ଣଙ୍କ ସହିତ ଯଦୁବଂଶୀୟ ମାନେ ସ୍ୱୟଂବରରେ ଯୋଗ ଦେବାକୁ ଆସୁଛନ୍ତି । ସଙ୍ଗେ ସଙ୍ଗେ ମୋ ଚିନ୍ତା ବଢିଗଲା । ମୁଁ ଆତଙ୍କିତ ହୋଇ ଉଠିଲି । ଯତୁ ଗୃହରେ ଆମେ ସମସ୍ତେ ଭସ୍ମ ହୋଇ ଯାଇଥିବା କଥା ସମଗ୍ର ଭାରତରେ ପ୍ରଚାରିତ ହୋଇ ସାରିଥାଏ । କୌଣସି ସୂତ୍ରରୁ ଆମ ଅସ୍ତିତ୍ୱର ସୂଚନା ପାଇଗଲେ କୌରବମାନେ ଅତ୍ୟନ୍ତ ହିଂସ୍ର ହୋଇ ପ୍ରଳୟ କାଣ୍ଡ ସୃଷ୍ଟିକରି ଦେବେ ଭାବି, ଅଜଣା ଆଶଙ୍କାରେ ମୁଁ ବିଚଳିତ ହୋଇ ପଡ଼ିଲି ।

ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହେଲା । ପିଲାମାନେ ମୃଗଚର୍ମ ପରିଧାନ ଓ ଉପବୀତ ଧାରଣ କରି ପୂର୍ଣ୍ଣ ବ୍ରହ୍ମଚାରୀ ବେଶରେ ସ୍ୱୟଂବର ସଭାକୁ ଗଲେ । ସେମାନେ ଏପରି ନିଖୁଣ ଭାବରେ ବେଶ ବଦଳାଇ ଥିଲେ ଯେ, ମୁଁ ମଧ୍ୟ ସେମାନଙ୍କୁ ଚିହ୍ନି ପାରିଲି ନାହିଁ । ପିଲାମାନେ ଚାଲିଯିବା ପରେ ଉହାଶାଳରେ ମୁଁ ଏକୁଟିଆ ହୋଇଗଲି । ନାନା ଆଶଙ୍କାରେ ମନ ମୋର ଭାରାକ୍ରାନ୍ତ ହୋଇ ଆସିଲା । ମୁଁ ରଜ୍ଜୁକୁ ସର୍ପ ଜ୍ଞାନ କରି ଶିହରି ଉଠୁଥାଏ ।

ପିଲାମାନଙ୍କର ଫେରିବା ବିଳମ୍ବ ହେବାରୁ ନାନା ପାପଚିନ୍ତା ମୋତେ ଅସ୍ଥିର କରିବାରେ ଲାଗିଲା ।

ହଠାତ୍ ମୋ ଚିନ୍ତାକୁ ପ୍ରତିହତ କରି ଭୀମ କହି ଉଠିଲା ମା, ମା, ଆଜି ଆମେ ଅପୂର୍ବ ପଦାର୍ଥ ଭିକ୍ଷା ରୂପେ ପାଇଛୁ । ପରେ ପରେ ଯୁଧିଷ୍ଠିର, ଅର୍ଜୁନ ଓ ଅନ୍ୟ ପିଲାମାନେ ମଧ୍ୟ ସେଇ କଥା କହିବାରୁ ଭାବିଲି ସ୍ୱୟଂବର ଭୋଜିରୁ ବୋଧହୁଏ କିଛି ସୁମିଷ୍ଟ ଖାଦ୍ୟଦ୍ରବ୍ୟ ଆଣିଥିବେ । ଆଉ କିଛି ନଭାବି କହିଦେଲି- ''ଯାହା ଆଣିଛ ତାକୁ ପାଞ୍ଚ ଭାଇଯାକ ବାଣ୍ଟି ସମାନ ଭାବରେ ଭୋଗକର । ପ୍ରୋବାଚ୍ ଭୁଙ୍କ୍ତେତି ସମେତ୍ୟ ସର୍ବେ ।

ମୋ କଥା ଶୁଣି ଯୁଧିଷ୍ଠିର କହିଲା,- ''ମା, ତୁମେ ଏପରି କଥାଟିଏ କହିଦେଲ କିପରି ? ଏ ବାଣ୍ଟିନେଇ ଭୋଗ କରିବା ପଦାର୍ଥ ନୁହେଁ । ବାହାରକୁ

ଆସି ଦେଖିଲେ ସବୁ ଜାଣିଯିବ ।'' କାଳ ବିଳମ୍ବ ନକରି ମୁଁ ଘର ଭିତରୁ ପଦାକୁ ଚାଲି ଆସିଲି । ଦେଖିଲି,- ଅପ୍ସରା ବିନିନ୍ଦିତ ଏକ ଅନିନ୍ଦ୍ୟ ସୁନ୍ଦରୀ ରୂପବତୀ ଯୁବତୀ ମଥା ପୋତି ପିଲାଙ୍କ ପାଖରେ ଛିଡ଼ା ହୋଇଛି । ପ୍ରଥମେ ସେ ଦେବୀ ନା ମାନବୀ ବାରି ପାରିଲି ନାହିଁ । ମର୍ତ୍ତ୍ୟରେ ଏପରି ରୂପ ସମ୍ଭବ ବୋଲି ମୁଁ ବିଶ୍ୱାସ କରି ପାରୁନଥିବା ବେଳେ ଯୁଧିଷ୍ଠିର କହିଲା,- ''ମା, ଆଜି ସ୍ୱୟଂବର ସଭାରେ ଅର୍ଜୁନ ଶହଶହ ବୀରଙ୍କ ମୁହଁରେ କାଳି ବୋଳି ଲକ୍ଷ୍ୟ ଭେଦ ପୂର୍ବକ ଏ ଅମୂଲ୍ୟ ରତ୍ନଟି ଲାଭ କରିଛି । ସତରେ ମା, ଅର୍ଜୁନ ଯୋଗୁ ଆଜି ଆମେ ଅତ୍ୟନ୍ତ ଗର୍ବିତ । ଏ ଦେବୀ ଦ୍ରୁପଦ ରାଜକୁମାରୀ ଦ୍ରୌପଦୀ ।''

ମୋର ଆନନ୍ଦର ସୀମା ରହିଲା ନାହିଁ । ପଥ ମଧ୍ୟରେ ବ୍ରାହ୍ମଣ ଜଣକ ଦ୍ରୌପଦୀଙ୍କର ଯେଉଁ ପ୍ରଶଂସା କରିଥିଲେ, ତାହାଠାରୁ କାହିଁ କେତେଗୁଣରେ ସେ ଅଧିକ ବୋଲି ମୋର ମନେ ହେଲା । ଏହାପରେ ଯାହା ଘଟିଥିଲା ସେ ସବୁ ମୁଁ ଆଗରୁ ଜଣାଇ ସାରିଛି । ବହୁ ଆଲୋଚନା, ଯୁକ୍ତିତର୍କ ପରେ ପାଞ୍ଚଭାଇ ଯାକ ଦ୍ରୌପଦୀଙ୍କୁ ବିବାହ କଲେ । ଦ୍ରୌପଦୀ ପୂର୍ବ ଜନ୍ମରେ ପାଞ୍ଚ ପତି ଗ୍ରହଣ କରିବା ପାଇଁ ବରପ୍ରାପ୍ତ ହୋଇଥିବା କଥା ବ୍ୟାସଙ୍କ ଠାରୁ ଜାଣିବା ପରେ କେହି ଆଉ କିଛି ଆଲୋଚନା କରି ନଥିଲେ ।

ଅଳ୍ପ ସମୟପରେ ମୋର ପୁତୁରା କୃଷ୍ଣ ଓ ବଳରାମ ଆମ୍ଭ ମାନଙ୍କୁ ସାକ୍ଷାତ କରିବାକୁ ଆସିଲେ । ମୁଁ ସେ ଦୁହିଁଙ୍କୁ ଆଦୌ ଚିହ୍ନି ପାରିଲି ନାହିଁ । ଭାଇଦୁହେଁ ଆପେ ଆପେ ନିଜର ପରିଚୟ ଦେବାରୁ ମଥୁରାର ବିସ୍ମୃତ ସ୍ମୃତି ମୋର ଜାଗ୍ରତ ହୋଇ ଉଠିଲା । ମୁଁ ଦୁହିଁଙ୍କୁ କୋଳାଗ୍ରତ କରି କେତେ କଥା ପଚାରି ଗଲି । କୃଷ୍ଣ ଓ ବଳରାମ ମୋ ପିଲାମାନଙ୍କ ସହିତ ଅନେକ କଥା ବାର୍ତ୍ତା ହେବା ପରେ ବିଦାୟ ନେବାକୁ ପ୍ରସ୍ତୁତ ହେଲେ । ମୁଁ କିନ୍ତୁ ଏତେ ଶୀଘ୍ର ତାଙ୍କୁ ପାଖରୁ ଅନ୍ତର କରିବାକୁ ଚାହୁଁ ନଥିଲି । ମୋର ଭାବଭଙ୍ଗୀ ଲକ୍ଷ୍ୟକରି ଶ୍ରୀକୃଷ୍ଣ କହିଲେ,- ''ନାଁ ନାଁ ଆମ ଦି ଭାଇଙ୍କର ଏଠାରେ ଅଧିକ ସମୟ ରହିବା ଅନ୍ୟ ରାଜା ମାନଙ୍କର ସନ୍ଦେହର ମାତ୍ରା ବୃଦ୍ଧି କରିବ । ଆମେ ସୁବିଧା ଦେଖି ଆପଣଙ୍କୁ ନିଶ୍ଚୟ ସାକ୍ଷାତ କରିବୁ । ସେପରି ହେବାର ସମୟ ମଧ୍ୟ ପାଖେଇ ଆସୁଛି । ସ୍ୱୟଂବର ସଭାରୁ ସମସ୍ତଙ୍କର ସନ୍ଦେହ ଘନୀଭୂତ ହେବାରେ ଲାଗିଛି । ଅର୍ଜୁନ ବ୍ୟତୀତ ଅନ୍ୟ କେହି ଏ ବିଷମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବେ ନାହିଁ ଜାଣି ପାଣ୍ଡବମାନଙ୍କ ଅସ୍ତିତ୍ୱ

ସଂପର୍କରେ ଗୋପନ ଅନୁସନ୍ଧାନ ଆରମ୍ଭ ହୋଇ ଯିବଣି । ଆମେ ଏଠାରେ ଅଧିକ ସମୟ ରହିବା ଉଚିତ ହେବ ନାହିଁ କହି ଦି ଭାଇ ଚାଲିଗଲେ ।

ପରଦିନ ପିଲାମାନେ ଭିକ୍ଷା ଆଣି ଫେରିଲେ । ଭୋଜନ ପରେ ସମସ୍ତଙ୍କ ଶୟନ ବ୍ୟବସ୍ଥା ସେହି ଉହାଶାଳରେ ହିଁ କରିବାକୁ ପଡ଼ିଲା । ପାଉଁଶ ଉପରେ ପିଲାମାନେ ମୃଗଚର୍ମ ବିଛାଇ ଶୋଇ ପଡ଼ିଲେ । ମୁଁ ପିଲାମାନଙ୍କ ମୁଣ୍ଡପଟେ ଓ କୃଷ୍ଣା ଗୋଡତଳେ ଶୋଇବାକୁ ବାଧ୍ୟ ହେଲା । ଅତୀତର ସମସ୍ତ ସ୍ମୃତି ମନେପଡ଼ି ମୋତେ ଅସ୍ଥିର କରି ପକାଇବାରେ ଲାଗିଲା । ହସ୍ତିନା ରାଜ-ମହିଷୀ ପୁତ୍ରମାନଙ୍କ ସହିତ କିପରି ଶଯ୍ୟାରେ ଶୟନ କରିଛନ୍ତି, ଏବଂ ସର୍ବୋପରି ପାଞ୍ଚାଳ ରାଜ-ଦୁଲାଳୀ କୃଷ୍ଣାଙ୍କ ସୁକୋମଳ ତନୁଲତା କିପରି ଭସ୍ମ ବିଲେପିତ ହୋଇଛି, ଏହି ଚିନ୍ତା ମୋତେ ବିବ୍ରତ କରି ପକାଉଥାଏ । ଭାବି ଭାବି ମୁଁ ସାରାରାତି ବିନିଦ୍ର ରହିଗଲି ।

ପ୍ରଭାତ ହେଲା । ପାଞ୍ଚାଳ ନରେଶ ପଠାଇଥିବା ସୁନ୍ଦର ରଥରେ ଆମ୍ଭେମାନେ ରାଜ-ପ୍ରାସାଦରେ ପହଞ୍ଚିଲୁ । ମୋ ପିଲାମାନଙ୍କ ପ୍ରକୃତ ପରିଚୟ ଜାଣିବା ପରେ ଦ୍ରୁପଦ ଯେପରି ଭାବେ ଆନନ୍ଦିତ ହେଲେ, ତାହା ବର୍ଣ୍ଣନାତୀତ ଥିଲା । ହସ୍ତିନା ସହିତ ପାଞ୍ଚାଳର ଏ ବୈବାହିକ ସମ୍ବନ୍ଧ ମଣି-କାଞ୍ଚନର ସଂଯୋଗ ହେଲା କହି ସେ ଅତ୍ୟନ୍ତ ଉଲ୍ଲସିତ ହୋଇ ଉଠିଲେ । ମହାରାଜା ପର୍ଯ୍ୟାୟ କ୍ରମେ ମୋ ପାଞ୍ଚପୁତ୍ରଙ୍କୁ କନ୍ୟା ସଂପ୍ରଦାନ କଲେ ।

ପାଞ୍ଚାଳ ପରି ଏକ ବିରାଟ ଶକ୍ତିଶାଳୀ ରାଜ୍ୟ ସହିତ ଆମର ଘନିଷ୍ଠ ସଂପର୍କ ସ୍ଥାପିତ ହେବା ଯୋଗୁ ମୋ ମନର ବଳ ବହୁତ ବଢିଗଲା । ଏଣିକି ପାଞ୍ଚାଳର ମିତ୍ର ରାଜ୍ୟମାନେ ମଧ୍ୟ ଆମର ବନ୍ଧୁରୂପେ ବିବେଚିତ ହେବେ । ସତ କହିଲେ ପାଞ୍ଚଭାଇଯାକ ଦ୍ରୌପଦୀ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ମାତୃ ଆଦେଶ ଏକ ଛଳନା ଥିଲା ମାତ୍ର । ସେ ଯାହାହେଉ ବର୍ତ୍ତମାନ ଭାଇମାନେ ଏକମନ ଏକପ୍ରାଣ ହୋଇ ଶତ୍ରୁର ସମ୍ମୁଖୀନ ହୋଇ ପାରିବେ । ବହୁ ଦୁଃଖ ବହୁ ନିର୍ଯ୍ୟାତନା ସହି ସହି ମୋ ପିଲାମାନେ ଅତିଷ୍ଠ ହୋଇ ପଡ଼ିଲେଣି । ୟାଡକୁ ଦୁର୍ଦ୍ଦିନର ଘନ ଅନ୍ଧକାର ଘୁଞ୍ଚାଇ ଦେଇ ସୁଖ-ସୂର୍ଯ୍ୟାଲୋକ ଝରାଇ ଦେବାକୁ ମୁଁ ଈଶ୍ୱରଙ୍କ ନିକଟରେ କରୁଣ ନିବେଦନ କଲି ।

ସ୍ୱୟଂବର ପରେ ପରେ ସମସ୍ତଙ୍କ ଦୃଷ୍ଟି ଆମରି ଆଡ଼କୁ ଆକର୍ଷିତ ହେବାରେ ଲାଗିଲା । ଦୀର୍ଘଦିନ ଆତ୍ମଗୋପନ ଆଉ ସମ୍ଭବପର ହେଲା ନାହିଁ ।

ହାତୀକୁ କୁଲାରେ ଲୁଚାଇ ହୁଏ ନାହିଁ । ଆମେ ଜୀବିତ ଅଛୁ ଏ ସଂବାଦ ବିଦ୍ୟୁତ୍ ବେଗରେ ପ୍ରଚାରିତ ହେବାରେ ଲାଗିଲା । ଜତୁ ଗୃହରେ ଆମ୍ଭମାନଙ୍କର ଶୋଚନୀୟ ମୃତ୍ୟୁ ପାଇଁ ସାଧାରଣ ଜନତା ଅନ୍ଧରାଜା, ଧୂର୍ତ୍ତ ଶକୁନୀ ଓ ଗର୍ବୀ ଦୁର୍ଯ୍ୟୋଧନଙ୍କୁ ଦାୟୀ କରିଥିଲେ । ଅକସ୍ମାତ ଆମର ଆତ୍ମ-ପ୍ରକାଶ ସମସ୍ତଙ୍କ ପ୍ରାଣରେ ହର୍ଷ-ଉଲ୍ଲାସର ଢେଉ ଖେଳାଇ ଦେଲା । ମାତ୍ର ଆମର ଅସ୍ତିତ୍ୱ ଅବଗତ ହେବାପରେ କୌରବମାନଙ୍କ ମୁଣ୍ଡବ୍ୟଥା ବହୁ ପରିମାଣରେ ବୃଦ୍ଧି ପାଇବାରେ ଲାଗିଲା ।

ମୋ ପୁତ୍ର ଅର୍ଜୁନ ଲକ୍ଷ୍ୟ-ଭେଦରେ ବିଜୟୀ ହୋଇ କୃଷ୍ଣାଙ୍କୁ ଲାଭ କରିଥିବା ସଂବାଦ ଦେଢଶୁରଙ୍କୁ ବ୍ୟଥିତ କରି ପକାଉଥିଲା । ମାତ୍ର ବାହାରକୁ ସେ ନିଜର ପ୍ରସନ୍ନତା ପ୍ରକାଶ କରିବାର ନିଖୁଣ ଅଭିନୟ ଆରମ୍ଭ କରିଦେଲେ । ବିଦୁରଙ୍କୁ ଡାକି କହିଲେ,- ''ଶୁଣିଛ, ମୋ ପୁଅ ଅର୍ଜୁନ ଅସାଧ୍ୟ ସାଧନ କରିଛି । ଲକ୍ଷେ ରାଜାଙ୍କ ମୁହଁରେ କାଳିବୋଳି ସେ ଯେଉଁ ଅସାମାନ୍ୟ କୃତିତ୍ୱର ଅଧିକାରୀ ହୋଇଛି, ସେଥିପାଇଁ ମୁଁ ଅପାର ଆନନ୍ଦ ଲାଭ କରୁଛି । ସେମାନେ ବାହାରେ ପଡିଛନ୍ତି । ମୁଁ ଏକଥା ଆଦୌ ସହ୍ୟ କରି ପାରିବି ନାହିଁ । ଅତିଶୀଘ୍ର ସେମାନଙ୍କୁ ହସ୍ତିନା ଆଣିବାର ବ୍ୟବସ୍ଥା କରି ସମଗ୍ର ନଗରୀକୁ ଉତ୍ସବ-ମୁଖର କରିଦିଅ । ଏହା ଏକ ବିଜୟୀ ପୁତ୍ରର ଭାଗ୍ୟବାନ ପିତାଙ୍କ ଆଦେଶ ରୂପେ ତୁରନ୍ତ କାର୍ଯ୍ୟକାରୀ ହେଉ ।''

ମହାରାଜାଙ୍କ କୁଟୀଳ ପ୍ରକୃତି ଓ ପରଶ୍ରୀକାତରତା କାହାକୁ ଅବିଦିତ ନଥିଲା । ବିଦୁର ମନେ ମନେ ଭାବିଲେ;- ମହାରାଜା ନିଜେ ଅନ୍ଧ ହୋଇ ଅନ୍ୟମାନଙ୍କୁ ଅନ୍ଧ କରି ଦେବାର ଅପଚେଷ୍ଟା କରୁଛନ୍ତି ମାତ୍ର । ତାଙ୍କ ସ୍ୱରୂପ ବିଷୟରେ ସମଗ୍ର ରାଜ୍ୟର ଲୋକେ ଅବଗତ ହୋଇ ସାରିଲେଣି । ବିଶେଷକରି ବାରଣାବତର ଜତୁଗୃହ ଦାହରେ ପାଣ୍ଡବମାନଙ୍କୁ ଜୀଅନ୍ତା ପୋଡି ମାରିବାର ଅପକୌଶଳ ଜଣାପଡ଼ି ଯିବା ପରେ ସାଧାରଣ ଜନତା ଅନ୍ଧରାଜାଙ୍କ କୁକର୍ମକୁ ତୀବ୍ର ନିନ୍ଦା କରିବାରେ ଲାଗିଲେଣି । ବିଦୁର ଅଧିକ ସମୟ ନୀରବ ନରହି କହିଲେ,- ''ମହାରାଜ, ପୁତ୍ରର ଅସାମାନ୍ୟ କୃତିତ୍ୱ ପାଇଁ ଆପଣ ଉଲ୍ଲସିତ ହେବା ସ୍ୱାଭାବିକ; ମାତ୍ର ଅର୍ଜୁନଙ୍କ ଅସାଧାରଣ ସାଫଲ୍ୟ ଆଜି ସମଗ୍ର ଆର୍ଯ୍ୟାବର୍ତ୍ତରେ ଯେଉଁ ଚହଳ ସୃଷ୍ଟି କରିପକାଇଲାଣି ତା'ର ପଟାନ୍ତର ନାହିଁ । ଭଗବାନ ଆପଣଙ୍କୁ ଚକ୍ଷୁହୀନ କରିଦେଲେ, ନଚେତ୍ ଆଜି ହସ୍ତିନା ବାସୀଙ୍କ

ମୁହଁରେ ହର୍ଷର ଯେଉଁ ଝଲକ ସୃଷ୍ଟି ହୋଇଛି, ତାହା ଦେଖି ଆପଣ ଆହୁରି ଆପ୍ୟାୟିତ ଓ ଉତ୍‌ଫୁଲିତ ହୋଇ ଉଠିଥାନ୍ତେ । ବର୍ତ୍ତମାନ ମୁଖ୍ୟ ଚର୍ଚ୍ଚାର ବିଷୟ ହୋଇଛି-ଦୁର୍ଯ୍ୟୋଧନ, କର୍ଣ୍ଣ, ଅଶ୍ୱତ୍ଥାମା ଓ ଶକୁନୀ ଆଦି ଅନେକ ବୀର ଯୁବକ ପାଞ୍ଚାଳ ଯାଇଥିଲେ, ମାତ୍ର ଲକ୍ଷ୍ୟ ଭେଦରେ ସେମାନଙ୍କର ଶୋଚନୀୟ ଅକୃତକାର୍ଯ୍ୟତା ହସ୍ତିନାର ସମ୍ମାନକୁ ମାଟିରେ ମିଶାଇ ଦେବାକୁ ଯାଉଥିବା· ଅବସ୍ଥାରେ ଆପଣଙ୍କ ଅମିତ ପରାକ୍ରମଶାଳୀ ଅଜେୟ ପୁତ୍ର ଅର୍ଜୁନହିଁ ବଂଶର ମର୍ଯ୍ୟାଦା, ରାଜ୍ୟ ଓ ରାଜାଙ୍କ ସମ୍ମାନ ରକ୍ଷା କରି ସମସ୍ତଙ୍କ ମୁଖ ଉଜ୍ଜ୍ୱଳ କରି ଦେଇଛି । ଯେଉଁ ପିତା ମାତା ଏପରି ସନ୍ତାନ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଛନ୍ତି, ତାଙ୍କୁ ଅଜସ୍ର ଧନ୍ୟବାଦ ।'' ବିଦୂରଙ୍କ ଉକ୍ତି ମହାରାଜାଙ୍କ ଦେହରେ ବିଷଲିପ୍ତ ଶରପରି ଗଳିଗଲା । ଉଦ୍‌ଗତ କ୍ରୋଧକୁ ଚାପିବାକୁ ବାଧ୍ୟ ହୋଇ ସେ କହିଲେ,-

''କଥା କହି ସମୟ ନଷ୍ଟ କରନାହିଁ । ତୁରନ୍ତ କାର୍ଯ୍ୟାରମ୍ଭ କର । ମୋ ବୀର-ପୁତ୍ରକୁ ଆଲିଙ୍ଗନ ନକରିବା ଯାଏ ମୁଁ ସ୍ଥିର ହୋଇ ରହି ପାରିବି ନାହିଁ । ଅତିଶୀଘ୍ର ପିଲାମାନଙ୍କୁ ମୋ ପାଖକୁ ନେଇ ଆସ ।'' ହାୟ କେଉଁ ଅପରାଧରୁ ପ୍ରଭୁ ମୋତେ ଅନ୍ଧକରି ଦେଇ ଅର୍ଜୁନ ପରି ପୁତ୍ର ଓ କୃଷ୍ଣାପରି ବୋହୂକୁ ଆଖିରେ ଦେଖିବାର ସୌଭାଗ୍ୟରୁ ବଞ୍ଚିତ କରିଦେଲେ ।''

ଆମ୍ଭେମାନେ ବିଦୂରଙ୍କ ସହିତ ହସ୍ତିନା ଆସିଲୁ । ସାରା ନଗରୀ ଆନନ୍ଦ ଉତ୍ସବର କଳରୋଳରେ ମୁଖରିତ ହୋଇ ଉଠିଲା । ସମସ୍ତେ ପାଣ୍ଡବମାନଙ୍କ ଉଚ୍ଛ୍ୱସିତ ଜୟଗାନରେ ଗଗନ-ପବନ ମୁଖରିତ କରିଦେଲେ ।

ଅନ୍ତଃପୁରକୁ ପ୍ରବେଶ ସମୟରେ ମଧ ଅନୁରୂପ ହର୍ଷ ଉଲ୍ଲାସର ଲହରୀ ଖେଳି ଉଠିଥିଲା । ମୁଁ ଓ କୃଷ୍ଣା ଗାନ୍ଧାରୀଙ୍କ ପାଦସ୍ପର୍ଶ କଲୁ । ଗାନ୍ଧାରୀ କୃଷ୍ଣାକୁ ଆଲିଙ୍ଗନ କରି ଅଶେଷ ଆଶୀର୍ବାଦ ପ୍ରଦାନ କରିଥିଲେ ମଧ୍ୟ ତାଙ୍କ ମୁଖ ମଣ୍ଡଳରେ ଭାବାନ୍ତର ଲକ୍ଷ୍ୟ କରିଥିଲି ।

ଆମେ ଉଆସରେ ପ୍ରାୟ ପାଞ୍ଚବର୍ଷ ରହିଛୁ ସତ; ମାତ୍ର କୌଣସି ଗୋଟିଏ ଦିନ ଆମର ସୁଖ-ଶାନ୍ତିରେ କଟି ନଥିଲା । ବାହାରକୁ ସ୍ନେହ, ଶ୍ରଦ୍ଧା ଦେଖାଇବାରେ ତ୍ରୁଟି ହେଉନଥିଲେ ମଧ ଭିତରେ ଭିତରେ ମୂଳକାଟି ଦେବାର

ଅପେଚେଷ୍ଟା ଅବ୍ୟାହତ ରହିଥାଏ । ଆମେ ସମସ୍ତଙ୍କୁ ନିର୍ମଳ ହୃଦୟରେ ଯେତେ ଆପଣାର କରିବାକୁ ଚେଷ୍ଟା କଲେ ମଧ୍ୟ, କାହା ହୃଦୟରେ ସାମାନ୍ୟତମ ପରିବର୍ତ୍ତନ ଲକ୍ଷ୍ୟ କରି ପାରିଲୁ ନାହିଁ । ସକଳ ଚେଷ୍ଟା, ଆନ୍ତରିକ ସେବା ଓ ଅଚଳାଭକ୍ତି ଆଦି ସବୁ ବୃଥା ହୋଇ ଯିବାରେ ଲାଗିଲା । ''ପୟଃପାନ ଭୁଜଙ୍ଗାନାଂ କେବଳ ବିଷ ବର୍ଦ୍ଧନମ୍'' ପରି ଆମେ ସେବା ଓ ଭକ୍ତି ପ୍ରଦର୍ଶନ କରି ତା ବଦଳରେ ଘୃଣା, ଅନାଦର ଏବଂ ଅସହିଷ୍ଣୁତାର ବିଷରେ ଜର୍ଜରିତ ହେବାରେ ଲାଗିଲୁ । ମହାରାଜା ଆମ୍ଭମାନଙ୍କୁ ହସ୍ତିନାରୁ ଦୂରେଇ ଦେବା ପାଇଁ ଦିନରାତି ଚିନ୍ତା କରୁଥିଲେ ।

ଦିନେ ଦେଢଶ୍ଵଶୁର ମୋତେ କହିଲେ,- ''ତୁମେ ନିଶ୍ଚୟ ଅନୁଭବ କରୁଥିବ ଯେ କୌରବ ଓ ପାଣ୍ଡବ ଭାଇମାନଙ୍କ ମଧ୍ୟରେ ଧୀରେ ଧୀରେ ଶତ୍ରୁତା ବୃଦ୍ଧି ପାଇବାରେ  ଲାଗିଛି । ମୋ ମତରେ ସେମାନେ ପରସ୍ପର ଠାରୁ ଦୂରରେ ନ ରହିଲେ ଅବସ୍ଥା ସୀମା ଅତିକ୍ରମ କରିଯିବା ଅସମ୍ଭବ ନୁହେଁ । କିଛିକାଳ କୌରବମାନଙ୍କ ଠାରୁ ତୁମ ପୁତ୍ରମାନେ ଅଲଗା ରହିଗଲେ ବର୍ତ୍ତମାନ ବଢି ଆସୁଥିବା ଶତ୍ରୁତା ଆପେ ଆପେ ପ୍ରଶମିତ ହୋଇଯିବ । ଜାଣିଥିବ,- ନହୁଷ, ଯଯାତି ଆଦି ଆମର  ପୂର୍ବ  ପୁରୁଷମାନେ ଇନ୍ଦ୍ର ପ୍ରସ୍ଥରେ ରାଜତ୍ୱ କରୁଥିଲେ । ଏବେ ମଧ୍ୟ ସେଠାରେ ପୁରାତନ ରାଜବାଟୀର ଭଗ୍ନାବଶେଷ ଦେଖିବାକୁ ମିଳେ । ଦୀର୍ଘକାଳ ପରିତ୍ୟକ୍ତ ରହିବା ଫଳରେ ଚାରିଆଡ଼ କଣ୍ଟାଝଣ୍ଟା ପୂର୍ଣ୍ଣ ହୋଇ ଏହା ଏକ କ୍ଷୁଦ୍ର ଅରଣ୍ୟପରି ଦେଖାଯାଉଛି । ବହୁ ଚିନ୍ତା ପରେ ମୁଁ ଏଇ ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ, ଆମ ପୂର୍ବପୁରୁଷମାନଙ୍କର ବିସ୍ମୃତ ସ୍ମୃତିକୁ ପୁନରୁଦ୍ଧାର କରି ହସ୍ତିନାରେ କୌରବ ଓ ଇନ୍ଦ୍ରପ୍ରସ୍ଥରେ ପାଣ୍ଡବମାନେ ଅବସ୍ଥାନ କଲେ ସେମାନଙ୍କ ମଧ୍ୟରେ ଥିବା ବୈରତା ପୁଣି ଭ୍ରାତୃତ୍ୱରେ ରୂପାନ୍ତରିତ ହୋଇଯିବ । କେହି କାହାକୁ ଆଉ ଶତ୍ରୁ ଦୃଷ୍ଟିରେ ଦେଖିବେ ନାହିଁ ।''

ମୋ ପକ୍ଷରେ ହସ୍ତିନା ରାଜ ଉଆସ ଏକ ହିଂସ୍ର ଜନ୍ତୁପୂର୍ଣ୍ଣ ଅରଣ୍ୟଠାରୁ ବଳି ପଡ଼ିଥିଲା । ବହୁ ଚିନ୍ତା କରି ଦେଖିଲି ଦେଢଶ୍ଵଶୁରଙ୍କ ଏ ପ୍ରସ୍ତାବରେ କିଛି ଦୂରଭିସନ୍ଧି ଥାଇପାରେ । ମାତ୍ର ହସ୍ତିନାରୁ ଅନ୍ୟତ୍ର ଚାଲିଯିବା ଆମ ପକ୍ଷରେ ଏକାନ୍ତ ଅପରିହାର୍ଯ୍ୟ ହୋଇପଡିଥିଲା । ମୁଁ ଇନ୍ଦ୍ରପ୍ରସ୍ଥ ଯିବା ପାଇଁ ମୋର ସମ୍ମତି ଜଣାଇ ଦେଲି ।

ଇନ୍ଦ୍ରପ୍ରସ୍ଥର ପୁନରୁଦ୍ଧାର କାର୍ଯ୍ୟ ଜୋର୍ ସୋର୍‌ରେ ଚାଲିଲା । ଅଳ୍ପଦିନ ପରେ ନବନିର୍ମିତ ଇନ୍ଦ୍ରପ୍ରସ୍ଥ ଅମରାବତୀ ଠାରୁ ବଳି ଶୋଭାମୟୀ ହୋଇ ଉଠିଲା । ଅଧିକ ବିଳମ୍ବ ନକରି ଆମ୍ଭେମାନେ ହସ୍ତିନାରୁ ଇନ୍ଦ୍ରପ୍ରସ୍ଥ ଅଭିମୁଖେ ଅଗ୍ରସର ହେଲୁ । ସେଠାରେ ଅବସ୍ଥାନ କରିବା ପରେ ମହାରାଜ ଦ୍ରୁପଦ ଓ ଶ୍ରୀକୃଷ୍ଣ ମଧ୍ୟେ ମଧ୍ୟେ ଆମ୍ଭମାନଙ୍କୁ ସଙ୍ଖୋଳିବାକୁ ଆସୁଥିଲେ ।

ବର୍ତ୍ତମାନ ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥର ରାଜା । ସୁଶାସନ, ସତ୍ୟନିଷ୍ଠା ଓ ପ୍ରଜାନୁରଂଜନ ଯୋଗୁଁ ସେ ସମଗ୍ର ଜମ୍ବୁଦ୍ୱୀପରେ ପ୍ରଶଂସିତ ହେବାରେ ଲାଗିଲେ । ଅସୁମାରି ଦୁଃଖକଷ୍ଟ ଓ ନିର୍ଯ୍ୟାତନା ସହିବା ପରେ ମୁଁ ରାଜମାତାର ଗୌରବ ବିମଣ୍ଡିତା ହୋଇ ଯଥେଷ୍ଟ ଅନନ୍ଦ ଓ ଆତ୍ମତୃପ୍ତି ଲାଭ କରୁଥାଏ । ହେଲେ ରଜ୍ଜୁକୁ ସର୍ପ ଜ୍ଞାନ କରି ଆତଙ୍କିତ ହେବା ମୋର ଏକ ଅଭ୍ୟାସରେ ପରିଣତ ହୋଇ ଯାଇଥାଏ । ଜତୁଗୃହ ଦାହର ନିର୍ମମ ସ୍ମୃତି ଓ ଏହା ପୂର୍ବରୁ ଭୀମକୁ ବିଷଦେଇ ହତ୍ୟା କରିବାର ହୀନ ଚ଼କ୍ରାନ୍ତ ମୋତେ ସର୍ବଦା ଶଙ୍କାକୁଳ କରି ରଖିଥାଏ । ସୁଖ ସୁବିଧା ଓ ଆନନ୍ଦକୁ ମୁଁ ପୂର୍ଣ୍ଣପ୍ରାଣରେ ଉପଭୋଗ କରି ପାରୁ ନ ଥାଏ । କେତେବେଳେ ତୋଫାନ ଉଠି ଫୁଲ,ଫଳ ଭରା ମୋର ଏଇ ସୁନ୍ଦର ଉଦ୍ୟାନଟିକୁ ନଷ୍ଟଭ୍ରଷ୍ଟ କରିଦେବ, ଏଇ ଆଶଙ୍କା ମୋତେ ସର୍ବଦା ସଂତ୍ରସ୍ତ କରି ରଖିଥାଏ ।

ଏଥର ମୁଁ ଗୋଟିଏ ମଜ୍ଜାକଥା ଆପଣମାନଙ୍କୁ କହିବି । ଏହା ଅନ୍ୟ କିଛି ନୁହେଁ । ମୋ ପରିବାର ସଂପର୍କିତ ଏକ ଘଟଣା ମାତ୍ର । କୃଷ୍ଣ ଓ ବଳରାମଙ୍କର ସାନ ଭଉଣୀ ସୁଭଦ୍ରା ମୋର ଝିଆରୀ । ଏକମାତ୍ର କନ୍ୟା ହୋଇଥିବାରୁ ସମସ୍ତଙ୍କ ସ୍ନେହ, ଆଦର ତା' ଉପରେ ଅଜାଡି ହୋଇ ପଡୁଥାଏ । ସୁଭଦ୍ରା ମଧ୍ୟ ରୂପ, ଗୁଣ, ବିଦ୍ୟା-ବୁଦ୍ଧି ଆଦି ସକଳ ଗୁଣରେ ପରିପୂର୍ଣ୍ଣ ଏକ ଯୁବତୀ ରତ୍ନ ଭାବରେ ସେ ଖଣ୍ଡମଣ୍ଡଳରେ ପ୍ରସିଦ୍ଧିଲାଭ କରିଥାଏ । ବିବାହ ଯୋଗ୍ୟ ବୟସ ହୋଇଯିବାରୁ ବଡ଼ଭାଇ ସୁଭଦ୍ରା ପାଇଁ ଏକ ବରପାତ୍ର ସ୍ଥିର କରିଥାନ୍ତି । ମତାମତ ନ ନେଇ ବଳରାମ ଏପରି କରିବା ଦ୍ୱାରା ସୁଭଦ୍ରା ଏଥିରେ ଆଦୌ ଏକମତ ନଥିଲା । ଏକଥା ଜାଣିପାରି ଶ୍ରୀକୃଷ୍ଣ ଏକମାତ୍ର ଅଲିଅଳ ଭଉଣୀକୁ ମାନସିକ ଯନ୍ତ୍ରଣାରୁ ରକ୍ଷା କରିବା ପାଇଁ ଚିନ୍ତା କରିବାରେ ଲାଗିଲେ । ଆଗରୁ ସୁଭଦ୍ରା ମୋ ପୁଅ ଅର୍ଜ୍ଜୁନକୁ ଭଲ ପାଉଥିବା କଥା କୃଷ୍ଣଙ୍କୁ ଅବିଦିତ ନଥିଲା । ଆହୁରି ମଧ୍ୟ ଜାଣିଥିଲେ ଯେ ସୁଭଦ୍ରା କେବେହେଲେ ବଡ଼ ଭାଇଙ୍କ ପ୍ରସ୍ତାବର ବିରୋଧ

କରି ପାରିବ ନାହିଁ । ତେଣୁ ସେ ନିଜର ସ୍ୱଭାବ ସୁଲଭ ଚତୁରତା ପ୍ରୟୋଗ କରି ସୁଭଦ୍ରାକୁ ତା'ର ମନୋମତ ସାଥୀ ଅର୍ଜ୍ଜୁନ ସହିତ ବିବାହ କରାଇ ଦେଲେ । ମାତ୍ର ଏ ସମସ୍ତ କାର୍ଯ୍ୟ ଶ୍ରୀକୃଷ୍ଣଙ୍କ ସହାୟତାରେ ହେଉଛି ବୋଲି କେହି ଜାଣି ପାରିଲେ ନାହିଁ ।

ଅର୍ଜ୍ଜୁନ ସୁଭଦ୍ରାଙ୍କୁ ଦେବୀ ମନ୍ଦିର ନିକଟରୁ ହରଣ କରି ନେଉଥିବା ସଂବାଦରେ ବଳରାମ ଅତ୍ୟନ୍ତ ଉତ୍କ୍ଷିପ୍ତ ହୋଇ ଉଠିବା ଦେଖି ଚତୁର ଶ୍ରୀକୃଷ୍ଣ ତାଙ୍କ ନିକଟକୁ ଯାଇ କହିଲେ,- ''ଭାଇ, ମୁଁ ମଧ୍ୟ ସୁଭଦ୍ରା ଅପହରଣର ପ୍ରତିଶୋଧ ନେବା ପାଇଁ ଠିକ୍ ଆପଣଙ୍କ ପରି କ୍ରୋଧାନ୍ୱିତ ହୋଇ ଉଠିଥିଲି, ମାତ୍ର ଘଟଣା ସ୍ଥଳକୁ ଯାଇ ଯାହା ଦେଖିଲି ସେଥିରେ ମୋ ମୁଣ୍ଡ ତଳକୁ ହୋଇଗଲା । ଚାଲନ୍ତୁ, ମୁଁ ଆପଣଙ୍କୁ ସମସ୍ତ ଘଟଣା ଦେଖାଇ ଦେବି । ଭାଇ, ଆଶ୍ଚର୍ଯ୍ୟର କଥା- ଅର୍ଜ୍ଜୁନ ପରି ଯୋଦ୍ଧାକୁ ଆମ ସୁଭଦ୍ରା ଯବରଦସ୍ତ ଟାଣିନେଇ ରଥରେ ବସାଇଛି ଓ ନିଜେ ରଥ ଚାଳନା କରି ଅଗ୍ରସର ହେଉଛି । ଏପରି ଘଟଣାରେ ମୁଁ ଅର୍ଜ୍ଜୁନକୁ ଆଦୌ ଦୋଷୀ ବୋଲି କହି ପାରୁନାହିଁ କିମ୍ବା ଯେ ପ୍ରକୃତ ଦୋଷୀ ତା ପ୍ରତି ଦଣ୍ଡବିଧାନ କରିବାର ଶକ୍ତି ମୋର ନାହିଁ । ଆପଣ ସବୁ ଦେଖିବା ପରେ ସୁଭଦ୍ରାକୁ ଦଣ୍ଡଦେଇ ଆମ ବଂଶର ସମ୍ମାନ ରକ୍ଷା କରନ୍ତୁ । ମୁଁ କିନ୍ତୁ କିଛି କରି ନପାରି କେବଳ ମନସ୍ତାପ ଭୋଗ କରୁଛି ।''

ଭଉଣୀ ସୁଭଦ୍ରା ଏପରି କାର୍ଯ୍ୟ କରିଛି ଶୁଣି ନିଆଁରେ ପାଣି ପଡ଼ିଲା ପରି ବଳରାମଙ୍କ କ୍ରୋଧ ଆପେ ଆପେ ଶାନ୍ତ ହୋଇ ଆସିଲା । ସେ ଆଉ କରିବେ କ'ଣ ? ନିଜ ଭଉଣୀ ଏକ ମହାନ୍ ଯୋଦ୍ଧାକୁ ରଥରେ ଏକ ପ୍ରକାର ବନ୍ଦୀ କରି ବସାଇ ନିଜେ ରଥ ଚାଳନା କରିବା କଥାରେ ସେ ଖୁବ୍ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଶ୍ରୀକୃଷ୍ଣ କହିଲେ,- ''ଭାଇ, ମଉନ ମୁହଁ ସୁଭଦ୍ରା ନିଜ ଇଚ୍ଛାରେ ଅର୍ଜ୍ଜୁନକୁ ବିବାହ କରିଥିବା କଥା ସ୍ପଷ୍ଟ ହୋଇଯାଇଛି । ମୋ ମତରେ ଅଧିକ ଅଗ୍ରସର ହେଲେ ଆମେ ନିନ୍ଦିତ ହେବା ସାର ହେବ ସିନା, ଫଳ କିଛି ହେବ ନାହିଁ ।'' ଶାସ୍ତ୍ରରେ ଅଛି-ନାରୀନାଂ ଭୂଷଣ ଲଜ୍ଜା, ମାତ୍ର ଆମ ସୁଭଦ୍ରା ମୁହଁରେ ଟିକିଏ ହେଲେ ଲାଜ ଥିବା କଥା ଦେଖାଗଲାନି ।''

ବଳରାମ ପରେ ସମସ୍ତ କଥା ଅବଗତ ହୋଇଥିଲେ ଓ ଭଉଣୀର ମତାମତକୁ ଗୁରୁତ୍ୱ ଦେଇ ନଥିବାରୁ ଏପରି କାଣ୍ଡ ଘଟିଗଲା ଓ ଶ୍ରୀକୃଷ୍ଣ ଏ ନାଟକର ପୃଷ୍ଠଭାଗରେ ରହି ସୂତ୍ରଧର ରୂପେ କାର୍ଯ୍ୟ କରୁଥିବା କଥା ଆଉ ଅଛପା ରହିଲା ନାହିଁ । ଦିନ କେଇଟା ଭିତରେ ସମସ୍ତେ ସବୁକଥା ଭୁଲିଗଲେ ।

ଅର୍ଜୁନ ସହିତ ସୁଭଦ୍ରାର ବିବାହ ଫଳରେ. ଶକ୍ତିଶାଳୀ ଯାଦବମାନେ ଆମର ପରମବନ୍ଧୁ ହୋଇଗଲେ । କ୍ରମେ ଆମର ମିତ୍ରମାନଙ୍କ ସଂଖ୍ୟା ବୃଦ୍ଧି ପାଉଥିବାରୁ ମୁଁ ଅଧିକ ଆଶ୍ୱସ୍ତି ଅନୁଭବ କରୁଥାଏ ।

କିଛିଦିନ ପରେ ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ ଯୁଧିଷ୍ଠିର ଏକ ରାଜସୂୟ ଯଜ୍ଞକରି ରାଜ-ଚକ୍ରବର୍ତ୍ତୀର ସମ୍ମାନ ଲାଭ କଲେ । ଫଳରେ ବହୁରାଜା ଯୁଧିଷ୍ଠିରଙ୍କ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇ ପଡ଼ିଲେ ।

ରାଜ-ସୂୟ ଯଜ୍ଞକୁ ଆମେ କୌରବଭାଇମାନଙ୍କ ସହିତ ଅନ୍ୟମାନଙ୍କୁ ମଧ୍ୟ ନିମନ୍ତ୍ରଣ କରିଥିଲୁ । ଆଶା କରିଥିଲୁ ଆମର ଏ ଆୟୋଜନରେ କୌରବମାନେ ନିଶ୍ଚୟ ଖୁସି ହେବେ । ମାତ୍ର ଅବସ୍ଥା ''କୁଲ୍ୟାଖୋଳିକୁକୁଳ ଆହ୍ୱାନିବା'' ପରି ହୋଇଗଲା । ଭଲ ଉଦ୍ଦେଶ୍ୟ ରଖି ଆମେ ଯାହା କରି ବସିଲୁ ତହିଁରେ ଆମ ସର୍ବନାଶର ବୀଜ ନିହିତ ଥିବା କଥା ଆମେ ଆଦୌ କଳ୍ପନା ବି କରି ପାରିନଥିଲୁ । କୌରବମାନଙ୍କ ଦୂଷିତ ରକ୍ତ କୌଣସି ଉପାୟରେ ବିଶୁଦ୍ଧ କରାଯିବା ସମ୍ଭବ ହୋଇନଥିଲା । ହିଂସା, ଅସହିଷ୍ଣୁତା ଓ ପରଶ୍ରୀକାତରତା ଯେଉଁମାନଙ୍କର ଅସ୍ଥିମଜ୍ଜାଗତ, ସେମାନଙ୍କୁ ଭଲ ବାଟକୁ ଆଣିବାକୁ ଚେଷ୍ଟା କରିବା ତମ୍ପସାପକୁ କ୍ଷୀର ଖୁଆଇବା ସହିତ ସମାନ । 'ପୟଃ ପାନା ଭୁଜଙ୍ଗାନା କେବଳ ବିଷବର୍ଦ୍ଧନମ୍' ଏହା ଭୁଲିଯାଇ ଆମେ ବିପଦକୁ ନିମନ୍ତ୍ରଣ କରିବାର ଦୁର୍ଯ୍ୟୋଗ ସୃଷ୍ଟି କରିଦେଲୁ ।

ଅସାମାନ୍ୟ ପ୍ରତିଷ୍ଠା, ଅକଳନ୍ତି ବିଭବ, ସର୍ବୋପରି ବିଶିଷ୍ଟ ସ୍ଥପତି ମୟଙ୍କ ଦ୍ୱାରା ନିର୍ମିତ ଆମ ନୂତନ ରାଜପ୍ରାସାଦର ଅପୂର୍ବ ଶୋଭା ଦେଖି ସ୍ୱଭାବ ହିଂସ୍ର କୌରବମାନେ ଈର୍ଷାରେ ଜଳିବାରେ ଲାଗିଲେ । ପୁନର୍ବାର ଆମ୍ଭମାନଙ୍କୁ ସହାୟ ସମ୍ବଳ ଶୂନ୍ୟ ଭିକାରୀ ରୂପେ ରାଜରାସ୍ତାକୁ ଠେଲିଦେଇ ରମଣୀୟ ଇନ୍ଦ୍ରପ୍ରସ୍ଥ ସହିତ ଆମର ସକଳ ବିଭବକୁ କବଳିତ କରିବା ଉଦ୍ଦେଶ୍ୟରେ ସେମାନେ ଚକ୍ରାନ୍ତ ଆରମ୍ଭ କରିଦେଲେ ।

ଆମ ସୁଖଭୋଗର ଦିନ ସରି ଆସିଲା । ହସ୍ତିନାରେ ପହଞ୍ଚିବା ମାତ୍ରେ ଦୁର୍ଯ୍ୟୋଧନ କୂଟ-ବୁଦ୍ଧି ନିପୁଣ ଶକୁନୀ ସହିତ ଗୋପନ ମନ୍ତ୍ରଣା କରିବାରେ ଲାଗିଲେ । ଅଳ୍ପ ସମୟ ପରେ ଯୋଜନା ମଧ୍ୟ ପ୍ରସ୍ତୁତ ହୋଇଗଲା । କଥା ହେଲା, ହସ୍ତିନାରେ ଏକ ଅକ୍ଷକ୍ରୀଡାର ଆୟୋଜନ କରାଯିବ । ସେଥିରେ କୌରବ ଓ ପାଣ୍ଡବମାନେ ଦୁଇପକ୍ଷ ହୋଇ ଖେଳିବେ ।

କୁଚକ୍ରୀ ଶକୁନୀ ଏହି ସର୍ବନାଶୀ କ୍ରୀଡା ପାଇଁ ଯୁଧିଷ୍ଠିରକୁ ନାନା ଭାବରେ ଉତ୍ସାହିତ କରିବାରେ ଲାଗିଲା । ପ୍ରଥମେ  ଯୁଧିଷ୍ଠିର ଏ ଖେଳ ପାଇଁ ଆଗ୍ରହୀ ନଥିଲା । ଆମେ ସମସ୍ତେ ଶକୁନୀର ଚକ୍ରାନ୍ତରେ ନପଡ଼ିବା ପାଇଁ ମନା କରିଥିଲୁ । ମାତ୍ର ଶେଷକୁ ଯୁଧିଷ୍ଠିର ଖେଳିବା ପାଇଁ ସମ୍ମତି ଦେଲା । ଖେଳ ଆରମ୍ଭ ହେଲା । ଆମ ପକ୍ଷରୁ ଯୁଧିଷ୍ଠିର ଓ କୌରବଙ୍କ ପକ୍ଷରୁ ଶକୁନୀ ଖେଳିଲେ । ଆଶ୍ଚର୍ଯ୍ୟର କଥା ପ୍ରତ୍ୟେକ ଥର ଖେଳରେ ଯୁଧିଷ୍ଠିର ହାରିବାରେ ଲାଗିଲା । ଏହିପରି ଭାବରେ ସେ ଧନ, ସମ୍ପତ୍ତି, ରାଜ୍ୟ, ସିଂହାସନ ଆଦି ହାରିଯିବା ପରେ ନିଜର ଚାରିଭାଇଙ୍କୁ ପଣରଖି ମଧ୍ୟ ହାରିଗଲା । ଆଉ ତ କିଛି ନଥିଲା । ପଣ ରଖିବା ପାଇଁ ଥିଲା କେବଳ ମୂଲ୍ୟବାନ ଅଙ୍ଗ ଭୂଷଣ । ଶେଷକୁ ପରିଧେୟ ବସ୍ତ୍ର ଖଣ୍ଡକ ବ୍ୟତୀତ କୌଣସି ଭାଇ ପାଖରେ ଆଉ କିଛି ହେଲେ ସମ୍ବଳ ରହିଲା ନାହିଁ । ଯୁଧିଷ୍ଠିର ନୀରବ ରହିଲା । ମାତ୍ର ଖଳ ବୁଦ୍ଧି ଶକୁନୀ କହିଲା,- ''ଏହାହିଁ ଶେଷ ବାଜି ହେବ । କିଏ ଜାଣେ ଏହି ବାଜିରେ ତୁମେ ଜିଣିବ ଓ ସମସ୍ତ ହାରିଥିବା ବିଭବ ଏକାଥରକେ ଫେରି ପାଇବ । ଏ ସୁଯୋଗ ଛାଡିବାର ନୁହେଁ । ଆଉ ଥରକ ପାଇଁ ଖେଳି ତୁମର ସମସ୍ତ ଧନ ସମ୍ପତ୍ତି ଫେରିପାଇବାର ଅପୂର୍ବ ସୁଯୋଗକୁ ଆଦୌ ହାତଛଡା କରନାହିଁ । ଯୁଧିଷ୍ଠିର, ତୁମେ ମଧ ମୋର ଭଣଜା । ଥରେ ଚିନ୍ତା କରି ଦେଖ । ତେଣିକି ତୁମ ଇଚ୍ଛା । ସବୁ ବିଭବ ଏପରିକି ଭାଇମାନଙ୍କୁ ହରାଇ ତୁମେ ନିଶ୍ଚୟ ଦୁଃଖିତ ହେଉଥିବ । ଏ ପ୍ରକାର ହାରିଯିବାରେ ମୁଁ ମଧ ଖୁବ୍ ଦୁଃଖିତ,ମାତ୍ର ନିରୂପାୟ ହୋଇ ତୁମ ପାଇଁ କିଛି କରି ପାରୁନାହିଁ । ନାଁ, ତୁମେ ଆଉ ଥରଟିଏ ପାଇଁ ଭାଗ୍ୟ ପରୀକ୍ଷା କରିନିଅ ଯୁଧିଷ୍ଠିର । ହଁ, ପଣ ରଖିବା ପାଇଁ ତୁମ ପାଖରେ ଆଉ କିଛି ନାହିଁ, ଏକଥା ସତ; ତେବେ ଦ୍ରୌପଦୀତ ଅଛନ୍ତି । ତାଙ୍କୁ ପଣରଖି ଆଉ ବାଜିଟାଏ କାଠି ଗଡ଼ାଇଦିଅ ।'' ବାରମ୍ବାର ଏପରି ଉଚ୍ଚାଟ କରାଇବାରେ ଯୁଧିଷ୍ଠିରର ବିଚାର ଶକ୍ତି ଲୋପ  ପାଇଗଲା ଓ ସେ ଶକୁନୀର ଏ ଘୃଣ୍ୟ ପ୍ରସ୍ତାବରେ ସମ୍ମତ ହୋଇ ପାଞ୍ଚାଳୀକୁ ପଣରଖି ପୁନର୍ବାର ଖେଳିଲା । ମାତ୍ର ଶେଷଥର ପାଇଁ ମଧ ହାରିଗଲା ।

ଏହାପରେ ଯାହା ଘଟିଗଲା, ସେ କଥା କହିଲା ବେଳକୁ ମୋ ଛାତି ଥରି ଉଠୁଛି । ମୁଣ୍ଡ ବୁଲାଇ ହୋଇ ଯାଉଛି । ପାଞ୍ଚାଳୀକୁ ହାରିଯିବା ପରେ କୌରବମାନେ ଯେଉଁ ପ୍ରକାର ବିକୃତ ଆନନ୍ଦ ଉପଭୋଗ କଲେ ତାହା

ବର୍ଣ୍ଣନାତୀତ ଥିଲା । ଗର୍ବାନ୍ଧ ଦୁର୍ଯ୍ୟୋଧନ ପାଞ୍ଚାଳୀ ତାଙ୍କର ଦାସୀ ରୂପେ କାର୍ଯ୍ୟ କରିବ ବୋଲି ଘୋଷଣା କରି ଦେବା ସଙ୍ଗେ ସଙ୍ଗେ ଭ୍ରାତୃଭକ୍ତ ଭାଇ ଦୁଃଶାସନକୁ ଆଦେଶ ଦେଲା- ଯାଅ, ଅବିଳମ୍ବେ ଦାସୀ ଦ୍ରୌପଦୀକୁ ଏହି ସଭାମଧ୍ୟକୁ ଆଣି ସର୍ବ ସମକ୍ଷରେ ଉଲଗ୍ନ କର ।'' ଦୁଷ୍ଟ ଦୁଃଶାସନ ସଙ୍ଗେ ସଙ୍ଗେ ମୋର ଯୁବତୀ ବୋହୂର କେଶ ଆକର୍ଷଣ କରି କୁରୁସଭା ମଧ୍ୟକୁ ଭିଡି ଆଣିଲା ଓ ସମବେତ ସମସ୍ତ ଗୁରୁଜନଙ୍କ ସମ୍ମୁଖରେ ତାକୁ ଉଲଗ୍ନ କରିବାକୁ ଟିକିଏ ଲଜ୍ଜା ବା ସଙ୍କୋଚ ମଧ୍ୟ କରି ନଥିଲା ।

ନିୟତିର ଆଦେଶ ଅଲଙ୍ଘନୀୟ । ତା ନହୋଇଥିଲେ ଯୁଧିଷ୍ଠିର ପରି ସତ୍ୟନିଷ୍ଠ, ଧାର୍ମିକ ବ୍ୟକ୍ତି ଏପରି ଏକ ଚକ୍ରାନ୍ତର ଶିକାର ହୋଇ ଦଣ୍ଡକ ଭିତରେ ଦାଣ୍ଡର ଭିକାରୀ ହୋଇନଥାନ୍ତା । ବିଧିର ନିଷ୍ଠୁର ନିର୍ଦ୍ଦେଶ ତା'ର ସକଳ ସଦ୍‌ଗୁଣ, ଓ ବିଚାର ବୁଦ୍ଧିକୁ ସଂପୂର୍ଣ୍ଣ ଗ୍ରାସ କରି ଦେଇଥିଲା । ମୋ ପୁଅକୁ ଦୋଷ ଦେବି କାହିଁକି ? ସବୁ ସେହି ବିଧିର ଇଙ୍ଗିତ । ମଣିଷ ସବୁବେଳେ ନିୟତିର କ୍ରୀଡନକ ମାତ୍ର । ତା ନହୋଇଥିଲେ ପ୍ରବାଦ ପୁରୁଷ ରାମଚନ୍ଦ୍ର ଅକଥନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇ ନଥାନ୍ତେ ।

ସବୁ ଶେଷ ହୋଇଗଲା । ରାଜ୍ୟ ଧନ ସଂପଦ ସହିତ ଇନ୍ଦ୍ରପ୍ରସ୍ଥର ମଣିମୟ ସିଂହାସନ ହରାଇ ମୋ ପିଲାମାନେ ସତ୍ୟରକ୍ଷା ପାଇଁ ପୁନର୍ବାର ବନବାସର ଦାରୁଣ କଷ୍ଟ ଭୋଗ କରିବାକୁ ବାହାରି ପଡ଼ିଲେ । ମୁଁ ନିଜେ ବନବାସର କଷ୍ଟ ଅନୁଭବ କରିଛି । ପୁଣି ସେହି ଦୁର୍ଯ୍ୟୋଗ ଆସିବାରୁ ମୁଁ ଏକାନ୍ତ ଭାବରେ ଭାଙ୍ଗି ପଡିଲି । ମନରୁ ସମସ୍ତ ସୁଖଆଶା ଧୂଳିସାତ ହୋଇଗଲା ।

ସାମାନ୍ୟ ପଶା-ଖେଳରୁ ପାଣ୍ଡବମାନଙ୍କର ଯେଉଁ ଶୋଚନୀୟ ପରିଣତି ହେଲା, ତାକୁ ଲକ୍ଷ୍ୟ କରି ଓ ତାହାର ଅସାରତା ପ୍ରତିପାଦନ ପାଇଁ ଲୋକେ ପରବର୍ତ୍ତୀ କାଳରେ ସମାଜକୁ ଚେତାବନୀ ଦେବା ଉଦ୍ଦେଶ୍ୟରେ କହିଥିଲେ ;-

ଯୁଆ, ଶକଟା, ପାରା-ରଙ୍ଗ,
ପଶା, ନ୍ୟାୟବଳ, ବେଶ୍ୟାସଙ୍ଗ,
ଏ ଷଡ଼ କର୍ମ ଯେ କରନ୍ତି । ଆୟୁଷ ଥାଉଁ ସେ ମରନ୍ତି ।

ନିର୍ଦ୍ଦିଷ୍ଟ ଦିନ ଉପସ୍ଥିତ ହେଲା । ପାଞ୍ଚଭାଇଯାକ ବନଚାରୀ ବେଶରେ ପ୍ରାସାଦରୁ ବାହାରିବା ଦେଖି ମୋ ହୃଦୟ ବିଦୀର୍ଣ୍ଣ ହୋଇ ଉଠିଲା । ସର୍ବୋପରି ଅଲିଅଳ ରାଜ-କୁମାରୀ, ଇନ୍ଦ୍ରପ୍ରସ୍ଥର ପାଟରାଣୀ ଦ୍ରୌପଦୀର ତାପସୀ ବେଶ

ଦେଖିବା ମାତ୍ରେ ମୁଁ ଆଦୌ ନିଜକୁ ସମ୍ଭାଳି ପାରିଲି ନାହିଁ । ଅରଣ୍ୟର କଣ୍ଟକିତ ବନ୍ଧୁର ପଥରେ ସେ କିପରି ଚାଲି ପାରିବ, ସେଇକଥା ଭାବିଲା ବେଳକୁ ମୋ ଦେହ ଥରି ଉଠିଲା । ମୁଁ ନାନା ଆଶଙ୍କାରେ ଆନ୍ଦୋଳିତ ହେବାରେ ଲାଗିଥାଏ; ମାତ୍ର କୃଷ୍ଣା ମୁହଁରେ ଦୁଃଖର ଛାୟା ମଧ୍ୟ ଲକ୍ଷ୍ୟ କରି ନପାରି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଅନ୍ତଃପୁର ଓ ଅରଣ୍ୟ ମଧରେ ଥିବା ପାର୍ଥକ୍ୟର ଧାରଣା କୁସୁମ-କୋମଳା କୃଷ୍ଣାର ଅନୁଭବରେ ବା ଆସିବ କୁଆଡୁ ? ଭାବିଲି- ଦେବୀ ଜାନକୀଙ୍କରତ ଅରଣ୍ୟବାସର ଅଭିଜ୍ଞତା ନଥିଲା । ସେ ସହାସ୍ୟ ବଦନରେ ସ୍ୱାମୀଙ୍କ ସହିତ ବନଗମନ କରିଥିଲେ । ମହୀୟସୀ ଦମୟନ୍ତୀ ମହାରାଜା ନଳଙ୍କ ସହିତ ଅରଣ୍ୟକୁ ଯାଇ ଅଶେଷ ଯାତନା ଭୋଗକରି ମଧ୍ୟ ଭାଙ୍ଗି ପଡ଼ିନଥିଲେ । ମନେହୁଏ ଏହି ପ୍ରାତଃ ସ୍ମରଣୀୟା ଦେବୀମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କୃଷ୍ଣା ଯଥେଷ୍ଟ ପ୍ରେରଣା ଓ ସାହସ ଲାଭ କରି ପାରୁଛି ।

ପିଲାମାନେ ବଣକୁ ଯିବାପରେ, ମୋ ଶରୀରଟା ହସ୍ତିନାରେ ରହିଲା ସତ, ମାତ୍ର ପ୍ରାଣ-ସତ୍ତା ପିଲାମାନଙ୍କ ପଛେ ପଛେ ତାଙ୍କୁ ଅନୁସରଣ କରିବାରେ ଲାଗିଲା । ଏଥର ମୁଁ ବନକୁ ଯିବା ସମ୍ଭବପର ନଥିବାରୁ ମୋତେ ବିଦୂରଙ୍କ ନିକଟରେ ରହିବାର ବ୍ୟବସ୍ଥା କରାଯାଇଥିଲା । ବର୍ଷେ ଅଧେ ନୁହେଁ ଦୀର୍ଘ ତେରବର୍ଷକାଳ ପିଲାମାନଙ୍କୁ ଛାଡ଼ି କିପରି ବଞ୍ଚିବି ଏଇ ଚିନ୍ତା ମୋତେ ଅସ୍ଥିର କରି ପକାଇଲା । ମୁଁ ଛିନ୍ନ ରଜ୍ଜୁ ନୌକାପରି ଅତଳ ସମୁଦ୍ର ବକ୍ଷରେ ଏଣେ ତେଣେ ଭ୍ରମିବାରେ ଲାଗିଲି ।

ମୋର ମାନସିକ ଅବସ୍ଥା ସଂପର୍କରେ ବିଦୂରଙ୍କୁ କିଛି ଅଛପା ନଥିଲା । ସର୍ବଦା ବିମର୍ଷ ମନୋଭାବକୁ ଲକ୍ଷ୍ୟ କରି ଦିନେ ସେ କହିଲେ,- ''ଦେବି, ଦୁଃଖ ସହିବା ତୁମ ପକ୍ଷରେ ନୂଆ ନୁହେଁ । ଦୁଃଖ ସହି ସହି ତୁମ ଛାତି ପଥର ହୋଇ ସାରିଛି । ତେବେ ପୁଣି ଏ ସାମାନ୍ୟ ବିପତ୍ତି ପାଇଁ ହତାଶାରେ ଭାଙ୍ଗିପଡ଼ିବା ଜଣେ ସର୍ବଂସହା ନାରୀ ପକ୍ଷରେ ଉଚିତ ମନେ ହେଉନାହିଁ । ପ୍ରସନ୍ନ ଚିତ୍ତରେ ଧୈର୍ଯ୍ୟର ସହିତ ଅପେକ୍ଷା କର । ଦୁଃଖର ତାଡନାକୁ ସହ୍ୟ କରିବା ପରେ ହିଁ ସୁଖର ଦୁଆର ଖୋଲିଯାଏ । ଏକଥା ତୁମେ ଜୀବନରେ ଅନୁଭବ କରିଥିଲେ ମଧ୍ଯ ହଠାତ୍ ହତୋତ୍ସାହିତ ହେବା ଶୋଭାପାଏ ନାହିଁ । ଅତୀତରେ ତୁମେ ଯେଉଁ ସବୁ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହୋଇଛ, ତା ତୁଳନାରେ ପିଲାମାନଙ୍କର

ଏ ବନବାସ ଏକାନ୍ତ ନଗଣ୍ୟ ଓ ତୁଚ୍ଛ ଅଟେ । ମୁଁ ଯାହା କହୁଛି ତାହା ମନଦେଇ ଶୁଣ । ନିଶ୍ଚୟ ତୁମ ମନର ବଳ ବଢ଼ିଯିବ ଓ ତୁମେ ଆଗାମୀ ଦିନର ସୁଯୋଗ ପ୍ରତି ଆଶାୟୀ ହୋଇ ଉଠିବ । ଫଳରେ ବର୍ତ୍ତମାନର ଉଦାସୀନତା ଦୂର ହୋଇ ପ୍ରସନ୍ନତା ପ୍ରକାଶ ପାଇବ । ମନେରଖ- ପୃଥିବୀମାତାଙ୍କ ଅନ୍ୟନାମ ସର୍ବଂସହା । ବହୁତ ସହ୍ୟ କରିବାର ଶକ୍ତି ଥିବାରୁ ତାଙ୍କୁ ସେପରି ନାମ ଦିଆଯାଇଛି । ମାତ୍ର ଯେତେବେଳେ ପାପଭାର ବୃଦ୍ଧି ପାଇ ସତ୍ୟ, ନ୍ୟାୟ, ଧର୍ମ ଉପରେ ଅନ୍ୟାୟର ଅତ୍ୟାଚାର ବୃଦ୍ଧିପାଏ, ସେତେବେଳେ ଧରିତ୍ରୀମାତାଙ୍କ ଦୁଃଖ ସହିବାର ସୀମା ଅତିକ୍ରମ କରେ । ତେଣୁ ସତ୍ୟ, ନ୍ୟାୟ ଓ ଧର୍ମର ପୁନଃ ସଂସ୍ଥାପନ ପାଇଁ ସେ ବ୍ୟାକୁଳ ହୋଇ ପରମେଶ୍ୱରଙ୍କୁ ପ୍ରାର୍ଥନା କରନ୍ତି । ମାତାଙ୍କ ଦୁଃଖ ଦୂର କରିବା ଉଦ୍ଦେଶ୍ୟରେ ସ୍ୱୟଂ ପରମେଶ୍ୱର ମାନବରୂପେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇ ତାଙ୍କ ଦୁଃଖ-ଦୁର୍ଦ୍ଦଶା ଅଚିରେ ଦୂର କରିଥାନ୍ତି । ଦୁଷ୍ଟର ବିନାଶ ଓ ଶିଷ୍ଟର ପାଳନ ସେଇ ସର୍ବ-ନିୟନ୍ତାଙ୍କ ଅଦୃଶ୍ୟ-ହସ୍ତ ଦ୍ୱାରା ସଂପନ୍ନ ହୋଇଥାଏ । ସତ୍ୟ ଉପରେ ଅସତ୍ୟର, ନ୍ୟାୟ ଉପରେ ଅନ୍ୟାୟର ବିଜୟ କଦାପି ସମ୍ଭବ ନୁହେଁ । ଏହା ସୃଷ୍ଟିର ଆରମ୍ଭରୁ ଯୁଗଯୁଗଧରି ପ୍ରମାଣିତ ହୋଇ ଆସୁଛି । ଧ୍ରୁବ ପ୍ରହ୍ଲାଦଙ୍କ ଚରିତ ଏହାର ଜ୍ୱଳନ୍ତ ଉଦାହରଣ ।

ନିକଟ ଅତୀତର ଏକ କରୁଣ ସ୍ମୃତି ମନେ ପକାଇ ଦେଲେ ତମେ ମୋ ଉପଦେଶର ସତ୍ୟତା ଉପଲବ୍ଧି କରିପାରିବ । କହିବାକୁ ସଙ୍କୋଚ ହୁଏ । ତଥାପି ଆବଶ୍ୟକତା ଦୃଷ୍ଟିରୁ ନକହି ରହି ପାରୁନାହିଁ । ସେ ଦିନ ଗର୍ବାନ୍ଧ ଦୁଃଶାସନ ଉଦ୍ଧତ ଦୁର୍ଯ୍ୟୋଧନର ଆଦେଶ ପାଳନ କରି ହସ୍ତିନା ରାଜବଂଶର କୁଳବଧୂ କୃଷ୍ଣାଙ୍କୁ ଅନ୍ତଃପୁରରୁ ଟାଣି ଆଣି କୁରୁସଭାତଳେ ଉଲଗ୍ନ କରିବାର ବିଭତ୍ସ ଦୃଶ୍ୟ କେହି କେବେ ହେଲେ ପାସୋରି ପାରିବେ ନାହିଁ । ଶହ ଶହ କାପୁରୁଷ ମଞ୍ଚାସୀନ ହୋଇ ଏ ଘୃଣ୍ୟ ଦୃଶ୍ୟକୁ ଉପଭୋଗ କରୁଥିବା କଥା କହିଲେ କିଛି ଭୁଲ ହେବ ନାହିଁ । ମାତ୍ର ଫଳ କ'ଣ ହେଲା ? ଅମିତ ପରାକ୍ରମଶାଳୀ, ମହାବୀର ଦୁଃଶାସନ ଜଣେ ଦୁର୍ବଳା ସ୍ତ୍ରୀଲୋକ ଦେହରୁ ସାମାନ୍ୟ ବସ୍ତ୍ର ଖଣ୍ଡିକ ମଧ୍ୟ ବାହାର କରିବାକୁ ଅସମର୍ଥ ହେଲା । ଏପରିକି ଗଳଦ୍‌ଘର୍ମ ହୋଇ ତଳେ ବସି ପଡ଼ିବାକୁ ବାଧ୍ୟ ହୋଇଥିଲା । ଉଲଗ୍ନ କରିବାର ହୀନ ପ୍ରୟାସ ବୃଥା ହୋଇ ଯିବାରୁ ଉପସ୍ଥିତ ସମସ୍ତଙ୍କ ଚକ୍ଷୁ ବିସ୍ମୟ-ବିସ୍ଫାରିତ ହୋଇ ଉଠିଥିଲା । ଦ୍ରୌପଦୀଙ୍କୁ ଏ ଘୋର

ସଂକଟରୁ ଉଦ୍ଧାର କରି ତାଙ୍କ ଲଜ୍ଜା ନିବାରଣ କରିଥିଲା କିଏ ? ତୁମେ ? ମୁଁ ? ତାଙ୍କର ପଞ୍ଚ ପରାକ୍ରମୀ ପତି ? ଅଥବା ମଞ୍ଚସ୍ଥ ଗଣ୍ୟମାନ୍ୟ ବ୍ୟକ୍ତିମାନେ ? ନାଁ, କେହି କିଛି କରିବାକୁ ସମର୍ଥ ହୋଇ ପାରିଲେ ନାହିଁ । ତେବେ କେଉଁ ଅଦୃଶ୍ୟ ଶକ୍ତି ଏପରି ଘୋର ଅନ୍ୟାୟକୁ ପ୍ରତିହତ କରିଦେଲା ? ଏଥର ନିଶ୍ଚୟ ତୁମେ ମୋ କଥାର ତାତ୍ପର୍ଯ୍ୟ ଉପଲବ୍ଧି କରିବ ଓ ବର୍ତ୍ତମାନର ବିପଦକୁ ଅମ୍ଲାନ ବଦନରେ ସହ୍ୟକରି ଆଗାମୀ ଦିନର ସୁଖ ସୌଭାଗ୍ୟକୁ ଉପଭୋଗ କରିବା ପାଇଁ ଶକ୍ତି ସଞ୍ଚୟ କରିବ ।

ତୁମେ ବୀର-ପ୍ରସବିନୀ ମମତା-ମୟୀ ମାଆ । ସ୍ନେହ, ପ୍ରେମ, ବାତ୍ସଲ୍ୟ ଓ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ । ତୁମ ଅନ୍ତରର ଦୁଃଖ ମୋ ଠାରୁ କେହି ଅଧିକ ଉପଲବ୍ଧି କରି ପାରିବେ ନାହିଁ । ମନେରଖ-ସ୍ୱୟଂ ନାରାୟଣ ତୁମ ପିଲାମାନଙ୍କର ସୁରକ୍ଷା ଦାୟିତ୍ୱ ନିଜ ହାତକୁ ନେଇ ସାରିଲେଣି । ତେଣୁ ଛାର ମନୁଷ୍ୟର ହୀନ ଚକ୍ରାନ୍ତ ସେମାନଙ୍କର କେଶାଗ୍ର ମଧ୍ୟ ସ୍ପର୍ଶ କରି ପାରିବ ନାହିଁ । ଆଉ ବେଶୀଦିନ ନୁହେଁ । ଶୀଘ୍ର ମୋ କଥାର ପ୍ରମାଣ ତୁମକୁ ମିଳିଯିବ । ଧୈର୍ଯ୍ୟର ସହିତ ଅପେକ୍ଷା କର । ସବୁ କିଛି ଓଲଟ ପାଲଟ ହୋଇ ଯିବାର ସମୟ ଆସନ୍ନ ହୋଇ ଆସିଲାଣି, ଅନ୍ୟାୟ ଅନୀତି ଉପରେ ନ୍ୟାୟର ବିଜୟ ତୁମେ ନିଜେ ପ୍ରତ୍ୟକ୍ଷ କରି ପାରିବ ।''

ବିଦୂର ଜଣେ ମହାପୁରୁଷ । ସେ ନରରୂପରେ ଧର୍ମ ଦେବତାଙ୍କ ଅବତାର । ସତ୍ୟନିଷ୍ଠା, ନ୍ୟାୟ ପରାୟଣତା ଓ କ୍ରୋଧ ଶୂନ୍ୟତା ତାଙ୍କୁ ଅତି-ମାନବର ସମ୍ମାନ ପ୍ରଦାନ କରିଛି । ତାଙ୍କର ଉପାଦେୟ ଉପଦେଶ ମୋ ମନରୁ ସମସ୍ତ ନିରାଶା, ଦୁଃଖ ଓ ଅବସାଦକୁ ଧୀରେ ଧୀରେ ଦୂର କରିବାରେ ଲାଗିଲା । ଭବିଷ୍ୟତର ଉଜ୍ଜ୍ୱଳ ସମ୍ଭାବନା ସଂପର୍କରେ ସେ ଯେଉଁ ସୂଚନା ପ୍ରଦାନ କଲେ ତହିଁରେ ମୋ ଚିତ୍ତର ପ୍ରସନ୍ନତା ବୃଦ୍ଧି ପ୍ରାପ୍ତ ହେଲା । ମୁଁ ପୁଣି ରାଜମାତାର ଗୌରବ ଲାଭ କରିବା ସହିତ କୃଷ୍ଣା ରାଜରାଣୀର ସମ୍ମାନ ଫେରି ପାଇବ, ଏହି ସମ୍ଭାବନାରେ ମୁଁ ଉଲ୍ଲସିତ ହୋଇ ଉଠିଲି ।

ଅନେକ ବେଳୁ ଠିଆ ହୋଇ ମୁଁ ଏହିପରି ସ୍ୱପ୍ନ ଦେଖିବାରେ ଲାଗିଥାଏ, ବିଦୂର ଭାବିଲେ ମୁଁ ଆଉ କିଛି ପଚାରିବାକୁ ଚାହୁଁଛି, ମାତ୍ର ସଙ୍କୋଚ ବଶରୁ ପଚାରି ପାରୁନାହିଁ । ତେଣୁ ସେ କହିଲେ,- ''କଲ୍ୟାଣି; ଆଉ କିଛି ବୁଝିବାର ଥିଲେ ନିଃସଙ୍କୋଚରେ ପ୍ରକାଶ କର ।''

ମୋର ସାହସ ବଢିଗଲା । ମୁଁ ବିନୀତ ଭାବରେ କହିଲି, 'ପ୍ରଭୁ, ସର୍ବଦା ମନରେ ଆଲୋଡ଼ନ ସୃଷ୍ଟି କରୁଥିବା ଏକ ପ୍ରଶ୍ନର ସମାଧାନ ପାଇଁ ମୁଁ ଆପଣଙ୍କ ଶରଣ ନେଉଛି । ମୋର ବିଶ୍ୱାସ ଆପଣହିଁ ସେ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇ ପାରିବେ । ହେ ମହାଭାଗ, କୃଷ୍ଣାର ସୁବାସ-କୁସୁମ ବିମଣ୍ଡିତ ସୁସଜ୍ଜ କବରୀକୁ ଆକର୍ଷଣ କରି ପାପିଷ୍ଠ ଦୁଃଶାସନ କୁରୁସଭାକୁ ଟାଣି ଟାଣି ନେଇ ଆସିଲା, ତା'ର ଶତ ଆକୁଳ ଆବେଦନ ପ୍ରତି ଭ୍ରୂକ୍ଷେପ ନକରି ଅତ୍ୟନ୍ତ ନିର୍ଦ୍ଦୟ ଭାବରେ ସଭାସ୍ଥ ଗୁରୁଜନ ମାନଙ୍କ ସମକ୍ଷରେ ତାକୁ ଉଲଗ୍ନ କରିବାକୁ ପ୍ରାଣପାତ ପରିଶ୍ରମ କରୁଥିଲା । ଏକଥା ସମସ୍ତେ ଦେଖି ମଧ ଆଖି ବୁଜି ଦେଲେ କାହିଁକି ? କାହାରି ତୁଣ୍ଡରୁ ପ୍ରତିବାଦର ସାମାନ୍ୟତମ ସ୍ୱର ମଧ୍ୟ ଶୁଣା ନଯିବାର କାରଣ କ'ଣ ? ମୋର ବିଚାର ଶକ୍ତି ଅତ୍ୟନ୍ତ ସୀମିତ । ଭାବି ଭାବି କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ପାରି ନଥିଲି । ଅନୁମାନ କଲି- କୃପାଚାର୍ଯ୍ୟ, ଦ୍ରୋଣ ଓ ଅନ୍ୟ ଅନେକେ କୌରବମାନଙ୍କ ବେତନ ଭୋଗୀ କର୍ମଚାରୀ, ବହୁ ରାଜା ଓ ସମ୍ଭ୍ରାନ୍ତବ୍ୟକ୍ତି ମଧ୍ୟ କୌରବମାନଙ୍କର ଅନୁଗତ । ସେମାନେ ପ୍ରତିବାଦ କରି ଅଯଥାରେ ଦୁର୍ଯ୍ୟୋଧନ ରୋଷର ଶୀକାର ହେବାକୁ ଇଚ୍ଛା କରି ନଥିବେ । ମହାରାଜାଙ୍କ କଥା- ସେ କ'ଣ ତାଙ୍କ ପୁତ୍ରମାନଙ୍କୁ ଅତ୍ୟନ୍ତ ଭୟ କରୁଥିଲେ ? କିମ୍ବା ତାଙ୍କ ମନରେ ପାଣ୍ଡବ ବିଦ୍ୱେଷ ଏତେ ବୃଦ୍ଧି ପାଇଥିଲା ଯେ ସେ ନିଜ ପୁତ୍ରବଧୂର ଏ ଲଜ୍ଜାକର ବିଭତ୍ସ ଦୃଶ୍ୟକୁ ନୀରବ ସମ୍ମତି ପ୍ରଦାନ କରିଥିଲେ । ଚକ୍ଷୁ ନଥାଇ ସେ ଜନ୍ମରୁ ଅନ୍ଧଥିଲେ ସତ, ମାତ୍ର ସେ ଦିନ ମହାରାଜା ଜ୍ଞାନ, ବୁଦ୍ଧି, ବିବେକ ଓ ବିଚାର ଶକ୍ତିରେ ମଧ୍ୟ ଅନ୍ଧ ବୋଲି ପ୍ରମାଣିତ କରିଦେଲେ ।

ମହାଭାଗ, କୁଳବୃଦ୍ଧ ପିତାମହ ଭୀଷ୍ମଙ୍କ ଚକ୍ଷୁ ସମକ୍ଷରେ ଏ ପୈଶାଚିକ କାର୍ଯ୍ୟ ସମ୍ଭବ ହେଲା କିପରି ? ଏଇ ଗୋଟିଏ କଥା ମୋତେ ଏ ପର୍ଯ୍ୟନ୍ତ ବିସ୍ମୟ ବିମୂଢ଼ କରି ରଖିଛି । ଯେତେ ଚିନ୍ତା କଲେ ମଧ୍ୟ ଭୀଷ୍ମଙ୍କ ନୀରବତାର କାରଣ ଖୋଜି ପାଇବାରେ ମୁଁ ସମର୍ଥ ହୋଇ ପାରିନାହିଁ । ସେ ମହାତ୍ମା କାହା ପାଖରେ ଚାକିରି କରି ନାହାନ୍ତି କିମ୍ବା କାହା ଅନ୍ନରେ ପ୍ରତିପାଳିତ ମଧ ନୁହନ୍ତି । ଅଧିକନ୍ତୁ ତାଙ୍କ ସ୍ୱେଚ୍ଛାକୃତ ସିଂହାସନ ତ୍ୟାଗହିଁ କୁରୁବଂଶକୁ କ୍ଷମତାସୀନ କରିବାର ସୁଯୋଗ ପ୍ରଦାନ କରିଥିଲା । ଭୀଷ୍ମଙ୍କ ତ୍ୟାଗହିଁ କୁରୁବଂଶର ଭୋଗ ବିଳାସର ମୁଖ୍ୟ କାରଣ ଅଟେ । ଯେଉଁ ବୀରଙ୍କର କାର୍ମୁକ ଟଙ୍କାରରେ ଦେବତାମାନେ ମଧ

ପ୍ରକମ୍ପିତ ହୋଇ ଉଠନ୍ତି, ବହମାନ ନଦୀ ସ୍ରୋତର ଗତି ସ୍ଥିର ହୋଇଯାଏ, ତାଙ୍କ ଆଗରେ ସହସ୍ର ଦୁର୍ଯ୍ୟୋଧନ, ଲକ୍ଷ ଲକ୍ଷ ଦୁଃଶାସନ ତୁଚ୍ଛ ତୃଣପରି କାହିଁ କେତେ ଦୂରକୁ ଉଡିଯାଇଥାନ୍ତେ। ପିତାମହ ଯଦି ଆସନରୁ ଉଠି କ୍ରୋଧଦୀପ୍ତ ନୟନରେ ଥରେ ମାତ୍ର ଅନାଇ ଦେଇଥାନ୍ତେ, ତେବେ ସମଗ୍ର କୁରୁବଂଶୀଙ୍କ ଶରୀରରେ କମ୍ପନ ସୃଷ୍ଟି ହୋଇ ଯାଇଥାନ୍ତା। ମାତ୍ର ସେପରି ଅସାଧାରଣ ବ୍ୟକ୍ତିଙ୍କ ଅହେତୁକ ନୀରବତା ଯୋଗୁ ଏ ବଂଶର ଇତିହାସରେ ଯେଉଁ କାଳିମାମୟ ଅଧ୍ୟାୟ ସୃଷ୍ଟି ହୋଇଗଲା, ତାହା ସବୁଦିନ ପାଇଁ ଭାସ୍ୱର ହୋଇ ରହିଗଲା ସିନା।''

ମୋ କଥା ସରିଲା। ବିଦୂର ତନ୍ମୟ ଚିତ୍ତରେ ସବୁ ଶୁଣିବା ପରେ ଅଧିକ ଗମ୍ଭୀର ଦେଖାଗଲେ। ମୋ ଆଡ଼କୁ ଅନାଇ କହିଲେ,- ''ତୁମ ସନ୍ଦେହ ଓ ଅନୁମାନ ଯଥାର୍ଥ। ଗଭୀର ଭାବରେ ଚିନ୍ତା କରି ଦେଖିଲେ ଜଣାଯାଏ ଯେ,- ଅନ୍ୟାୟ ଓ ଅତ୍ୟାଚାର ସୀମା ଲଙ୍ଘନ ନକଲେ ପ୍ରଭୁଙ୍କ ଯୋଗନିଦ୍ରା ଭଙ୍ଗ ହୁଏ ନାହିଁ। ସ୍ମରଣଥିବ ନିଶ୍ଚୟ କୌରବମାନେ କ୍ରମ-ବର୍ଦ୍ଧିଷ୍ଣୁ ଭାବରେ ଅନ୍ୟାୟ କରି ଆସୁଛନ୍ତି। ସେମାନଙ୍କ ପାପର ପସରା ପୂରି ପୂରି ଆସୁଛି। ଅଳ୍ପଦିନ ପରେ ଅଧିକ ପାପ ସେ ପସରାରେ ଆଉ ଧରିବ ନାହିଁ। ଯେତେବେଳେ ପାପସବୁ ପସରାରୁ ଖସି ତଳେ ଗଦା ହେବ ସେହି ପର୍ଯ୍ୟନ୍ତ ତୁମକୁ ଧୈର୍ଯ୍ୟର ସହିତ ଅପେକ୍ଷା କରିବାକୁ ହେବ। ତାହା ପୁଣି ଆଉ ଅଧିକ ଦିନର କଥା ମଧ୍ୟ ନୁହେଁ।

ଶୁଣ, ସତ୍ୟସନ୍ଧ ଯୁଧିଷ୍ଠିର ଅନୁଜମାନଙ୍କୁ ଏକାନ୍ତ ଭାବରେ ହୀନବୀର୍ଯ୍ୟ କରି ବସାଇ ଦେଇଥାନ୍ତି। ସେପରି ହୋଇନଥିଲେ କୁରୁସଭାରେ ଲଙ୍କାକାଣ୍ଡ ସଂଘଟିତ ହୋଇଥାନ୍ତା। ତଥାପି ଏକାନ୍ତ ଅସହ୍ୟ ହେବାରୁ ଭୀମ କାର୍ଯ୍ୟତଃ କିଛି ନକରି ମଧ୍ୟ ଦୃପ୍ତ କଣ୍ଠରେ ଯେଉଁ ଉଦ୍‌ଘୋଷଣ କରିଦେଲା, ସେଥିରେ ଅନେକଙ୍କ ଦେହରୁ ରକ୍ତ ଶୁଖି ଯାଇଥିଲା। ହୃତ୍‌ସ୍ପନ୍ଦନର ଗତି ତୀବ୍ରତର ହୋଇ ଉଠିଥିଲା। ମନେ ପକାଅ ଭୀମ ଗର୍ଜିଉଠି କହିଲା,- ''ଯେ ପର୍ଯ୍ୟନ୍ତ ମୁଁ ପାପିଷ୍ଠ ଦୁଃଶାସନ ବକ୍ଷର ଉଷ୍ଣରକ୍ତରେ ଦ୍ରୌପଦୀଙ୍କ କେଶ ଆର୍ଦ୍ର ନ କରିଛି, ସେ ପର୍ଯ୍ୟନ୍ତ ତାଙ୍କ କେଶଗୁଚ୍ଛ ଉନ୍ମୁକ୍ତ ଓ ତୈଳହୀନ ହୋଇ ରହିବ। ଏହା ମୋର ଅଟଳ ପ୍ରତିଜ୍ଞା।

ପୁନଶ୍ଚ ଦୁର୍ଯ୍ୟୋଧନ କୃଷ୍ଣାଙ୍କୁ ବେଶ୍ୟା ବୋଲି କହି ତାଙ୍କୁ ଜାନୁରେ ବସାଇବାର କୁତ୍ସିତ ଇଙ୍ଗିତ ଭୀମଙ୍କ ରକ୍ତରେ କମ୍ପନ ସୃଷ୍ଟି କରିଥିଲା। ସେ ଅତ୍ୟନ୍ତ

ଉତ୍କ୍ଷିପ୍ତ ହୋଇ ବଜ୍ର ନିର୍ଘୋଷରେ ଘୋଷଣା କଲା,- ‘‘ରେ ପାପିଷ୍ଠ ମନ୍ଦମତି, ହୀନ ଦୁର୍ଯ୍ୟୋଧନ, ତୋର କାଳ ପୂରି ଆସିଲାଣି । ମତିଭ୍ରମ ଅତି ମାତ୍ରାରେ ବୃଦ୍ଧି ପାଇଲାଣି । ତୁ ମାତୃ-ସମା ଦ୍ରୌପଦୀଙ୍କୁ ଯେଉଁ କୁତ୍ସିତ ଇଙ୍ଗିତ କରିଛୁ ତା’ର ପ୍ରତିଫଳ ମୁଁ ନିଶ୍ଚୟ ଦେବି । ମାତା ଧରିତ୍ରୀ ତୋ ପରି ଏକ କୁଳାଙ୍ଗାର ପୁତ୍ରକୁ ବକ୍ଷରେ ଧରି ଅଧିକ ଦିନ ସନ୍ତାପିତ ହେବାକୁ ଚାହୁଁ ନାହାନ୍ତି । ପାଣ୍ଡବ-ପାଟ-ମହିଷୀ ମହୀୟସୀ କୃଷ୍ଣାଙ୍କୁ ତୁ ଯେଉଁ ଜାନୁ ଉପରେ ବସାଇବାର ଘୃଣ୍ୟ ଇଙ୍ଗିତ ଦେଇଥିଲୁ, ମୁଁ ତ୍ରିବାର ସତ୍ୟକରି ଦଶଦିଗ ପାଳଙ୍କୁ ସାକ୍ଷୀରଖି ପ୍ରତିଜ୍ଞା କରୁଛି- ତୋର ସେହି ବଜ୍ରସମ ବଳିଷ୍ଠ ଜାନୁକୁ ମୁଁ ଗଦା ପ୍ରହାର କରି ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବି । ପୃଥିବୀର କୌଣସି ଶକ୍ତି ତୋତେ ରକ୍ଷା କରି ପାରିବ ନାହିଁ । ମୁଁ ତୁମ ମୂଳ ଓ ମୁଖ୍ୟ ପ୍ରଶ୍ନ ସମ୍ବନ୍ଧରେ ଅର୍ଥାତ ଭୀଷ୍ମଦେବଙ୍କ ଅହେତୁକ ନୀରବତା ସଂପର୍କରେ ଏତିକି କହିବିଯେ, ତୁମ ପରି ଅନେକେ ଭୀଷ୍ମଙ୍କ ନୀରବତାକୁ ପସନ୍ଦ କରି ନାହାନ୍ତି । ଏକଥା ମୁଁ ଜାଣେ । ତଥାପି ଏତିକି କହିବିଯେ, କୌରବ ମାନଙ୍କ ଅନ୍ୟାୟ, ଅତ୍ୟାଚାର, ବ୍ୟଭିଚାର ଓ ଔଦ୍ଧତ୍ୟକୁ ପ୍ରଶ୍ରୟ ନଦେଲେ ଅତିଶୀଘ୍ର ସେମାନଙ୍କ ପତନ ହେବନାହିଁ । ତେଣୁ ପୃଥିବୀରେ ନ୍ୟାୟ ପ୍ରତିଷ୍ଠା ବିଳମ୍ବିତ ହୋଇଯିବ । ବୋଧହୁଏ କୌରବମାନଙ୍କୁ ଉପଯୁକ୍ତ ଶିକ୍ଷାଦେବା ପାଇଁ ସେ ସେମାନଙ୍କର ଅଧିକରୁ ଅଧିକ ଅନ୍ୟାୟ କାର୍ଯ୍ୟକୁ ମଧ ବାଧା ଦେଉନଥିଲେ । ସେ ସଂପର୍କରେ ଆଉ ଚିନ୍ତା କରି ମନକୁ ଭାରାକ୍ରାନ୍ତ ନକରିବା ପାଇଁ ମୁଁ ପରାମର୍ଶ ଦେଉଛି । ତୁମେ ମନରୁ ସକଳ ଚିନ୍ତା ଦୂର କରି ରାତ୍ରିର ଘନ ଅନ୍ଧକାର ପରେ ନବୋଦିତ ବାଳ ସୂର୍ଯ୍ୟର ରକ୍ତିମ କିରଣକୁ ପ୍ରତୀକ୍ଷା କର ।’’

ସବୁଶୁଣି ଅନେକ ଆଶା ଓ ନୂତନ ଉଦ୍ଦୀପନା ନେଇ ମୁଁ ସହର୍ଷ ବଦନରେ ବିଦୂରଙ୍କ ନିକଟରୁ ଫେରିଲି ।

ବର୍ଷପରେ ବର୍ଷ ବିତିବାରେ ଲାଗିଲା । ବାରବର୍ଷ ବନବାସ ପରେ ଏକବର୍ଷ ଅଜ୍ଞାତବାସ ସମୟକୁ ପିଲାମାନେ ବିରାଟ ରାଜାଙ୍କ ଦରବାରରେ ଏକ ଏକ ଛଦ୍ମନାମରେ ଆତ୍ମଗୋପନ କରିଥିଲେ । ଏହି ସମୟରେ ବିରାଟଙ୍କ ଗୋ-ସମ୍ପଦକୁ କୌରବମାନେ ବଳପୂର୍ବକ ହରଣ କରି ନେଉଥିବା ସମ୍ବାଦରେ ସମସ୍ତେ ଆତଙ୍କିତ ହୋଇ ପଡ଼ିଲେ । ବିରାଟ ରାଜା ଅନ୍ୟତ୍ର ଚାଲି ଯାଇଥିବାରୁ ଦୁଷ୍ଟ କୌରବମାନଙ୍କୁ ପ୍ରତିରୋଧ କରି ଗୋଧନ ସଂପଦକୁ ଉଦ୍ଧାର କରିବା ପାଇଁ

କେହି ସାହସ କରି ନଥିଲେ । ଏହି ଘଡିସନ୍ଧି ମୁହୂର୍ତ୍ତରେ ମୋ ପୁଅ ଅର୍ଜୁନ ଛଦ୍ମବେଶରେ ଯାଇ କୌରବ ସେନାଙ୍କ ହାତରୁ ଗୋଧନ ସଂପଦକୁ ଅନାୟାସରେ ଉଦ୍ଧାର କରି ଆଣିଥିଲା । ଅମିତ ପରାକ୍ରମଶାଳୀ କୌରବ ବାହିନୀକୁ ଏକାକୀ ପରାସ୍ତ କରିଥିବା ବ୍ୟକ୍ତି କିଏ ହୋଇ ପାରେ ? ଏଥିପାଇଁ ଦୁର୍ଯ୍ୟୋଧନ ଓ ସମସ୍ତ କୌରବ ବାହିନୀ ଘୋର ଚିନ୍ତିତ ହୋଇ ପଡ଼ିଲେ । ଅର୍ଜୁନ ବ୍ୟତୀତ ଏ ଦୁଃସାଧ୍ୟ କାର୍ଯ୍ୟ ଅନ୍ୟ କାହା ପକ୍ଷରେ ସମ୍ଭବ ନୁହେଁ ବୋଲି ସମସ୍ତଙ୍କର ସ୍ପଷ୍ଟ ଧାରଣା ହୋଇଗଲା । ତେଣୁ ମନ୍ଦବୁଦ୍ଧି ଦୁର୍ଯ୍ୟୋଧନ ପାଣ୍ଡବ-ବିନାଶ ପାଇଁ ସଖା, ସୋଦର ଓ ବନ୍ଧୁ ବାନ୍ଧବ ମାନଙ୍କ ସହିତ ମନ୍ତ୍ରଣାରତ ରହିଲା ।

ମୋ ପିଲାମାନଙ୍କର ଅଜ୍ଞାତବାସ ଅବଧି ଶେଷ ହୋଇ ଯାଇଛି । ଏ ସଂବାଦ ବିଦୂରଙ୍କ ଠାରୁ ପାଇ ମୁଁ ଯେତିକି ଆନନ୍ଦିତ ହେଲି, ଦୀର୍ଘ ତେର ବର୍ଷର ଅକଥନୀୟ ନିର୍ଯ୍ୟାତନା ଭୋଗ କରିବା ପରେ ମଧ୍ୟ କୌରବମାନଙ୍କର ପାଣ୍ଡବ-ବିଦ୍ୱେଷ ଅଣୁମାତ୍ର ପ୍ରଶମିତ ହୋଇନାହିଁ ଜାଣି ତତୋଧିକ ଆଶଙ୍କାରେ ଅସ୍ଥିର ହୋଇ ଉଠିଲି । କେବଳ ଦୁଃଖ, ନିର୍ଯ୍ୟାତନା ଓ ମନସ୍ତାପ ଅନଳରେ ବାରମ୍ବାର ଦଗ୍ଧ ହୋଇ ବଞ୍ଚି ରହିବା ପାଇଁ ମୁଁ ଜନ୍ମ ହୋଇଛି ବୋଲି ଧରି ନେଲି । ଭାଗ୍ୟ ବିଡମ୍ବନାରୁ ମୁଁ କୌଣସି ସୁଖକୁ ସୁଖବୋଲି ଅନୁଭବ କରିବାକୁ ସମୟ ପାଉନଥିଲି ।

ମହର୍ଷି ବ୍ୟାସ ଥରେ କହିଥିଲେ,- ''କୁରୁ ପାଣ୍ଡବଙ୍କ ମଧ୍ୟରେ ସଖ୍ୟ ବା ବନ୍ଧୁତା ଆଦୌ ସମ୍ଭବ ନୁହେ । ଶତଚେଷ୍ଟା, ଲକ୍ଷ ଉଦ୍ୟମ ସତ୍ତ୍ୱେ ନିୟତିର ଗତିକୁ କେହି ବଦଳାଇ ପାରିବେ ନାହିଁ । ଅତିଶୀଘ୍ର ଭ୍ରାତୃ ବିବାଦର ସୂତ୍ରପାତ ହେବ ଏବଂ କୌରବ ଓ ପାଣ୍ଡବ ଦୁଇପକ୍ଷ ହୋଇ ଏକ ମହାଯୁଦ୍ଧରେ ବ୍ୟାପୃତ ହେବେ ।''

ବ୍ୟାସଙ୍କ ଭବିଷ୍ୟବାଣୀ କେବେ ହେଲେ ମିଥ୍ୟା ପ୍ରମାଣିତ ହୋଇନାହିଁ । ତେଣୁ ଯୁଦ୍ଧପାଇଁ ପ୍ରସ୍ତୁତ ହେବା ଏକାନ୍ତ ପ୍ରୟୋଜନ ବୋଲି ମୋର ଧାରଣା ସ୍ପଷ୍ଟ ହୋଇଗଲା । ଏଥିପାଇଁ ଶକ୍ତି ସଂଚୟ ଏକ ଅପରିହାର୍ଯ୍ୟ ଆବଶ୍ୟକତା । ତେଣୁ ସେ ଦିଗରେ ଉଦ୍ୟମ କିପରି ଅବ୍ୟାହତ ରଖାଯିବ, ତାହା ଚିନ୍ତା କରିବା ସଙ୍ଗେ ସଙ୍ଗେ ମୋ ପିଲାମାନଙ୍କୁ ଅକାରଣରେ ଆଉ ଅଧିକ ଦୁଃଖ ନ ଦେବା ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କଲି ।

ମୁଁ ଏହିପରି ଭବିଷ୍ୟତ ଚିନ୍ତାରେ ଥଳକୂଳ ପାଉନଥିବା ବେଳେ ବିଦୂର ଆସି କହିଲେ,- ''ମୁଁ ତୁମକୁ ଏକ ଅତ୍ୟନ୍ତ ଶୁଭ ଖବର ଦେବାକୁ ଆସିଛି । ସେ ଖବର ଶୁଣି ତୁମେ ନିଶ୍ଚୟ ପୁଲକିତ ହୋଇ ଉଠିବ । ବିରାଟ ମହାରାଜାଙ୍କ ଅତ୍ୟନ୍ତ ରୂପବତୀ ଓ ଗୁଣବତୀ କନ୍ୟା ଉତ୍ତରାଙ୍କୁ ତୁମ ନାତି ସୁଭଦ୍ରା ନନ୍ଦନ ଅଭିମନ୍ୟୁ ବିବାହ କରିଛି ।'' ସତରେ ଏ ଖବର ଶୁଣିବା ମାତ୍ରେ ମୁଁ ଆନନ୍ଦରେ ଅଧୀର ହୋଇ ଉଠିଥିଲି । ବିବାହର ଆନନ୍ଦ ବ୍ୟତୀତ ଆଉ ଏକ ଆନନ୍ଦ ମୋତେ ଆତ୍ମହରା କରି ପକାଇଥିଲା । ବିରାଟ-ରାଜାଙ୍କ ବନ୍ଧୁତ୍ୱ ମୋ ପିଲାମାନଙ୍କୁ ଅକୃତ୍ରିମ ସାହାଯ୍ୟ କରିବ ଏହି ସମ୍ଭାବନାହିଁ ମୋତେ ସମଧିକ ଉତ୍ସାହିତ କରିଥିଲା ।

ବିଭିନ୍ନ ରାଷ୍ଟ୍ରମୁଖ୍ୟଙ୍କ ସହିତ ଆମର ସଂପର୍କ ଓ ବନ୍ଧୁତା ବୃଦ୍ଧି ପାଉଥାଏ । ଆସନ୍ନ ଯୁଦ୍ଧରେ ଉପଯୁକ୍ତ ପ୍ରତିଶୋଧ ନେବା ପାଇଁ ବିରାଟ ରାଜାଙ୍କ ଶକ୍ତି ମୋ ପିଲାଙ୍କ ପକ୍ଷ ଗ୍ରହଣ କରି ନିଶ୍ଚୟ ଅନ୍ୟାୟ ଉପରେ ନ୍ୟାୟର ବିଜୟ-ବୈଜୟନ୍ତୀ ଉଡାଇବାରେ ସହାୟକ ହେବ, ଏ ଧାରଣା ମୋର କ୍ରମେ କ୍ରମେ ଦୃଢୀଭୂତ ହେବାରେ ଲାଗିଲା ।

କୌରବ ଓ ପାଣ୍ଡବମାନେ ଉଭୟେ ଉଭୟଙ୍କର ପରମଶତ୍ରୁ ହୋଇ ଉଠିଥିଲେ । ପାଣ୍ଡବମାନଙ୍କୁ ଧରାପୃଷ୍ଠରୁ ନିଶ୍ଚିହ୍ନ କରି ଦେବା ପାଇଁ କୌରବ କୁଳ ସର୍ବଦା ଷଡ଼ଯନ୍ତ୍ରରେ ଲିପ୍ତ ରହିଥିଲେ ମଧ୍ୟ ଆମ ପକ୍ଷରେ ବହୁ ରାଜା ମହାରାଜା ଯୋଗ ଦେବାରେ ଲାଗିଥାନ୍ତି । ଗୋଟିକ ପରେ ଆଉ ଗୋଟିଏ ପରାକ୍ରାନ୍ତ ରାଜ-ଶକ୍ତିର ସହାୟତା ଅଯାଚିତ ଭାବରେ ମିଳିଯାଉଥିବାରୁ ମୋର ଉତ୍ସୁକତା ବଢି ବଢି ଯାଉଥାଏ । ଯୁଦ୍ଧ ଆରମ୍ଭ ହୋଇ ଯାଉ, ଏହାହିଁ ମୁଁ କାମନା କରୁଥାଏ । ଭାଇ ଭାଇ ମଧ୍ୟରେ ଯୁଦ୍ଧ ଦୂଷଣୀୟ । ମାତ୍ର ଭାଇ ଯେତେବେଳେ କ୍ଷମତା ମୋହରେ ଅନ୍ଧ ହୋଇ ସତ୍ୟ, ଧର୍ମ ଓ ନ୍ୟାୟକୁ ପଦଦଳିତ କରେ, ପବିତ୍ର ଭ୍ରାତୃତ୍ୱକୁ କଳଙ୍କିତ କରିବା ପାଇଁ ନାନା ଚକ୍ରାନ୍ତରେ ଲିପ୍ତ ରହେ, ସେତେବେଳେ ଧର୍ମ, ସତ୍ୟ ଓ ନ୍ୟାୟର ପୁନଃ ପ୍ରତିଷ୍ଠା ନିମନ୍ତେ ପିତା, ପୁତ୍ର ବା ଆତ୍ମୀୟ ସ୍ୱଜନଙ୍କ ସଂପର୍କକୁ ଭୁଲିଯିବା ଏକାନ୍ତ ଅପରିହାର୍ଯ୍ୟ ହୋଇପଡ଼େ । କୌରବମାନଙ୍କ ଅନ୍ୟାୟର ପ୍ରତିଶୋଧ ନେବା ପାଇଁ ମୋ ପ୍ରାଣ ଅସ୍ଥିର ହୋଇ ଉଠୁଥାଏ । ଦୀର୍ଘ ତେର ବର୍ଷର ବ୍ୟବଧାନ ପରେ ପିଲାମାନଙ୍କୁ ଆଖି ପୂରାଇ ଦେଖିବା ପାଇଁ ମନ ଚଞ୍ଚଳ ହୋଇ ଉଠିଲା ।

ପାଞ୍ଚ ଭାଇ ଯାକ ଉପପ୍ଲବ୍ୟ ନଗରୀରେ ଅବସ୍ଥାନ କରୁଥାନ୍ତି । ଖବର ମିଳିଲା,- ଶ୍ରୀକୃଷ୍ଣ ଦୂତରୂପେ ହସ୍ତିନା ଆସୁଛନ୍ତି । ସର୍ତ୍ତ ପୂରଣ ପରେ ପାଣ୍ଡବମାନେ ସେମାନଙ୍କର ନ୍ୟାୟୋଚିତ ପ୍ରାପ୍ୟ ପାଇବା ଉଚିତ- ଏହି ବାର୍ତ୍ତା ନେଇ ସେ ହସ୍ତିନାର ଅନ୍ଧରାଜାଙ୍କ ନିକଟକୁ ଆସିବା ସ୍ଥିର ହୋଇଥାଏ ।

ଶ୍ରୀକୃଷ୍ଣ ହସ୍ତିନା ଆସି ମୋତେ ପ୍ରଣାମ ଜଣାଇଲେ । ତାଙ୍କର ଚିର ପ୍ରସନ୍ନ ବଦନ ଓ ମୃଦୁ ହାସ୍ୟ ମୋତେ ଆପ୍ୟାୟିତ କରିପକାଇଲା । ମୁଁ ତାଙ୍କୁ କୋଳାଗ୍ରତ କରି କାନ୍ଦି ଉଠିଲି । ଉଦ୍‌ଗତ ଅଶ୍ରୁଧାର ତାଙ୍କ ସ୍ନିଗ୍ଧକୁନ୍ତଳକୁ ଆର୍ଦ୍ର କରି ପକାଇଲା । ସେ ମୋତେ ଆଶ୍ୱାସନା ଦେଇ କହିଲେ, ''ମା, ଦୁଃଖର ଅବସାନ ଆସନ୍ନ ପ୍ରାୟ । ଏତେବେଳେ ଅଶ୍ରୁ ନୁହେ ଉଲ୍ଲାସର ପ୍ରୟୋଜନ ଅଧିକ । ମନରୁ ସମସ୍ତ ଚିନ୍ତା ଦୂରକର । ପିଲାମାନେ ଅତିଶୀଘ୍ର ତୁମ ନିକଟକୁ ଆସିବା ପାଇଁ ବ୍ୟାକୁଳତା ପ୍ରକାଶ କଲେଣି । ସମୟ ଅଳ୍ପ । ମୋତେ ବିଦାୟ ଦିଅ । ମୁଁ ମୋ କାମ ସାରି ପୁଣି ତୁମକୁ ସାକ୍ଷାତ କରିବି ।''

ଆଗରୁ ଖବର ପାଇଥିଲି । କୃଷ୍ଣ ପୁଣି ସେଇ କଥା ମୋ ଆଗରେ ବୟାନ କରିବାରୁ ମୋ ସର୍ବାଙ୍ଗରେ ନିଆଁ ଲାଗିଗଲା । ମୁଁ ନିଜକୁ ଆୟତରେ ରଖି ନପାରି ଉତ୍ତେଜିତ କଣ୍ଠରେ କହିଲି,- ''କୃଷ୍ଣ, ହସ୍ତିନା ମହାରାଜା ପଣ୍ଡୁଙ୍କ ସୁପୁତ୍ରମାନେ କେବଳ ଭିକ୍ଷାନ୍ନରେ ପ୍ରତିପାଳିତ ହେବା ପାଇଁ ଜନ୍ମ ହୋଇଥିଲେ କି ? ଅନ୍ୟାୟ ଭାବରେ, ଅଧର୍ମ ଆଚରଣ କରି କୌରବମାନେ ବିଳାସପୂର୍ଣ୍ଣ ଜୀବନ ଯାପନ କରୁଛନ୍ତି । ସକଳ ସୁଖ, ସ୍ୱାଚ୍ଛନ୍ଦ୍ୟ କେବଳ ସେହି କପଟୀ, କୁଚକ୍ରୀ କୌରବମାନଙ୍କର ଏକଚାଟିଆ ଅଧିକାର ରୂପେ ସାବ୍ୟସ୍ତ ହୋଇ ଗଲାଣି । କୌରବମାନେ ବିନାଦୋଷରେ ମୋ ପିଲାମାନଙ୍କୁ ବାରଦ୍ୱାର ଶୁଣ୍ଢିପିଣ୍ଡାବୁଲାଇ ମଧ୍ୟ ଶାନ୍ତି ପାଇ ନାହାନ୍ତି । କଳେବଳେ କୌଶଳେ ପାଣ୍ଡବମାନଙ୍କ ନାମ ଧରାପୃଷ୍ଠରୁ ଲିଭାଇ ଦେବାପାଇଁ ଯେଉଁ କୌରବକୁଳ ଦିନରାତି କୁମନ୍ତ୍ରଣାରେ ଲିପ୍ତ; ସେଇ ନୃଶଂସ, ଅତ୍ୟାଚାରୀ ଅବିବେକୀ ମାନଙ୍କ ନିକଟକୁ ଭିକ୍ଷାଝୁଲି ଧରି ଯିବାକୁ ତୁମକୁ ଲଜ୍ଜା ଲାଗୁନାହିଁ ? ହସ୍ତିନା ରାଜପୁରୀ କେବଳ ହୃଦୟ-ହୀନ ହିଂସ୍ର ପଶୁପୂର୍ଣ୍ଣ ଏକ ଅରଣ୍ୟରେ ପରିଣତ ହୋଇ ପଡିଛି । ଏହି ଅରଣ୍ୟର ଅନ୍ଧ ପଶୁରାଜ ଏକାନ୍ତ ଭାବରେ ପରଶ୍ରୀକାତର ଓ ହୀନମନା । ଅନ୍ୟପ୍ରତି ବିଶେଷ କରି ପାଣ୍ଡବମାନଙ୍କ ପ୍ରତି ସ୍ନେହ, ସହାନୁଭୂତି ବା ଦୟା ପ୍ରଦର୍ଶନ କରିବା

ତାଙ୍କ ଜନ୍ମ ପତ୍ରିକାରେ ନାହିଁ । ଅସୂୟା ବିଷରେ ତାଙ୍କ ସମଗ୍ର ଶରୀର ଜର୍ଜରିତ । ଦୁର୍ଯ୍ୟୋଧନ, ଦୁଃଶାସନ ଆଦି ସମସ୍ତେ ସେହି ବିଷରୁ ଜନ୍ମ । ଶତଚେଷ୍ଟା ସତ୍ତ୍ୱେ ସେମାନଙ୍କଠାରୁ ନ୍ୟାୟ ବିଚାର ଆଶା କରିବା ବିଡମ୍ବନା ମାତ୍ର । କୌରବ ମାନଙ୍କ କ୍ରୂରତା ସଂପର୍କରେ ମୋ ଠାରୁ କେହି ଅଧିକ ଜାଣି ନଥିବେ । ନିର୍ଯ୍ୟାତନା ସହି ସହି ମୁଁ ପଥର ପାଲଟି ଯାଇଛି । ଦୟା, କ୍ଷମା, ସ୍ନେହ, ମମତା ଆଦି ଯାବତୀୟ ସଦ୍‌ଗୁଣ ମୋ ଠାରୁ ଅନ୍ତର୍ହିତ ହୋଇ ଯାଇଛି । ରହିଛି କେବଳ ପ୍ରତିଶୋଧର ଲେଲିହାନ ଅଗ୍ନି ଶିଖା । ସେହି ପ୍ରତିହିଂସା ବହ୍ନି ମୋର ସମଗ୍ର ଶରୀରକୁ ପ୍ରତିନିୟତ ପୋଡିପକାଇବାରେ ଲାଗିଛି । ଭିକ୍ଷା ନୁହେଁ, ଯୁଦ୍ଧହିଁ କେବଳ ମୋ ଅନ୍ତରରେ ଜଳୁଥିବା ବହ୍ନିକୁ ନିର୍ବାପିତ କରିବ । ମନେରଖ- ତୁମେ ଯେଉଁ ମହତ-ଉଦ୍ଦେଶ୍ୟ ନେଇ ସେ କୁଳାଙ୍ଗାର ମାନଙ୍କ ନିକଟକୁ ଯାଉଛ, ତାହା ନିଶ୍ଚୟ ବୃଥା ହେବ । ତୁମ ଅକୃତକାର୍ଯ୍ୟତାରେ ମୁଁ ସବୁଠାରୁ ବେଶୀ ସୁଖୀ ହେବି । ମୋତେ ଯୁଦ୍ଧର ଭୟାବହତା ବ୍ୟତୀତ ଆଉ କିଛି ଦେଖାଯାଉନାହିଁ ।

ମନେରଖ ବାବୁ- ତୁମେ ନିଶ୍ଚୟ ରିକ୍ତ ହସ୍ତରେ ଫେରିବ, ଏଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ । ତଥାପି କହି ରଖୁଛି, ଯଦି ଭିକ୍ଷାଦ୍ୱାରା ପାଣ୍ଡବମାନେ ତାଙ୍କ ପୈତୃକ ରାଜ୍ୟ ଫେରି ପାଆନ୍ତି, ସେଥିରେ ମୁଁ ଆଦୌ ସୁଖୀ ହୋଇ ପାରିବି ନାହିଁ । ଏପରିକି ସେ ରାଜ୍ୟର ସୀମା ମଧ୍ୟ ସ୍ପର୍ଶ କରିବାକୁ ଘୃଣା କରିବି । ମୋ ହୃଦୟର ପୁଞ୍ଜିଭୂତ ଅଶାନ୍ତି ଓ କୋହକୁ ତୁମର ଏ ଦୌତ୍ୟ କଦାପି ପ୍ରଶମିତ କରି ପାରିବ ନାହିଁ । ମୋର ଇଚ୍ଛା ଯୁଦ୍ଧ- ଯୁଦ୍ଧ ଦ୍ୱାରାହିଁ ଭାଗ୍ୟ ନିର୍ଣ୍ଣିତ ହେବ, ଭିକ୍ଷା ଦ୍ୱାରା ନୁହେଁ ।

ପୁନଶ୍ଚ ମନେ ପକାଇ ଦେବାକୁ ବାଧ୍ୟ ହେଉଛି, ବାବୁ- ଯଦି ତୁମେ ଗୋଡଭାଙ୍ଗି, ହାତଯୋଡି ଭିକ୍ଷାଦ୍ୱାରା ପାଣ୍ଡବମାନଙ୍କୁ ସେମାନଙ୍କର ନ୍ୟାୟୋଚିତ ପ୍ରାପ୍ୟ ଫେରାଇ ଦେବାରେ ସମର୍ଥ ହୁଅ, ତେବେ କୁରୁସଭାରେ ସହସ୍ର ବ୍ୟକ୍ତିଙ୍କ ସମ୍ମୁଖରେ ଭୀମ ଯେଉଁ ଗର୍ବସ୍ଫୀତ ଆସ୍ଫାଳନମାନ କରି ଗଲା, ତାହା କ'ଣ ପାଣିର ଗାର ହୋଇଯିବ ? ଦ୍ରୌପଦୀର ଉନ୍ମୁକ୍ତ କେଶପାଶ ସବୁଦିନ ପାଇ ଅଯତ୍ନ ଅବିନ୍ୟସ୍ତ ଓ ତୈଳହୀନ ହୋଇ ରହିଯିବ ସିନା ! ଉଭୟ ପରିବାର ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଆନନ୍ଦ ଉପଭୋଗ କଲେ, ଉରୁଭଙ୍ଗର ଉଦ୍‌ଘୋଷଣ ବୁଦ୍‌ବୁଦ୍‌ପରି ମିଳାଇ ଯିବ ନାହିଁତ ? ଯେଉଁ ପାପିଷ୍ଠ ଦୁରାଚାରୀମାନେ

କୁରୁସଭାତଳେ ଏକବସ୍ତ୍ରୀ ଦ୍ରୌପଦୀକୁ ତା'ର କାପୁରୁଷ ସ୍ୱାମୀମାନଙ୍କ ଚକ୍ଷୁ ସମକ୍ଷରେ ଉଲଗ୍ନ କରିବାର ବିଭସ୍ଥ ଦୃଶ୍ୟ ଉପଭୋଗ କରୁଥିଲେ, ସେମାନଙ୍କ ପ୍ରତି ପାଣ୍ଡବମାନଙ୍କର ଥିବା ପ୍ରତିଶୋଧ ବହ୍ନି ଆପେ ଆପେ ପ୍ରଶମିତ ହୋଇଯିବ ନାହିଁକି ? ଦ୍ରୌପଦୀ ତା'ର ମହା ଧନୁର୍ଦ୍ଧର ବୀର ସ୍ୱାମୀମାନଙ୍କୁ ଭୀରୁ, କାପୁରୁଷ କହି ଉପହାସ କରିବ ନାହିଁତ ?''

ମୁଁ ଅତ୍ୟନ୍ତ ଉତ୍ତେଜିତ ହୋଇ ଉଠିଥିବା ଦେଖି କୃଷ୍ଣ ମୋ ପାଟିରେ ହାତଦେଇ କହିଲେ,- ''ମା, ମୁଁ ସବୁ ଜାଣେ । ତୁମେ ଅତୀତର ବେଦନା-ଦାୟକ ଅନୁଭୂତିର ଜ୍ୱାଳାରେ ଜର୍ଜରିତ ହୋଇ ଉଠିଛ । ମାତ୍ର ଯୁଦ୍ଧ ପରି ଏକ ଭୟାବହ ନର ସଂହାରକାରୀ କାର୍ଯ୍ୟ ପାଇଁ ହଠାତ୍ ପ୍ରସ୍ତୁତ ହୋଇଯିବା ଉଚିତ ହେବ ନାହିଁ । ଟିକିଏ ଅନ୍ତର୍ଦୃଷ୍ଟି ଦେଇ ଦେଖନ୍ତୁ ମାତା, ପାଣ୍ଡବ ମାତ୍ର ପାଞ୍ଚଜଣ । କୌରବମାନଙ୍କ ପକ୍ଷରେ ଅସୁମାରି ସୈନ୍ୟ ସାମନ୍ତ ଏବଂ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଭାରତର ବହୁ ରାଜନ୍ୟବର୍ଗ ଆଗେଇ ଆସିବେ । ଏପରି ଅବସ୍ଥାରେ ପ୍ରଥମେ ପାଣ୍ଡବଙ୍କ ପକ୍ଷରୁ ଯୁଦ୍ଧର ଆହ୍ୱାନ ଉଚିତ ମନେ ହେଉନାହିଁ ।

ଚତୁର ଶ୍ରୀକୃଷ୍ଣ ଭାବିଥିଲେ- ତାଙ୍କ କଥାରେ ମୁଁ ନିଶ୍ଚୟ ଭୟଭୀତ ହୋଇ ପଡ଼ିବି । ମାତ୍ର ଆଗ୍ନେୟ ଗିରିରୁ ଉତପ୍ତ ଲାଭା ବହିର୍ଗତ ହେଲାପରି ମୋ ତୁଣ୍ଡରୁ ଖାଲି ଅଗ୍ନି ଉଦ୍‌ଗୀରଣ ଆରମ୍ଭ ହୋଇଗଲା । କହିଲି, ''ହେ କୃଷ୍ଣ, ଏବେ ବୁଝୁଛି ତୁମ ଉକ୍ତି ଯଥାର୍ଥ । ଏକଚକ୍ରାରୁ ପାଞ୍ଚାଳ ପର୍ଯ୍ୟନ୍ତ ଭିକ୍ଷା କରି କରି ପାଣ୍ଡବମାନେ କେବଳ ଭିକାରୀ ପାଲଟି ଯାଇ ନାହାନ୍ତି ବରଂ ସ୍ୱାଭିମାନ, ତଥା ଆଭିଜାତ୍ୟକୁ ପୂରା ପୂରି ଭୁଲି ଯାଇଛନ୍ତି । ହୀନବୀର୍ଯ୍ୟ ହୋଇଯିବା ପରେ ଅନନ୍ୟୋପାୟ ହୋଇ ସେମାନେ ତୁମ ଜରିଆରେ ଏ ଥାଳଟି ପଠାଇ କିଛି ଭିକ୍ଷା ପ୍ରାର୍ଥନା କରିଛନ୍ତି । ବାଃ, କେଶବ ବାଃ, ପାଣ୍ଡବମାନଙ୍କ ଉନ୍ନତ ଚିନ୍ତାଧାରାକୁ ପ୍ରଶଂସା ନକରି ରହିପାରୁ ନାହିଁ । ଯାହା ଅନୁମାନ କରୁଥିଲି ତାହା ଏବେ ସତ୍ୟରେ ପରିଣତ ହୋଇଗଲା । ଦୀର୍ଘଦିନ ଭିକ୍ଷା କରି କରି ପାଣ୍ଡବମାନେ ଅସ୍ତ୍ରଚାଳନା କୌଶଳ ଭୁଲି ଯାଇଛନ୍ତି । ତାଙ୍କ ନିକଟରେ ଥିବା ସୁତୀକ୍ଷ୍ଣ ନାରାଚ ଗୁଡ଼ିକ କଳଙ୍କିତ ହୋଇ ଗଲାଣି ମଧ୍ୟ । ଗଦା, ଧନୁ ଓ ଅନ୍ୟାନ୍ୟ କ୍ଷତ୍ରିୟ ବିଭବମାନ ଘୂଣ ଖାଇ ଗଲେଣି । ତେଣୁ କାପୁରୁଷ, ଭୀରୁ ପାଣ୍ଡବମାନେ ଭିକ୍ଷାପରି ଏକ ସହଜ-ଲଭ୍ୟ ପନ୍ଥାକୁ ଆଦରି ନେବାକୁ ପସନ୍ଦ କରି ସାରିଲେଣି । ତୁମେ

ସେମାନଙ୍କ ପାଇଁ ମଧ୍ୟସ୍ଥତା କରିବା ଆବଶ୍ୟକ ନାହିଁ । ମୋ ମତରେ ପାଞ୍ଚଭାଇଙ୍କୁ ହସ୍ତିନା ପଠାଇ ଦିଅ । ସେମାନେ ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ ଆଦି କୌରବ ବୀରମାନଙ୍କ ପଦଲେହନ କରି କିଛି ଭିକ୍ଷା ପ୍ରାର୍ଥନା କରନ୍ତୁ । ନିଜ ନ୍ୟାୟୋଚିତ ପ୍ରାପ୍ୟକୁ ହାସଲ କରିବାର ସତ୍‌ସାହସ ନଥିବା ଦୁର୍ବଳ ମାନଙ୍କ ପକ୍ଷରେ ଏହାହିଁ କରଣୀୟ ।

ଆହୁରି କହିବ କୃଷ୍ଣ- କୁନ୍ତୀ ନିଜକୁ ଅପୁତ୍ରିକ ଭାବି ଦୁଃଖରେ ଆତ୍ମହତ୍ୟା କରି ପକାଇଛି । ଯେଉଁମାନେ ଭିକ୍ଷାଥାଳ ଧରି ହସ୍ତିନା ଦରବାରରେ ହାତ ପତାଉଛନ୍ତି, ସେମାନେ କଦାପି ରାଜ-ରକ୍ତ ଅଧିକାରୀ ହୋଇ ନପାରନ୍ତି । କୁନ୍ତୀ ସିଂହୀ ରୂପରେ ଜନ୍ମ ନେଇ ସିଂହ-ଶିଶୁମାନଙ୍କର ଜନନୀ ଭାବରେ ଗର୍ବ ଅନୁଭବ କରୁଥିଲା । ସେଇ ସିଂହ ଶାବକମାନେ ବଡ଼ ହୋଇ ଶୃଗାଳ ପାଲଟି ଯିବା ଶୁଣି ସେ ଆତ୍ମହତ୍ୟା କରିବାକୁ ଶ୍ରେୟ ମନେ କରୁଛି । ଧାରଣାଥିଲା- ମୋ ପୁତ୍ରମାନେ ଏକୁ ଏକ ବଳି ବୀର । ସେମାନଙ୍କ ଅମିତ ପରାକ୍ରମ ସଂପର୍କରେ ମୋର ଆଦୌ ସନ୍ଦେହ ନଥିଲା । ମାତ୍ର ଆଜି ଯେଉଁମାନେ ଭିକାରୀ ବେଶରେ ଅନ୍ୟର ହାତଟେକା ସାହାଯ୍ୟକୁ ଆଶ୍ରାକରି ଦୀନହୀନ ଭାବରେ ବଞ୍ଚି ରହିବାକୁ ମନସ୍ଥ କରି ସାରିଲେଣି, ସେମାନେ କଦାପି ହସ୍ତିନା ରାଜ-ମହିଷୀ କୁନ୍ତୀର ସନ୍ତାନ ହୋଇ ନପାରନ୍ତି । ଗୁଡ଼ିଏ ଭୀରୁ, କାପୁରୁଷ ଭିକ୍ଷାଜୀବୀଙ୍କୁ ପୁଅ ବୋଲି କହିବାକୁ ମୁଁ ଲଜ୍ଜାବୋଧ କରୁଛି । ସେଇ ଅପଦାର୍ଥ ମାନଙ୍କୁ ଦେଖିବା ପୂର୍ବରୁ ମୋର ମୃତ୍ୟୁ ହୋଇଯିବା ଶ୍ରେୟସ୍କର । ମୁଁ ବୀରାରମଣୀ ଓ ବୀର ପ୍ରସବିନୀର ଗୌରବରେ ଗୌରବାନ୍ୱିତା ହୋଇଥିଲି । ମାତ୍ର ଦୈବ ଦୁର୍ଯ୍ୟୋଗରୁ ମୋର ସିଂହ ସନ୍ତାନମାନେ ହଠାତ୍ ଶୃଗାଳଠାରୁ ହୀନ ହୋଇ ପଡିଲେଣି ଜାଣିବା ପରେ ମୁଁ ଆତ୍ମହତ୍ୟା କରି ଦେଇଛି ବୋଲି ସେମାନଙ୍କୁ ଜଣାଇ ଦେବ ।

କହିବାକୁ ଦୁଃଖ ଲାଗୁଛି କୃଷ୍ଣ , କେତେଶୀଘ୍ର ପାଣ୍ଡବମାନେ ସେମାନଙ୍କର ଜ୍ୱାଳାମୟୀ ଅତୀତକୁ ପାସୋରି ଦେଇ ପାରିଲେ । ଅନ୍ୟାୟକୁ ଦୃଢ ହସ୍ତରେ ପ୍ରତିରୋଧ କରିବା ପରିବର୍ତ୍ତେ କାପୁରୁଷ ଭାବରେ ବଞ୍ଚି ରହିବାକୁ ଶ୍ରେୟସ୍କର ମନେକଲେ, ଏହାହିଁ ମୋତେ ହତଜ୍ଞାନ କରି ପକାଉଛି । ମୋର ସମସ୍ତ ଆଶା, ଆବେଗ ଓ ସମ୍ଭାବନାକୁ ଯେଉଁମାନେ ଧୂଳି ମାଟିରେ ମିଶାଇ ଦେବାକୁ ଯାଉଛନ୍ତି, ସେମାନଙ୍କ ସହିତ ମୋର କୌଣସି ସଂପର୍କ ନାହିଁ ବୋଲି ଜଣାଇ ଦେବ ।

ବାବୁ, ମୋର ସ୍ପଷ୍ଟ ଧାରଣା ଯେ ଯୁଦ୍ଧ ବିନା ଧର୍ମ ସଂସ୍ଥାପନ ସଂପୂର୍ଣ୍ଣ ଅସମ୍ଭବ । କୌରବ ପକ୍ଷର ଅସୁମାରୀ ସୈନ୍ୟଙ୍କୁ ଦେଖି ଏପରି ଭୟଭୀତ ହେବାର କୌଣସି କାରଣ ମଧ୍ୟ ନାହିଁ । ରାବଣର ଅଗଣିତ ସୈନ୍ୟବଳ ତୁଳନାରେ ପ୍ରଭୁ ଶ୍ରୀରାମଙ୍କ ପାଖରେ କିଛିତ ନଥିଲା । କେବଳ ଥିଲା ସତ୍ୟନିଷ୍ଠା, ନ୍ୟାୟ ପରାୟଣତା ଓ ପ୍ରତିରୋଧ କରିବାର ଦୁର୍ବାର-ବାସନା । ନାରୀ ନିର୍ଯ୍ୟାତନା, ଓ ମାତୃ ଜାତିର ଅପମାନର କୁପରିଣତି ରାବଣର ଗର୍ବ ଓ ଅହଙ୍କାରକୁ ସମୂଳେ ନଷ୍ଟ କରିବାକୁ ସମର୍ଥ ହୋଇଥିଲା । ପୁନଶ୍ଚ ପାଣ୍ଡବ ପକ୍ଷରେ ପାଞ୍ଚାଳ, ଯାଦବ ଓ ବିରାଟ ପରି ମହାଶକ୍ତିଧରମାନେ ଦୃଢ ଭାବରେ ଠିଆ ହୋଇଛନ୍ତି । ସର୍ବୋପରି ଅନ୍ୟାୟର ବିନାଶ ସାଧନ କରି ସତ୍ୟ ଓ ନ୍ୟାୟର ପ୍ରତିଷ୍ଠା ପାଇଁ ସ୍ୱୟଂ ପରମେଶ୍ୱର ସର୍ବଦା ନ୍ୟାୟ ପକ୍ଷକୁ ସମର୍ଥନ କରି ଆସୁଥିବା କଥା ଯୁଗେ ଯୁଗେ ପ୍ରମାଣିତ । ଏ ସବୁକୁ ଭୁଲିଯିବା ଉଚିତ ନୁହେଁ ।

ମୁଁ ଆଉ ଅଧିକ କିଛି କହିବାକୁ ଉଚିତ ମନେ କରୁନାହିଁ । କଷ୍ଟ ସ୍ୱୀକାର କରି ଆସିଛ ଯଦି ଯାଅ, କିନ୍ତୁ ନିରାଶ ହୋଇ ଫେରିବ । ମୋର ଏ ଭବିଷ୍ୟବାଣୀ ନିଶ୍ଚୟ ସତ୍ୟ ହେବ ଓ ତୁମେ ରିକ୍ତ ଭିକ୍ଷା ଝୁଲିଟି ପାଣ୍ଡବମାନଙ୍କୁ ଫେରାଇ ଦେବାକୁ ବାଧ୍ୟ ହେବ ।''

ହଁ, ଆଉ ଅଳ୍ପ କିଛି ବାର୍ତ୍ତା ମୃତ୍ୟୁ ପୂର୍ବରୁ ଦେଇଯିବା ଉଚିତ ମନେ କରୁଛି । ଏଠାରୁ ଫେରିଯାଇ କେବଳ ସେ ହୁଣ୍ଡା ଗୁଣ୍ଡାକୁ କହିବ- ତାକୁ ମୋ ଛାତିରୁ କ୍ଷୀର ଖୁଆଇ ମଣିଷ କରିଥିଲି । ସମୁଦାୟ ଖାଦ୍ୟରୁ ଅର୍ଦ୍ଧେକ ଦେଇ ଅବଶିଷ୍ଟ ଅର୍ଦ୍ଧେକକୁ ଆମେ ପାଞ୍ଚଜଣ ଅଧାପେଟ ଖାଇ କୌଣସି ମତେ ବଞ୍ଚି ରହିଥିଲୁ । କେଉଁ ଆଶାରେ ଆମେ ଏତେ ବଡ଼ ତ୍ୟାଗ କରିଥିଲୁ ? ଅନ୍ଧ ରାଜାର ସିଂହାସନ ତଳେ ହାତ ପତାଇ ଠିଆ ହେବାକୁ ନିଶ୍ଚୟ ନୁହେ । ପୁଣି କହିବ, ସେ ତା ପ୍ରତିଜ୍ଞାକୁ ଏତେ ଶୀଘ୍ର ଭୁଲିଗଲା କିପରି ? ବିରାଟ ରାଜାଙ୍କ ଉଆସର ସୁସ୍ୱାଦୁ ଖାଦ୍ୟରେ କ'ଣ ଏତେ ଟିକିଏ ପ୍ରାଣ-ଶକ୍ତି ନଥିଲା ? କେଉଁ କାରଣରୁ ମୋ ସିଂହ ଛୁଆଗୁଡ଼ାକ ଏପରି ହୀନ-ବୀର୍ଯ୍ୟ ହୋଇ ପଡ଼ିଲେ ? ମୋ ହୃଦୟ ପ୍ରତିହିଂସା ବହ୍ନିରେ ଜର୍ଜରିତ ହୋଇ ଉଠିଲାଣି । ସାଲିସ୍, ଆଲୋଚନା, ଅନୁରୋଧ ବା ପ୍ରାର୍ଥନାରେ ତାହା କଦାପି ପ୍ରଶମିତ ହେବ ନାହିଁ । ଆଉ ଅଧିକ ସମୟ ଅପେକ୍ଷା କରିବା ମୂର୍ଖତା ବୋଲି ବିବେଚିତ ହେବ । ବିକ୍ରମ ପ୍ରଦର୍ଶନ ପୂର୍ବକ ନିଜର

ନ୍ୟାୟୋଚିତ ପ୍ରାପ୍ୟ ଯୋର କରି ଛଡାଇ ଆଣିବାହିଁ ପ୍ରକୃତ ବୀରତ୍ୱ ହେବ । କୌରବମାନେ କରିଥିବା ଅନ୍ୟାୟ ଓ ଅତ୍ୟାଚାରର ଉପଯୁକ୍ତ ପ୍ରତିଶୋଧ ନିଆ ନଯିବା ପର୍ଯ୍ୟନ୍ତ ମୁଁ ଓ କୃଷ୍ଣା ଥୟଧରି ରହି ପାରିବୁ ନାହିଁ ।

ମୋତେ ଆଶ୍ଚର୍ଯ୍ୟ ଲାଗୁଛି ଯେ,- ଯେଉଁ କୌରବମାନେ କପଟ ଅକ୍ଷକ୍ରୀଡାରେ ପାଣ୍ଡବମାନଙ୍କୁ ତେରବର୍ଷକାଳ ବଣରେ ବୁଲାଇ ଥିଲେ, ସେହି କୌରବ ବନ୍ଧୁମାନଙ୍କ ଉଦାର ଚରିତ୍ର-ବତ୍ତା, ନିର୍ମଳ ଭ୍ରାତୃତ୍ୱ ଓ ମହାନୁଭବତାକୁ ସ୍ମରଣ କରି ପାଣ୍ଡବମାନେ ପୁଣି ରାଜା ହେବାର ସ୍ୱପ୍ନ ଦେଖୁଛନ୍ତି କିପରି ? ଏପରି ଅବାସ୍ତବ କଳ୍ପନା କେବଳ ଭୀରୁ ଓ କାପୁରୁଷମାନେ ହିଁ ଚିନ୍ତା କରି ପାରିବେ ସିନା, କୌଣସି କ୍ଷତ୍ରିୟ ରକ୍ତ ପ୍ରବାହିତ ହେଉଥିବା ବୀର ପକ୍ଷରେ ନୁହେଁ । ଦୀର୍ଘକାଳର ସଞ୍ଚିତ କୋହ ତୁମ ଆଗରେ ପ୍ରକାଶ କରି ମୁଁ ବହୁ ଆତ୍ମ-ସନ୍ତୋଷ ଓ ମାନସିକ ଶାନ୍ତି ଅନୁଭବ କରୁଛି ।

ଅନେକ କଥା କହି ବହୁ ସମୟ ନଷ୍ଟ କରି ସାରିଲିଣି । ଏଥର ତୁମେ ଦୌତ୍ୟ-କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ଅଗ୍ରସର ହୁଅ । ମୁଁ ପୁଣିଥରେ କହୁଛି-ଭିକ୍ଷାତ ନିଶ୍ଚୟ ମିଳିବ ନାହିଁ । ଖାଲି କଟୂକ୍ତି, ଲାଞ୍ଛନା ଓ ତୀବ୍ର ମନସ୍ତାପରେ ଭିକ୍ଷା ଝୁଲି ପୂର୍ଣ୍ଣ କରି ତୁମେ ଫେରିବାକୁ ବାଧ୍ୟ ହେବ । ତୁମର ଯାବତୀୟ ଅକାଟ୍ୟ ଯୁକ୍ତି, ଅନୁରୋଧ ଓ ପ୍ରାର୍ଥନା ନିଶ୍ଚୟ ବିଫଳ ହେବ । ଏପରି ହେଲେ ମୋ ଉଦ୍ଦେଶ୍ୟ ସାଧନର ମାର୍ଗ ପ୍ରଶସ୍ତ ଓ ପରିଷ୍କୃତ ହୋଇ ଆସିବ । ସେହି ଶୁଭ ମୁହୂର୍ତ୍ତକୁ ମୁଁ ଅପେକ୍ଷା କରି ରହିଲି । ଯାଅ ।''

କୃଷ୍ଣ ବିସ୍ମୟ ବିମୂଢ ହୋଇ ମୋ କଥା ଶୁଣିବା ପରେ ବିନୟର ସହିତ ପଚାରିଲେ,- ''ମା, କୌରବମାନେ ମୋ ଅନୁରୋଧ ପ୍ରତ୍ୟାଖ୍ୟାନ କଲେ, ମୋତେ ଅପମାନିତ କରି ଫେରାଇ ଦେଲେ, ସେଥିରେ ଆପଣ ଆନନ୍ଦିତ ହେବାର କାରଣ କ'ଣ ?''

ମୁଁ ପୁନର୍ବାର ସେହିପରି ରୁକ୍ଷ କଣ୍ଠରେ କହିଲି,- ''କେଶବ, ମୁଁ ତୁମ ମାଆ,- ମାଆ ସହିତ ପୁଅର ଛଳନା ସହଜରେ ଧରାପଡିଯାଏ । ଶୁଣ୍ ମୋ ହୃଦୟର ଜ୍ୱାଳାମୁଖୀ ଉଦ୍‌ଗୀରଣ ଅପେକ୍ଷାରେ । କୌରବମାନଙ୍କ ଦ୍ୱାରା ଲାଞ୍ଛିତ, ଅପମାନିତ ତଥା ଉପେକ୍ଷିତ ହେଲେ ତୁମେ ନିଶ୍ଚୟ କ୍ଷୁବ୍ଧ ହେବ । ପାଣ୍ଡବମାନେ ତୁମ ଅପମାନ କଦାପି ସହ୍ୟ କରି ପାରିବେ ନାହିଁ । ଅନ୍ୟ ରାଜନ୍ୟ-ବର୍ଗ

କୌରବମାନଙ୍କ ଏ ପ୍ରକାର ଔଦ୍ଧତ୍ୟ ଓ ଅହଂକାରକୁ ଘୃଣା କରିବେ । ଏ ପର୍ଯ୍ୟନ୍ତ ତୁମର କୌରବମାନଙ୍କ ପ୍ରତି ଯେଉଁ ସାମାନ୍ୟ ଶ୍ରଦ୍ଧା ବା ମମତା ଥିଲା, ତାହା ଘୃଣା ଓ କ୍ରୋଧରେ ପରିଣତ ହୋଇଯିବ । ଆମେ ଯାଦବ ମୁଖ୍ୟ ମାନଙ୍କର ସହାୟତା ଲୋଡ଼ିବୁ । ବିରାଟ କୁରୁ-ସାଗର ମଧ୍ୟରେ ତୁମେ ହେବ ପାଣ୍ଡବ-ନୌକାର ପଥ ପ୍ରଦର୍ଶକ ଓ କର୍ଣ୍ଣଧାର । ଏପରି ହେଲେ ମୋ ଆଶା ବୃକ୍ଷ ଫୁଲ ଫଳରେ ପୂର୍ଣ୍ଣ ହୋଇ ଆସିବ । ଏଥର ମୋ ଉଦ୍ଦେଶ୍ୟ ସଂପୂର୍ଣ୍ଣ ହୃଦୟଙ୍ଗମ କରିବାରେ ତୁମର ଆଉ କୌଣସି ଅସୁବିଧା ହେଉ ନଥିବ ନିଶ୍ଚୟ ।''

କୃଷ୍ଣ ତାଙ୍କ ଚିର-ପ୍ରସନ୍ନ ବଦନରୁ ମୃଦୁହାସ୍ୟ ପ୍ରକାଶ କରି କହିଲେ,- ମା, ମନୁଷ୍ୟ ନିୟତିର ଅଦୃଶ୍ୟ ହସ୍ତରେ ଏକ କ୍ରୀଡ଼ନକ ସଦୃଶ । ଭବିତବ୍ୟ ସର୍ବଦା ଅଜ୍ଞେୟ । ହୁଏତ ମୁଁ ମୋ କାର୍ଯ୍ୟରେ ସଫଳତା ଲାଭ କରିପାରେ, ନତୁବା ଆପଣଙ୍କ ଇଚ୍ଛା ପୂର୍ଣ୍ଣ ହେବାର ସୁଯୋଗ ମଧ୍ୟ ସୃଷ୍ଟି ହୋଇପାରେ ।''

ମୁଁ କହିଲି- ''ଏତେ କଷ୍ଟ ସ୍ୱୀକାର କରି ଆସିଛ । ସାକ୍ଷାତ ନକରି ଫେରିଯିବା ଉଚିତ ହେବନାହିଁ । ଥରେ ଚେଷ୍ଟାକରି ଦେଖ, ଫଳ କ'ଣ ହେଉଛି ।''

ଶ୍ରୀକୃଷ୍ଣ ଦୀର୍ଘ ସମୟ ମୋ ପାଖରେ ରହି ଯିବାରୁ ଖୁବ୍ ଚଞ୍ଚଳ ହୋଇ ଉଠିଥିଲେ । ତେଣୁ ତରବରରେ ଯାଇ କୌରବମାନଙ୍କ ନିକଟରେ ପହଞ୍ଚିଲେ । ବହୁ ଯୁକ୍ତିତର୍କ, ଅନୁନୟ ଓ କଥା କଟାକଟି ପରେ ଦୁର୍ଯ୍ୟୋଧନ ହୃଦୟରେ ସାମାନ୍ୟତମ ପରିବର୍ତ୍ତନର ସୂଚନା ମଧ୍ୟ ମିଳିଲା ନାହିଁ । ପାଣ୍ଡବମାନଙ୍କ ପକ୍ଷରୁ ପ୍ରସ୍ତାବ ଆସିଥିବା କଥା ଜାଣିବା ମାତ୍ରେ ତା'ର ପ୍ରତି ଲୋମ କୂପରୁ ଈର୍ଷା ଓ ବିଦ୍ୱେଷର ନିଆଁ ଝୁଲ ଖସିବାରେ ଲାଗିଲା । ସେ ଅତ୍ୟନ୍ତ ତାଚ୍ଛଲ୍ୟପୂର୍ଣ୍ଣ ଭଙ୍ଗୀରେ କହିଲା, - ''କେଶବ, ବୃଥାରେ ସମୟ ନଷ୍ଟ କରନାହିଁ । ଶତଚେଷ୍ଟା ସତ୍ତ୍ୱେ ତୁମେ ପାଣ୍ଡବମାନଙ୍କ ଅଦୃଷ୍ଟକୁ ବଦଳାଇ ପାରିବ ନାହିଁ । ବର୍ତ୍ତମାନ ସେମାନେ ଏକାନ୍ତ ଭାବରେ ଶକ୍ତି ସାମର୍ଥ୍ୟ ହରାଇ ଭିକ୍ଷାନ୍ନ ଦ୍ୱାରା ଜୀବିକା ନିର୍ବାହ କରୁଛନ୍ତି । କ୍ଷତ୍ରିୟର ବୀରରକ୍ତ ସେମାନଙ୍କ ଶିରା-ପ୍ରଶିରାରେ ପ୍ରବାହିତ ହେଉଥିଲେ ମଧ୍ୟ ସେମାନେ ହୀନ-ବୀର୍ଯ୍ୟ ହୋଇ ଭିକ୍ଷାପରି ନିନ୍ଦନୀୟ ବୃତ୍ତିକୁ ଆଶ୍ରା କରି ବଞ୍ଚୁଛନ୍ତି ଶୁଣି ମନରେ ଗଭୀର ଦୁଃଖଜାତ ହେଉଛି । ଏହା ଆମ ସ୍ୱାଭିମାନର ପରିପନ୍ଥୀ । ବାଘ ଅନାହାରରେ ରହିବ ସିନା, କଦାପି ଘାସ ଖାଇ ବଞ୍ଚିବାକୁ ଇଚ୍ଛା କରିବ ନାହିଁ । କ୍ଷତ୍ରିୟ ଠିକ୍ ସେହିପରି ନିଜର ବାହୁବଳ ଓ ଶୌର୍ଯ୍ୟକୁ ସମ୍ବଳ କରି

ବଞ୍ଚିରହିବ ସିନା କଦାପି କାହାରି ଦାନକୁ ଆଶ୍ରା କରି ନୁହେଁ । ଭାଇମାନଙ୍କର ଏ ଦାରୁଣ ଦୁର୍ଗତି ସ୍ମରଣ କରି ମୁଁ ଗଭୀର ଭାବରେ ଅନୁତପ୍ତ । ତୁମେ ତାଙ୍କ ପାଇଁ ଯାହାକିଛି ମାଗିବାକୁ ଆସିଛ, ତାହା ଏକ ଅଶୋଭନୀୟ ପ୍ରଚେଷ୍ଟା । କ୍ଷତ୍ରିୟ ସନ୍ତାନ କାହାକୁ କିଛି ମାଗେ ନାହିଁ । ସେ ତା'ର ପ୍ରାପ୍ୟ ଯୋର୍ କରି ଛଡାଇ ନିଏ । ସର୍ବଶେଷରେ ଏତିକି କହୁଛି- ଶକ୍ତିଥିଲେ ପାଣ୍ଡବମାନେ ସମଗ୍ର ରାଜ୍ୟ ଅଧିକାର କରି ନେବାରେ ମୁଁ ଆଦୌ ଦୁଃଖ କରିବି ନାହିଁ । ମାତ୍ର ଭିକ୍ଷା ଆକାରରେ କିଛି ଦେବା ମୋ ନୀତି ବିରୁଦ୍ଧ । ଶୁଣ ଶ୍ରୀକୃଷ୍ଣ, ଏ ମୋ ଦୃଢପଣ, ମନେରଖ ଚକ୍ରପାଣି ।

''ଆସିଥିଲ ଶୂନ୍ୟହସ୍ତେ ଫେରିବା ବି ଶୂନ୍ୟ
ଧାଣ୍ଡବଙ୍କ ଭାଗ୍ୟେ ଲେଖା ତୁଚ୍ଛା ଭିକ୍ଷା ଅନ୍ନ ।''

ଶ୍ରୀକୃଷ୍ଣଙ୍କ ଧୈର୍ଯ୍ୟର ପଟାନ୍ତର ନାହିଁ । ସେ ଦୁର୍ଯ୍ୟୋଧନର ଗର୍ବୋନ୍ନତ ମନ୍ତବ୍ୟରେ ଅତ୍ୟନ୍ତ ଦୁଃଖିତ ହେଲେ । ଭୀଷଣ କ୍ରୋଧ ଓ ତିକ୍ତତା ତାଙ୍କୁ ଅସ୍ଥିର କରିବାରେ ଲାଗିଲା । ସେ ନିଜକୁ ସଂଯତ କରି କହିଲେ,- ''ହେ ମହାମାନୀ ଦୁର୍ଯ୍ୟୋଧନ, ତୁମେ ଅନେକ କଥା କହିଛ । ତନ୍ମଧ୍ୟରୁ ଗୋଟିଏ କଥା ବିଶେଷ ପ୍ରଣିଧାନ ଯୋଗ୍ୟ । ତା' ହେଲା- 'ମଣିଷ କୃତକର୍ମର ଫଳ ଭୋଗକରେ ।' ଏହାହିଁ ମୋତେ ଗଭୀର ଭାବରେ ଅନୁପ୍ରାଣିତ କରିଛି । ତୁମ ପରି ବ୍ୟକ୍ତି ଏ କଥା କହିଥିବାରୁ ମୁଁ ଧନ୍ୟବାଦ ଦେଉଛି । ଏଥର ମୁଁ ବିଦାୟ ନେବି । ହୁଏତ ପରେ ଦେଖା ହୋଇପାରେ । କିନ୍ତୁ ଭିକ୍ଷାଝୁଲି ଧରି ନିଶ୍ଚୟ ନୁହେଁ । ବିଦାୟ ଦୁର୍ଯ୍ୟୋଧନ- ବିଦାୟ ।''

ଫେରି ଆସି ଶ୍ରୀକୃଷ୍ଣ ମୋତେ ସବୁକଥା କହିଲେ । ତାଙ୍କ ବକ୍ତବ୍ୟରେ ପ୍ରତିଶୋଧର ବ୍ୟଞ୍ଜନା ତୀବ୍ର ଭାବରେ ପରିସ୍ଫୁଟ ହୋଇ ଉଠୁଥିଲା । ସେ ଅଧିକ କିଛି ନ କହି କାମ୍ପିଲ୍ୟ ଫେରିଯିବାକୁ ବ୍ୟଗ୍ରତା ପ୍ରକାଶ କଲେ । ତାଙ୍କୁ ଆଉ ଅଟକାଇବାର ଆବଶ୍ୟକତା ମଧ୍ୟ ନଥିଲା । ବିଦାୟ ମୁହୂର୍ତ୍ତରେ ତାଙ୍କୁ କୋଳାଗ୍ରତ କଲାବେଳେ ଦେଖିଲି, ନୀଳପଦ୍ମ ବିନିନ୍ଦିତ ଚିର-ପ୍ରସନ୍ନ ମୁଖ-ମଣ୍ଡଳ ଚିନ୍ତାକୁଳ ହୋଇ ଉଠିଛି । ତଥାପି ଯିବା ପୂର୍ବରୁ ମୋତେ କହିଲେ,- ''ମା, ଦୁର୍ଯ୍ୟୋଧନର ଧାରଣା- ପାଣ୍ଡବମାନେ ଦୀର୍ଘକାଳ ବନବାସ ଓ ଦାସତ୍ୱ କରି ଶୌର୍ଯ୍ୟ, ବୀର୍ଯ୍ୟ ଓ ସ୍ୱାଭିମାନ ମଧ୍ୟ ଭୁଲି ଯାଇଛନ୍ତି । ଏପରିକି କ୍ଷତ୍ରିୟ

ଧମନୀରେ ଟକଟକ ହୋଇ ଫୁଟୁଥିବା ବୀରରକ୍ତ ମଧ୍ୟ ସଂପୂର୍ଣ୍ଣ ବରଫ ପାଲଟି ଯାଇଛି । ତା'ର ଗର୍ବୋନ୍ନତ ଉଦ୍ଧତ ବ୍ୟବହାର ମୋତେ ମଧ୍ୟ ଅସ୍ଥିର କରି ପକାଉଛି । ଧରାକୁ ସରା ମନେକରିବାର ପ୍ରତିଫଳ ସେ ଅତିଶୀଘ୍ର ପାଇଯିବ । ଏବେ ଆପଣଙ୍କ ଇଚ୍ଛା ପୂରଣ ହେବାର ସୂତ୍ରପାତ ହୋଇଗଲା । ଅମଣିଷ ସହିତ ଆଲୋଚନା କରି ମୁଁ ବହୁ ସମୟ ଅକାରଣରେ ନଷ୍ଟ କରିଦେଲି ସିନା ଫଳ କିଛି ହେଲା ନାହିଁ । ପଣ୍ଡିତ ବ୍ୟକ୍ତି ସହିତ ଶତ୍ରୁତା ବରଂ ଭଲ, ମାତ୍ର ମୂର୍ଖ ସହିତ ବନ୍ଧୁତା ଅତ୍ୟନ୍ତ ପ୍ରମାଦପୂର୍ଣ୍ଣ ।

ଶେଷଥର ପାଇଁ କହିଲି,- ''ବାବୁ , ପିଲାମାନଙ୍କୁ କହିବ,- ଏ ପର୍ଯ୍ୟନ୍ତ ସେମାନଙ୍କର ଧୈର୍ଯ୍ୟ, ସହନଶୀଳତା, ସତ୍ୟନିଷ୍ଠା ଆଦିକୁ କେବଳ ଦୁର୍ବଳତାର ଆଖ୍ୟା ଦିଆ ଯାଇଛି । ବହୁତ ହୋଇଗଲାଣି । ଆଉ ନୁହେଁ । ଏଥର ''ହତ୍ୱାଂ ବା ପ୍ରାପ୍‌ସ୍ୟସି ସ୍ୱର୍ଗଂ ଜିତ୍ୱାଂ ବା ଭୋକ୍ଷ୍ୟସେ ମହୀ'' ଏହି ଉକ୍ତି ମୋ ପିଲାମାନଙ୍କର ଧ୍ୟେୟ ହେଉ । ଭୀରୁତା ବୀରର ଲକ୍ଷଣ ନୁହେଁ । ଦୁର୍ଯ୍ୟୋଧନର ମୁଣ୍ଡ ଗର୍ବ ପର୍ବତର ଶିଖର ସ୍ପର୍ଶ କରି ସାରିଲାଣି । ପାପିଷ୍ଠ ଦୁରାଚାରୀ ଗର୍ବାନ୍ଧ ହୋଇ ତୁମକୁ ତାଚ୍ଛିଲ୍ୟ ପୂର୍ଣ୍ଣ ଉପହାସ କରିବାର ଦୁଃସାହସ କରିନାହିଁ ଯେ ନିଜ ହାତରେ ନିଜର ଯୂଇ ଗାତ ଖୋଳିବା ଆରମ୍ଭ କରି ଦେଇଛି । ଅଗ୍ନି ପ୍ରଜ୍ୱଳନ ପାଇଁ ଅମ୍ଳଜାନର ପ୍ରୟୋଜନ ଅପରିହାର୍ଯ୍ୟ ପରି ଦୁର୍ଯ୍ୟୋଧନ ପ୍ରତି ତୁମର ବଢ଼ି ଉଠୁଥିବା ବିଦ୍ୱେଷ ପାଣ୍ଡବମାନଙ୍କ କ୍ରୋଧାଗ୍ନିକୁ ପ୍ରଜ୍ୱଳିତ କରିବାରେ ଅମ୍ଳଜାନର ସହାୟତା କରିବ । ଉପଯୁକ୍ତ ସମୟ ଆସନ୍ନ-ପ୍ରାୟ । ତୁରନ୍ତ ସବୁ ଚିନ୍ତା ଛାଡ଼ି ଯୁଦ୍ଧ ଆୟୋଜନରେ ଲାଗିପଡ଼ । ସ୍ୱୟଂ ପରମେଶ୍ୱର ଧର୍ମ ସଂସ୍ଥାପନ ପାଇଁ ମର୍ତ୍ତ୍ୟକୁ ଓହ୍ଲାଇ ଆସିବେ । କୌରବ ପକ୍ଷର ବିପୁଳ ସୈନ୍ୟ ସାମନ୍ତ, ସାହାଯ୍ୟ ଦେବା ପାଇଁ ଆସିଥିବା ରାଜନ୍ୟମଣ୍ଡଳୀ, ଅସୁମାରି ଗଜବାଜି ଆଦି ପାଣ୍ଡବମାନଙ୍କ ଗତିରୋଧ କରିବାରେ ସମର୍ଥ ହେବେ ନାହିଁ । ଇତିହାସ ଏହାର ପ୍ରମାଣ ଦେଇ ଆସିଛି । କୌରବମାନଙ୍କ ପତନ ଆସନ୍ନ ହୋଇ ଆସିଲାଣି- ଏ ବିଷୟରେ ମୁଁ ସଂପୂର୍ଣ୍ଣ ନିଃସନ୍ଦେହ । ଯଜ୍ଞ ସମ୍ଭୁତା ଯାଜ୍ଞସେନୀର ରୋଷ-କଷାୟିତ ନୟନରୁ ଅବିରତ ପ୍ରତିହିଂସାର ଲେଲିହାନ ବହ୍ନି ଶିଖା ଅନବରତ ବିଚ୍ଛୁରିତ ହେବାରେ ଲାଗିଛି । ଅଚିରେ କୌରବ କୁଳ-ବଧୂମାନେ ବୈଧବ୍ୟର ଦାରୁଣ ଯନ୍ତ୍ରଣାରେ ଜର୍ଜରିତ ହୋଇ ଉଠିବେ । ଏହା ମୋତେ ଜଳଜଳ ହୋଇ

ଦେଖାଗଲାଣି । ନାରୀ ହୋଇ ଅନ୍ୟ ନାରୀର ଶୋଚନୀୟ ପରିଣତି ଚିନ୍ତା କରିବା ନିତାନ୍ତ ଅଶୋଭନୀୟ । ମାତ୍ର ଦୀର୍ଘକାଳ ଧରି ସହି ଆସୁଥିବା ଅନ୍ୟାୟ, ଅତ୍ୟାଚାର, ଲାଞ୍ଛନା ଓ ତୀବ୍ର ଅପମାନର କଷାଘାତ ମୋ ହୃଦୟରୁ ଅନେକ ନାରୀ ସୁଲଭ ସଦ୍‌ଗୁଣକୁ ଧ୍ୱଂସ କରି ପକାଇଛି । ମୁଁ ବର୍ତ୍ତମାନ କରାଳିନୀ କାଳୀ ରୂପରେ ସଂହାର ପ୍ରୟାସୀ ହୋଇ ଉଠିଛି । ଶତ୍ରୁମାନଙ୍କ ରକ୍ତହିଁ ମୋ ପ୍ରତିଶୋଧ ତୃଷାକୁ ନିବାରଣ କରିବ ।''

କୃଷ୍ଣ ଅତି ନିବିଷ୍ଟ ଚିତ୍ତରେ ମୋ କଥାମାନ ଶୁଣି ଯାଉଥାନ୍ତି । ଶୁଣୁଥିବା [redacted] ବେଳେ ତାଙ୍କ ମୁଖମଣ୍ଡଳରେ ବିରକ୍ତି ବା ବିସନ୍ନ ଭାବ ମୁଁ ଆଦୌ ଲକ୍ଷ୍ୟ କରିନାହିଁ । ଗୁଡାଏ କହି ଯିବାପରେ ମୁଁ ନୀରବ ହୋଇଗଲି ।

ମୋ ନୀରବତା ଲକ୍ଷ୍ୟକରି କୃଷ୍ଣ କହିଲେ,- ମା, ଆପଣଙ୍କ ସମସ୍ତ ଉକ୍ତି ପ୍ରଣିଧାନ ଯୋଗ୍ୟ । କ୍ଷତ୍ରିୟ ସନ୍ତାନ ତା'ର ନ୍ୟାୟୋଚିତ ପ୍ରାପ୍ୟକୁ ଅନ୍ୟଠାରୁ ଶକ୍ତି ପ୍ରୟୋଗ ପୂର୍ବକ ଛଡାଇ ଆଣିବାରେ ହିଁ ପୌରୁଷ ପ୍ରକଟିତ ହୋଇଥାଏ, ଏହା ଏକାନ୍ତ ଯୁକ୍ତିଯୁକ୍ତ । ପୁଣି ହଠାତ୍ କିଛି ଗୋଟାଏ ଅଘଟଣ ଘଟାଇ ଦେବାର ପକ୍ଷପାତୀ ମଧ୍ୟ ମୁଁ ନୁହେଁ । ପାଣ୍ଡବମାନେ ସତ୍ୟ ରକ୍ଷା କରି ଫେରିଛନ୍ତି । ବର୍ତ୍ତମାନ ଇନ୍ଦ୍ରପ୍ରସ୍ଥ ସହିତ ତାଙ୍କର ଯାବତୀୟ ବିଭବ କୌରବମାନେ ନ୍ୟାୟତଃ ବିନା ବିଚାରରେ ପ୍ରତ୍ୟର୍ପଣ କରିବା କଥା । ଏହି ମହାନୁଭବତା ପରୀକ୍ଷା କରିବା ଉଦ୍ଦେଶ୍ୟରେ ମୁଁ କୌରବମାନଙ୍କ ଦ୍ୱାରସ୍ଥ ହେବାକୁ ସ୍ୱତଃ ପ୍ରବୃତ୍ତ ହୋଇ ଆସିଥିଲି । ଏ ନ୍ୟାୟୋଚିତ ପ୍ରାପ୍ୟ ସଂପର୍କରେ କୌରବମାନଙ୍କର ମତାମତ, ମାନସିକ ସ୍ଥିତି, ନ୍ୟାୟ ଓ ସତ୍ୟ ପ୍ରତି ଆଦର ଏବଂ ସର୍ବୋପରି ପାଣ୍ଡବଭାଇ ମାନଙ୍କ ପ୍ରତି ଶ୍ରଦ୍ଧା ଓ ସ୍ନେହର କଳନା କରିବା ମୋର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ମାତ୍ର ଯେତେ ଥର ଧୂଅନା କାହିଁକି- ଅଙ୍ଗାରରୁ ଉଜ୍ଜ୍ୱଳତା କେବେ ପ୍ରକଟିତ ନହେଲା ପରି କୌରବମାନେ ପୂର୍ବପରି ହିଂସ୍ର ଓ ପରଶ୍ରୀକାତର ହୋଇ ରହିଛନ୍ତି । ଗର୍ବହିଁ ତାଙ୍କୁ ଅନ୍ଧ କରି ରଖିଛି । ତେଣୁ ଆପଣଙ୍କ ଦୂରଦୃଷ୍ଟିକୁ ମୁଁ ପ୍ରଶଂସା ନକରି ରହିପାରୁ ନାହିଁ । ଆପଣଙ୍କ ଭବିଷ୍ୟବାଣୀ ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହେଲା । ଏଥର ମୁଁ ପାଣ୍ଡବମାନଙ୍କ ସହିତ ମିଳିତ ହୋଇ ଭବିଷ୍ୟତ କର୍ମପନ୍ଥା ନିର୍ଣ୍ଣୟ କରିବାର ପଥ ସୁଗମ ହୋଇ ଯାଇଛି ।

ମୁଁ ଆଉ ଅଧିକ ସମୟ ଏଠାରେ ରହିବାକୁ ଉଚିତ ମନେ କରୁନାହିଁ । ଯିବା ପୂର୍ବରୁ ଏତିକି କହି ଯାଉଛି ଯେ- ''କୌରବମାନଙ୍କୁ ସଂପୂର୍ଣ୍ଣରୂପେ ଧର୍ମଛାଡିଗଲା । ଧର୍ମଛଡା ବ୍ୟକ୍ତିର ପରିଣତି ସହଜରେ ଅନୁମେୟ । ଏଣିକି ମୁଁ ମୋର ସମସ୍ତ ଶକ୍ତି, ବିଚାରବୁଦ୍ଧି ଓ ରଣନୀତି ପ୍ରୟୋଗ କରି ପାଣ୍ଡବମାନଙ୍କୁ ସାହାଯ୍ୟ କରିବି ।'' ଏତିକି କହି କୃଷ୍ଣ ମୋ ନିକଟରୁ ଚାଲିଗଲେ ।

ଅଳ୍ପଦିନ ପରେ ଖବର ପାଇଲି- ମୋ ପିଲାମାନେ ଆଗାମୀ ଦିନର ଯୁଦ୍ଧ ଲାଗି ପ୍ରସ୍ତୁତ ହେଲେଣି । ବିଭିନ୍ନ ମିତ୍ର ରାଜାମାନଙ୍କ ସହିତ ମନ୍ତ୍ରଣା ଅବ୍ୟାହତ ଅଛି । କୌରବମାନେ ମଧ୍ୟ ଅନୁରୂପ ପ୍ରସ୍ତୁତିରେ ବ୍ୟସ୍ତ ଅଛନ୍ତି । ଅଚିରେ କୁରୁ-ପାଣ୍ଡବଙ୍କ ମଧ୍ୟରେ ଯୁଦ୍ଧ ଅନିବାର୍ଯ୍ୟ ଏ ଧାରଣା ମୋର ଦୃଢ ହୋଇଗଲା ।

ପ୍ରଚାର ହେବାରେ ଲାଗିଲା ଯେ,- ମହାବୀର କର୍ଣ୍ଣଙ୍କୁ ମିତ୍ର ରୂପେ ପାଇ ଦୁର୍ଯ୍ୟୋଧନର ଗର୍ବ ବହୁ ଗୁଣରେ ବଢି ଯାଇଛି । କର୍ଣ୍ଣର ଅମିତ ପରାକ୍ରମକୁ ନିଜ ପକ୍ଷରେ ବ୍ୟବହାର କରିବାର ଆସ୍ପର୍ଦ୍ଧା ସ୍ୱଭାବ-ଗର୍ବୀ ଦୁର୍ଯ୍ୟୋଧନକୁ ଅନ୍ଧ କରି ପକାଇଲାଣି । ତା ନହୋଇ ଥିଲେ ସେ ଶ୍ରୀକୃଷ୍ଣଙ୍କ ପ୍ରତି ଏପରି ଔଦ୍ଧତ୍ୟ ପୂର୍ଣ୍ଣ ବାକ୍ୟ ଓ ଶାଳୀନତା ବିହୀନ ବ୍ୟବହାର କରିବାର ଦୁଃସାହସ କରିନଥାନ୍ତା ।

ଯେଉଁ କର୍ଣ୍ଣକୁ ସେ ଆଜି ବନ୍ଧୁ ଭାବରେ ପାଇ ଗର୍ବସ୍ଫୀତ ହୋଇ ଉଠିଛି, ସେହି କର୍ଣ୍ଣହିଁ ତା'ର ଚିରଶତ୍ରୁ ପାଣ୍ଡବମାନଙ୍କ ସହୋଦର, ଏକଥାଟି ଦୁର୍ଯ୍ୟୋଧନ ନିକଟରେ ସବୁଦିନ ପାଇଁ ଅଜ୍ଞେୟ ହୋଇ ରହିଯିବ । ଅବସ୍ଥା ଏପରି ହେଲାଯେ, ଏକ ମାଆ ପେଟର ଭାଇ ହୋଇ ମଧ୍ୟ କେହି କାହାକୁ ଚିହ୍ନି ପାରିଲେ ନାହିଁ । ଏବେ କର୍ଣ୍ଣ ତା' ନିଜ ସାନଭାଇ ମାନଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବ । କିଏ ତାକୁ ଜଣାଇ ଦେବ ଯେ- ତୁ କୁନ୍ତୀର ଜ୍ୟେଷ୍ଠପୁତ୍ର ଓ ପାଣ୍ଡବମାନେ ତୋର ସହୋଦର ଭାଇ । ଅତୀତର କ୍ଷଣିକ ଦୁର୍ବଳତା ଆଜି ମୋ ପାଇଁ ଚରମ ଦୁର୍ବିପାକର ଦ୍ୱାର ଉନ୍ମୁକ୍ତ କରିଦେଲାଣି । ଜୀବିତ ଥାଇ ମଧ୍ୟ ମୁଁ ମୃତ୍ୟୁ ଯନ୍ତ୍ରଣାରେ ଛଟପଟ ହେବାରେ ଲାଗିଛି । କର୍ଣ୍ଣ ମୋ ଜୀବନର ଚରମ ଦୁର୍ବଳତା ରୂପେ ସମ୍ମୁଖରେ ଦଣ୍ଡାୟମାନ । ମୁଁ ଭୁଜଙ୍ଗ ଚୁଚୁନ୍ଦ୍ରା ଧରିବା ଅବସ୍ଥାର ସମ୍ମୁଖୀନ ହୋଇ ପଡିଛି ।

ସମୟର ସ୍ରୋତ ଗଡି ଚାଲିଥାଏ । ଉଭୟ ପକ୍ଷ ଶକ୍ତି ପରୀକ୍ଷା ପାଇଁ ପୂର୍ଣ୍ଣ ମାତ୍ରାରେ ପ୍ରସ୍ତୁତ ହୋଇ ଗଲେଣି । କୁରୁକ୍ଷେତ୍ରର ବିରାଟ ପଡିଆରେ ଶକ୍ତି ପରୀକ୍ଷା ହେବାର ନିଷ୍ପତ୍ତି ହୋଇ ସାରିଥାଏ ।

କର୍ଣ୍ଣ ମହାଦାନୀ । ତାଙ୍କ ଦ୍ୱାରରୁ କେହି କେବେ ହେଲେ ରିକ୍ତ ହସ୍ତରେ ଫେରିବା ଶୁଣା ଯାଇନାହିଁ । ଏହି ସୁଯୋଗରେ ଦିନେ ହୀନମତି ଇନ୍ଦ୍ର ଛଦ୍ମବେଶୀ ବ୍ରାହ୍ମଣ ଭାବରେ କର୍ଣ୍ଣର ଦ୍ୱାରସ୍ଥ ହେଲେ । ମହାମତି କର୍ଣ୍ଣ ଭକ୍ତ ବ୍ରାହ୍ମଣଙ୍କୁ ଯଥାରୀତି ଆଦର ସମ୍ମାନ ଦେଖାଇବା ପରେ ଆସିବାର ଉଦ୍ଦେଶ୍ୟ ପଚାରିଲେ । ଛଦ୍ମବେଶୀ ଇନ୍ଦ୍ର କର୍ଣ୍ଣଙ୍କର ସହଜାତ କବଚ କୁଣ୍ଡଳକୁ ଭିକ୍ଷା ରୂପେ ଗ୍ରହଣ କରିବାର ଇଚ୍ଛା ପ୍ରକାଶ କରନ୍ତେ କର୍ଣ୍ଣ ଅତ୍ୟନ୍ତ ବିନୟର ସହିତ କହିଲେ,- ''ମହାଭାଗ, ଆପଣ ବୋଧହୁଏ ଜାଣନ୍ତି ନାହିଁ ଯେ ଉକ୍ତ କବଚ-କୁଣ୍ଡଳ ମୋର ସହଜାତ ଅଟେ । ଏହାକୁ ଶରୀରରୁ ଛିନ୍ନ କରିବା ଅତ୍ୟନ୍ତ କଷ୍ଟସାଧ୍ୟ । ଅଥଚ ଏହା ଆପଣଙ୍କ ପରି ଭିକ୍ଷାସୀ ବ୍ରାହ୍ମଣଙ୍କର କୌଣସି କାର୍ଯ୍ୟରେ ଲାଗିବ ନାହିଁ । ମୋ ଅଙ୍ଗରୁ ଛିନ୍ନ ଏହି ରକ୍ତ-ଲିପ୍ତ କୁଣ୍ଡଳ ଓ କବଚ ଦେଖି ଆପଣଙ୍କର ଗଭୀର ଦୁଃଖ ହେବ । ମୁଁ ଅସୀମ କଷ୍ଟ ଭୋଗ କରିବି, ଅଥଚ ଆପଣଙ୍କୁ ସନ୍ତୁଷ୍ଟ କରିପାରିବି ନାହିଁ । ଏଣୁ ନିବେଦନ କରୁଛି, ଆପଣ ସ୍ୱର୍ଣ୍ଣମୁଦ୍ରା, ବହୁମୂଲ୍ୟ ବସନ ଭୂଷଣ ଓ ଭୂ-ସମ୍ପତ୍ତି ଆଦି ଯାହା ଇଚ୍ଛା ତାହା ନିଃସଙ୍କୋଚରେ ମାଗି ଆପଣଙ୍କ ଅଭାବ ପୂରଣ କରନ୍ତୁ । ଏ ରକ୍ତଲିପ୍ତ ପଦାର୍ଥ ନେଇ ଅସନ୍ତୁଷ୍ଟ ହୁଅନ୍ତୁ ନାହିଁ ।''

କପଟୀ ଇନ୍ଦ୍ରଙ୍କର ଉଦ୍ଦେଶ୍ୟ ମହତ୍ ନଥିଲା । ତେଣୁ ସେ କହିଲେ,- ''ହେ ଦାନବୀର ! ମୁଁ ପ୍ରଥମରୁ ଯାଚ୍ଞା କରିଥିବା ବସ୍ତୁ ବ୍ୟତୀତ ଅନ୍ୟକିଛି ଗ୍ରହଣ କରବି ନାହିଁ । କିମ୍ୱା ତା ବଦଳରେ ଅନ୍ୟ କୌଣସି ଦ୍ରବ୍ୟ ଗ୍ରହଣ କରିବା ମୋର ଇଚ୍ଛା ନୁହେଁ । ଯଦି ଆପଣ ଅନିଚ୍ଛା ପ୍ରକାଶ କରନ୍ତି, ତେବେ ରିକ୍ତ-ହସ୍ତରେ ଫେରିଯିବା ପାଇଁ ମୁଁ କୁଣ୍ଠିତ ନୁହେଁ ।'' ଆଉ ପଦେମାତ୍ର ବାକ୍ୟ ଉଚ୍ଚାରଣ ନକରି ମହାଦାନୀ ଶାଣିତ ଖଡ୍ଗରେ ନିଜ ଅଙ୍ଗରୁ କବଚ ଓ କୁଣ୍ଡଳକୁ ଛିନ୍ନ କରି ଛଦ୍ମବେଶୀ ଇନ୍ଦ୍ରଙ୍କୁ ଅର୍ପଣ କଲେ । ମୁଁ ଆଉ ଆଗକୁ ଭାବି ପାରିଲି ନାହିଁ । ଖଡ୍ଗାଘାତ ସମୟର ଦାରୁଣ ଦୃଶ୍ୟକୁ କଳ୍ପନା କରି ମୋ ଆଖି ଝଲସି ଉଠିଲା । ସେତବେଳର ଅକଥନୀୟ ଯନ୍ତ୍ରଣା କଥା ସ୍ମରଣ କରି ମୋର ସର୍ବାଙ୍ଗ ଥରି ଉଠିଲା । ଛଦ୍ମବେଶୀ ଇନ୍ଦ୍ରଙ୍କ ପ୍ରତି ମୋର ଘୃଣା ଓ ବିଦ୍ୱେଷ ଏପରି ବୃଦ୍ଧି ପାଇଲା ଯେ ସମ୍ମୁଖରେ ପାଇଥିଲେ ମୁଁ ସେହି ନୀଚ ଦେବତାଙ୍କୁ କି ପ୍ରକାର ବ୍ୟବହାର କରିଥାନ୍ତି କହିପାରୁ ନାହିଁ । ଆଶ୍ଚର୍ଯ୍ୟ ଲାଗେ ଇନ୍ଦ୍ରଙ୍କ ପରି ନୀଚ, ସ୍ୱାର୍ଥପର ଓ ଅବିବେକୀ ଦେବତା ସ୍ୱର୍ଗରେ ସ୍ଥାନ ପାଇଛନ୍ତି କିପରି ? ଯେ ଏପରି ଘୃଣ୍ୟକାର୍ଯ୍ୟ କରିବାକୁ ପଶ୍ଚାତପଦ ନୁହନ୍ତି, କେଉଁ ବିଶେଷ ଗୁଣରୁ ତାଙ୍କୁ ସ୍ୱର୍ଗପରି ପବିତ୍ର ରାଜ୍ୟର

ରାଜପଦ ଅର୍ପଣ କରାଯାଇଛି । ଏଇ ଅବିବେକୀ ଦେବତା ଅତୀତରେ ଦେବୀ ଅହଲ୍ୟାଙ୍କ ପ୍ରତି କରିଥିବା ଅନ୍ୟାୟର ଫଳ ସ୍ୱରୂପ ମହର୍ଷି ଗୌତମଙ୍କ ରୋଷର ଶିକାର ହୋଇଥିଲେ । କାଳେ କାଳେ ତପସ୍ୱୀ ମାନଙ୍କର ତପଭଗ୍ନ କରିବା ପାଇଁ ସୁନ୍ଦରୀ ଅପ୍ସରାମାନଙ୍କୁ ପଠାଇବା ତାଙ୍କର ଏକ କୁତ୍ସିତ ଅଭ୍ୟାସ । ଇନ୍ଦ୍ରପଦକୁ ଯାବୁଡ଼ି ଧରିବା ଉଦ୍ଦେଶ୍ୟରେ ସେ ଯାବତୀୟ ଅନ୍ୟାୟ କରିବାକୁ ପଛେଇ ନାହାନ୍ତି । ଏବେ ସେଇ ଇନ୍ଦ୍ର ମୋ କର୍ଣ୍ଣର ସବୁ କିଛି ଲୁଟି ନେଇଛନ୍ତି । ମୋ ବିଚାରରେ ସେ ଏକ ଅପଦେବତା । ତାଙ୍କୁ ଦେବତାର ସମ୍ମାନ ଦିଆଯିବା ଆଦୌ ଉଚିତ ନୁହେଁ । ସାମାନ୍ୟ ସ୍ୱାର୍ଥ ପାଇଁ ଯେଉଁ ଦେବତା ଅନ୍ୟର ଜୀବନକୁ ଖେଳନା ମନେକରନ୍ତି ସେ ଦେବପଦ ବାଚ୍ୟ ହୋଇ ନପାରନ୍ତି ।

କର୍ଣ୍ଣର ଏ ଶୋଚନୀୟ ପରିଣତି ପାଇଁ ମୁଁ ନିଜକୁ ଆଦୌ କ୍ଷମାକରି ପାରୁନାହିଁ । ମୁଁ ଯଦି ଦୃଢ଼ତାର ସହିତ ପ୍ରକୃତ ତଥ୍ୟ ପ୍ରଦାନ କରିବାକୁ ଆଗେଇ ଆସିଥାନ୍ତି, ତେବେ ପରିସ୍ଥିତି ଏପରି ଦୁଃଖ ଓ ଯନ୍ତ୍ରଣାମୟ ହୋଇ ନଥାନ୍ତା ।''

ଦେବରାଜ ଇନ୍ଦ୍ରଙ୍କର ଏ ହୀନ ପ୍ରଚେଷ୍ଟାର ଅନ୍ତର୍ନିହିତ ଉଦ୍ଦେଶ୍ୟ ଜାଣିବା ମୋତେ ଆଦୌ କଷ୍ଟକର ହୋଇନଥିଲା । କବଚ କୁଣ୍ଡଳ ଥିବା ପର୍ଯ୍ୟନ୍ତ କର୍ଣ୍ଣ ସମ୍ପୂର୍ଣ୍ଣ ଅଜେୟ ହୋଇ ରିହିବ, ଏକଥା ଇନ୍ଦ୍ର ଉତ୍ତମ ରୂପେ ଜାଣିଥିବାରୁ ସେ ନିଜ ପୁତ୍ର ଅର୍ଜୁନର ସୁରକ୍ଷା ପାଇଁ ଛଦ୍ମବେଶରେ କବଚ କୁଣ୍ଡଳତ ନୁହେଁ କର୍ଣ୍ଣର ଜୀବନକୁ ଭିକ୍ଷାରୂପେ ଗ୍ରହଣ କରିଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ଇନ୍ଦ୍ରଙ୍କର ଏହି ଏକାନ୍ତ ସ୍ୱାର୍ଥପରତା ଓ ନୀଚତାକୁ ମୁଁ ଅତ୍ୟନ୍ତ ଘୃଣା କରିଥିଲି । ସାଧାରଣଙ୍କ ଚକ୍ଷୁରେ ଇନ୍ଦ୍ର ତାଙ୍କର ନୀଚ କାର୍ଯ୍ୟ ପାଇଁ ଆଦୌ ପ୍ରଶଂସିତ ହୋଇ ନଥିଲେ ।

କର୍ଣ୍ଣ ଓ ଅର୍ଜୁନ ଉଭୟେ ମୋର ଗର୍ଭଜାତ ସନ୍ତାନ । ଏ ଦୁହିଁଙ୍କ ମଧ୍ୟରୁ କେହି ମୋ ଆଖି ଆଗରୁ ଅନ୍ତର ହେବା ମୁଁ ସହ୍ୟ କରି ପାରିବି ନାହିଁ । ସୂର୍ଯ୍ୟଦେବ କର୍ଣ୍ଣର ପିତା । ସେ ତ କାହିଁ ନିଜ ପୁତ୍ରର ସୁରକ୍ଷା ପାଇଁ ବ୍ୟାକୁଳତା ପ୍ରକାଶ କରି ନାହାନ୍ତି । ମୁଁ ଭାବନାରେ ବୁଡ଼ିରହି ଥଳକୂଳ ପାଉନଥାଏ । ମୋ ମୁଣ୍ଡ ବୁଲାଇ ହୋଇଗଲା । ମୁଁ ତଳେ ବସି ପଡ଼ିଲି ।

ଅଳ୍ପ ସମୟପରେ ବିଦୂର ଆସି ମୋ ଚିନ୍ତା ରାଜ୍ୟରେ ଏକ ଝଡ଼ ସୃଷ୍ଟି କରିଦେଇ କହିଲେ,- ''ଦେବି; ଯୁଦ୍ଧ ଆରମ୍ଭ ପ୍ରାୟ । ମାତ୍ର ଅଳ୍ପଦିନ ପରେ ପ୍ରଳୟ ସୃଷ୍ଟି ହୋଇଯିବ । ବର୍ତ୍ତମାନ ଉଭୟ ପକ୍ଷ ନିଜ ନିଜର ଶକ୍ତି ବଢ଼ାଇବାରେ

ପ୍ରାଣପାତ ଉଦ୍ୟମ କରିବାରେ ଲାଗିଛନ୍ତି । ଭୀଷ୍ମ, ଦ୍ରୋଣ, କୃପ, ଅଶ୍ୱତ୍ଥାମା ଆଦି ମହାଧନୁର୍ଦ୍ଧରମାନେ କୌରବ ପକ୍ଷ ସମର୍ଥନ ପାଇଁ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ସେମାନେ ସମସ୍ତେ ପାଣ୍ଡବ ପ୍ରିୟ । ମୋର ବିଶ୍ୱାସ ଠିକ୍ ଯୁଦ୍ଧ ଆରମ୍ଭରେ ସେମାନେ ପାଣ୍ଡବମାନଙ୍କ ବିରୁଦ୍ଧରେ ଅସ୍ତ୍ର-ଉତ୍ତୋଳନ କରି ନପାରନ୍ତି । କେବଳ ଏକମାତ୍ର କର୍ଣ୍ଣହିଁ କୌରବମାନଙ୍କର ପରମମିତ୍ର ଓ ପୃଷ୍ଠ ପୋଷକ ଅଟନ୍ତି । ଯଦି କୌଣସି ଉପାୟରେ କର୍ଣ୍ଣଙ୍କୁ ପାଣ୍ଡବ ପକ୍ଷକୁ ଅଣାଯାଇ ପାରନ୍ତା, ତେବେ ଏ ଭୟଙ୍କର ନରମେଧ ଯଜ୍ଞ ଆପେ ଆପେ ପ୍ରଶମିତ ହୋଇ ଯାଆନ୍ତା । ବହୁ ଚିନ୍ତା କରି ଦେଖିଲି କର୍ଣ୍ଣହିଁ ଏକମାତ୍ର ବ୍ୟକ୍ତି ଯାହାଙ୍କୁ ପାଣ୍ଡବ ପକ୍ଷକୁ ଅଣାଯାଇ ପାରିଲେ ସମସ୍ୟା ସମାଧାନର ପଥ ସୁଗମ ହୋଇଯିବ ।''

ଭାବିଲି ବିଦୂର ଏକଥା ମୋତେ କହିବାର ଉଦ୍ଦେଶ୍ୟ କ'ଣ ? ମୁଁ କର୍ଣ୍ଣଙ୍କୁ ପାଣ୍ଡବ ପକ୍ଷକୁ ଆଣି ପାରିବି ବୋଲି ବିଦୂରଙ୍କର ବିଶ୍ୱାସ ହେଲା କିପରି । କିଛି ଥଳକୂଳ ପାଇଲି ନାହିଁ ସିନା, ସ୍ୱକୃତ ପାପ, ଯାହାକୁ ମୁଁ ଏ ପର୍ଯ୍ୟନ୍ତ ଅତି ଗୋପନୀୟ ରଖି ଯାବତୀୟ ମର୍ମ-ବେଦନା ସହି ଯାଉଛି, ଯାହାକୁ ମୁଁ ମୃତ୍ୟୁ ପୂର୍ବରୁ ପ୍ରକାଶିତ ହେବାକୁ ଦେବିନାହିଁ ବୋଲି ଦୃଢ ନିଶ୍ଚୟ ଥିଲି, ବୋଧହୁଏ ସେହି ଗୋପନୀୟତା କୌଣସି ସୂତ୍ରରୁ ଆତ୍ମ-ପ୍ରକାଶ କରି ସାରିଲାଣି । ତା' ନହୋଇଥିଲେ ବିଦୂର ମୋତେ ଯାହା କହିଲେ ସେଥିରୁ ସ୍ପଷ୍ଟ ସୂଚିତ ହେଲାଯେ,- ମୁଁ କର୍ଣ୍ଣର ଏପରି ଏକ ଆତ୍ମୀୟ ଯେ, ସେ ମୋ କଥାରେ ପାଣ୍ଡବ ପକ୍ଷକୁ ଆସିପାରେ । ଏବେ ଉପାୟ କ'ଣ ? ଚୋରର ମାଆ ପରି ମୁଁ କବାଟ କିଳି କାନ୍ଦିଲି ସିନା ବାହାରକୁ କିଛି ପ୍ରକାଶ କରି ପାରିଲି ନାହିଁ । ବିଦୂର କାହିଁକି ମୋତେ କର୍ଣ୍ଣଙ୍କ ପାଖକୁ ପଠାଉଛନ୍ତି ବୋଲି ପ୍ରଶ୍ନ କରିବାକୁ ମଧ୍ୟ ମୋର ସାହସ ହେଲା ନାହିଁ । ଭାବିଲି ବର୍ତ୍ତମାନ କର୍ଣ୍ଣର ମାନସିକ ପରିବର୍ତ୍ତନ କରିବାକୁ ଉଦ୍ୟମ ଆବଶ୍ୟକ ଏବଂ ଏ ପ୍ରକାର ଚେଷ୍ଟା ମୋତେହିଁ କରିବାକୁ ହେବ । ତେବେ ଉପାୟ କ'ଣ ? ମୁଁ କର୍ଣ୍ଣଙ୍କୁ ସାକ୍ଷାତ କରି କ'ଣ କହିବି ? ଅଧିକ ନୀରବତା ମଧ୍ୟ ଭୀତିପ୍ରଦହେଲା । ବିଦୂର ଆଉ କିଛି କହି ଦେବେ କି ? ଭାବିଲି- ଏ ସଂକଟଜନକ ମୁହୂର୍ତ୍ତରେ ମୋତେ କର୍ଣ୍ଣର ପ୍ରକୃତ ପିତା-ମାତାଙ୍କ ପରିଚୟ ପ୍ରକାଶ କରିବାକୁ ହେବ । ହୁଏତ ସେ ମମତା-ସିକ୍ତ ହୋଇ ମୋ ଅନୁରୋଧ ରକ୍ଷା କରିବାକୁ ଚିନ୍ତା କରିପାରେ । ଏତଦ୍ ବ୍ୟତୀତ ଅନ୍ୟ ଯାହାସବୁ ଭାବିଲି ତାହା ବୃଥା ଚିନ୍ତା

ଓ ନିଷ୍ଫଳ ପ୍ରୟାସ ବୋଲି ମନେହେଲା । ଯାହାହେଉ ପଛେ ମୁଁ କର୍ଣ୍ଣ ପାଖକୁ ଯିବା ପାଇଁ ନିଷ୍ପତ୍ତି କଲି । ମୋର ଏ ପ୍ରକାର ସମ୍ମତିରେ ବିଦୂରଙ୍କ ମୁହଁରେ ଉଲ୍ଲାସର ରେଖା ଫୁଟି ଉଠିବା ମୁଁ ଲକ୍ଷ୍ୟ କରିଛି ।

ବିଳମ୍ବ ନକରି ଅଗ୍ରସର ହେଲି । କିଛିଦୂର ଯାଇଛି କି ନାହିଁ ନିଜକୃତ ପାପ ମୁଖ-ବ୍ୟାଦାନ କରି ମୋତେ ଗ୍ରାସ କରୁଥିବା ପରି ବୋଧ ହେଲା । କର୍ଣ୍ଣହିଁ ମୋର କୁମାରୀ ଜୀବନର ଅଶ୍ଳୀଳ ସ୍ମୃତି । ବର୍ତ୍ତମାନ ସେ ଅଧିରଥର ପୁତ୍ର ଓ ରାଧାହିଁ ତା'ର ଜନନୀ । ଏହି ମିଥ୍ୟା ପରିଚୟ ପାଇ ସେ ଆନନ୍ଦିତ । ପ୍ରକୃତ ପରିଚୟ ପାଇବାକୁ ସେ ବ୍ୟଥିତ ନହୋଇଛି ଏପରି ନୁହେଁ । ମାତ୍ର କିଏ ଦେବ ତାକୁ ତା'ର ବାସ୍ତବ ପରିଚୟ ? ମହାନ୍ ପିତୃ ପରିଚୟ ତା'ର ସବୁଦିନ ପାଇଁ ଅଜ୍ଞାତ ରହିଯିବ ସିନା ? ନାଁ, ମୁଁ ଆଉ ଏପରି ହେବାକୁ ସୁଯୋଗ ଦେବି ନାହିଁ । ଯାହା ହେଲେ ବି ମୁଁ କର୍ଣ୍ଣକୁ ତା'ର ପ୍ରକୃତ ପିତା ମାତାଙ୍କ ପରିଚୟ ପ୍ରଦାନ କରିବି । ମୋର ବିଶ୍ୱାସ ମୋତେ ତା'ର ଗର୍ଭଧାରୀ ଜନନୀ ବୋଲି ଜାଣିବା ପରେ ନିଶ୍ଚୟ ତା' ମନରେ ପରିବର୍ତ୍ତନ ଆସିବ । ସେ ମୋ ଅନୁରୋଧକୁ ଉପେକ୍ଷା କରିବାକୁ ସାହସ କରିବ ନାହିଁ । ମାଆ ନିକଟରେ ପୁଅ କେବେହେଲେ ଏଡେ କଠୋର ହୋଇ ନପାରେ ।

ପରେ ପରେ ଭାବିଲି,- ମୋ କଥା ଶୁଣିବା ପରେ ଯଦି ବିପରୀତ ପରିସ୍ଥିତି ସୃଷ୍ଟିହୋଇ କର୍ଣ୍ଣ ମୋତେ ମାଆ ଭାବରେ ଗ୍ରହଣ ନକରେ ? ଅତୀତର ଅନୁସ୍ମରଣରେ ବ୍ୟଥିତ ହୋଇ ମୋତେ ବାଧା ହେବାପରି କିଛି କହେ, ତେବେ ମୋ ଅବସ୍ଥା କ'ଣ ହେବ ? ଜାତି ଯିବ ସିନା ପେଟତ ପୂରିବ ନାହିଁ । ମୁଁ କର୍ତ୍ତବ୍ୟ ନିର୍ଦ୍ଧାରଣ କରିବା ପାଇଁ ସଂପୂର୍ଣ୍ଣ ଅସମର୍ଥ ହୋଇ ବିକଳରେ ଡାକିଲି- ହେ ପ୍ରଭୁ ! ମୋତେ ଏ ବିପଦରେ ସହାୟ ହୁଅ ।

ଏହିପରି ଭାବୁଭାବୁ ମୁଁ ଗଙ୍ଗାକୂଳରେ ପହଞ୍ଚି ଯାଇଥିଲି । ଦେଖିଲି- କର୍ଣ୍ଣ ସ୍ନାନ ସାରି ସୂର୍ଯ୍ୟ ଦେବଙ୍କ ଉଦ୍ଦେଶ୍ୟରେ ଯବା କୁସୁମ ସଂକାଶ - ଉଚ୍ଚାରଣ ପୂର୍ବକ ଜଳାର୍ଘ୍ୟ ପ୍ରଦାନ କରୁଛି । ଅପେକ୍ଷା କଲି । କିଛି ସମୟ ପରେ ପ୍ରାର୍ଥନା ସମାପ୍ତ ହେଲା । ହଠାତ୍ ସମ୍ମୁଖରେ ମୋତେ ଦେଖି ସେ ଚକିତ ହୋଇ କହିଲା,- ''ହସ୍ତିନାର ପାଟରାଣୀ କୁନ୍ତୀ ଦେବୀଙ୍କୁ ସୂତପୁତ୍ର କର୍ଣ୍ଣ ଭକ୍ତିପୂତ ପ୍ରଣତି ନିବେଦନ କରୁଛି । କର୍ଣ୍ଣର ଏଇ ଗୋଟିଏ ମାତ୍ର ବାକ୍ୟ ମୋ ଶରୀରରେ ଅଗ୍ନି ସଂଯୋଗ କରି ଦେଇଥିଲା । ମୁଁ ଆକାଶରୁ ଖସି ଅଥଳ ସାଗରରେ ବୁଡି ଯାଉଥିବା ପରି

ଅନୁଭବ କଲି । ସମଗ୍ର ଶରୀର ମୋର ବିଷ ଜର୍ଜରିତ ହେବା ପରି ଅନୁଭୂତ ହେଲା । ମୁଁ କିଛି କହିବାକୁ ଚେଷ୍ଟା କଲି, ମାତ୍ର ମୋର କଣ୍ଠରୋଧ ହୋଇ ଆସିଲା । ନିରୁତ୍ତର ରହିବା ଦେଖି କର୍ଣ୍ଣ ପୁନଶ୍ଚ ପ୍ରଶ୍ନ କଲା, ମା, ନୀରବ କାହିଁକି ? ରାଧାର ପୁତ୍ର ଆପଣଙ୍କ ସେବା ପାଇଁ ପ୍ରସ୍ତୁତ ଅଛି । ଆଦେଶ ଦେଇ ମୋତେ ଧନ୍ୟ କରନ୍ତୁ ମାତଃ ।''

ମୁଁ ସାହସ ସଞ୍ଚୟ କରି କହିଲି,- ''ପୁତ୍ର ! ଏତେ ଦିନଯାଏ ପ୍ରକୃତ ସତ୍ୟକୁ ଗୋପନରଖି ମୁଁ ସର୍ବଦା ମାନସିକ ଯନ୍ତ୍ରଣାରେ ଜର୍ଜରିତ ହେବାରେ ଲାଗିଛି । ଆଉ ସହ୍ୟ କରିବା ମୋ ପକ୍ଷରେ ଏକାନ୍ତ ଅସମ୍ଭବ ଜାଣି ମୁଁ ତୋ ପାଖକୁ ଧାଇଁ ଆସିଛି ବାସ୍ତବ ସତ୍ୟକୁ ପ୍ରକାଶ କରି ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ । ବାବୁ, ତୁ ରାଧା ବା ଅଧିରଥର ସନ୍ତାନ ନୋହୁ । ମୁଁ କୁମାରୀ ଥିବା ଅବସ୍ଥାରେ ତୋତେ ଜନ୍ମ ଦେଇଛି । ସୂର୍ଯ୍ୟଦେବ ତୋର ପିତା । ରାଧା ବା ଅଧିରଥର ନାମ ଉଚ୍ଚାରଣ କରି ତୁ ମୋ ମାତୃତ୍ୱକୁ ଅବମାନନା ନକରିବାକୁ ଅନୁରୋଧ ।

କେବଳ ପରିଚୟ ଅଭାବରୁ ଭାଇ ଭାଇ ଶତ୍ରୁ ହୋଇ ଠିଆ ହୋଇଛ । ଯେଉଁ ଭାଇ ଆବଶ୍ୟକ ହେଲେ ଭାଇ ପାଇଁ ଜୀବନ ଦେବାକୁ ପଛାଏ ନାହିଁ, ଘଟଣା ଚକ୍ରରେ ସେଇ ଭାଇ ଆଜି ଭାଇର ରକ୍ତରେ ହୋରି ଖେଳିବାକୁ ଉଦ୍ୟତ ହେଲେଣି । ପାଣ୍ଡବଭାଇମାନେ ତୋର ସହୋଦର । କେବଳ ପରିଚୟ ଅଭାବ ଯୋଗୁଁ ଭାଇ ଭାଇ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବ,- ଏକଥା ମୋ ଆଖି ଆଗରେ ଘଟିବା ମୁଁ କଦାପି ସହ୍ୟ କରି ପାରିବି ନାହିଁ । ତୁ ତୋ ମାଆ ପେଟର ଭାଇ ମାନଙ୍କ ସହିତ ମିଳିତ ହୋଇ ଇନ୍ଦ୍ରପ୍ରସ୍ଥ ସିଂହାସନ ଆରୋହଣ କର । ଯୁଧିଷ୍ଠିର ନୁହେଁ- କର୍ଣ୍ଣହିଁ ମୋର ଜ୍ୟେଷ୍ଠ ସନ୍ତାନ । ସର୍ବ ପୂଜ୍ୟ ଦେବତା ସବିତାହିଁ ତୋର ପିତା । ପାଣ୍ଡବମାନଙ୍କ ଗହଣରେ କର୍ଣ୍ଣକୁ ଦେଖିଲେ ମୁଁ ସବୁକିଛି ପାଇଯିବି । ଅତୀତର ସମସ୍ତ ଦୁଃଖ ଯାତନା ଓ ଆତ୍ମଗ୍ଲାନିର ଅବସାନ ଘଟିବ । ମୁଁ ନିଜକୁ ପୃଥିବୀର ସବୁଠାରୁ ସୁଖୀ ମାଆ ବୋଲି ଗର୍ବ କରି ପାରିବି । ଆଶା ଓ ବିଶ୍ୱାସ ତୁ ମୋ ଅନୁରୋଧ ରକ୍ଷାକରି ସହୋଦର ମାନଙ୍କ ନିକଟକୁ ଫେରିଗଲେ ଅଜାଣତରେ ବଢି ଆସୁଥିବା ହିଂସା, ଭ୍ରାତୃସ୍ନେହ ଓ ମମତାରେ ପରିବର୍ତ୍ତିତ ହୋଇଯିବ ।''

ଏହି ସମୟରେ ଶୂନ୍ୟବାଣୀ ହେଲା,- ''ବତ୍ସ କର୍ଣ୍ଣ, ଯେଉଁ ସତ୍ୟ କୁନ୍ତୀଙ୍କ ଇଚ୍ଛା ବିନା ପ୍ରକାଶ ନହେବା ପାଇଁ ସ୍ଥିର କରିଥିଲି ତାହା ନିଜେ କୁନ୍ତୀ ପ୍ରକାଶ

କରିଦେବା ଦ୍ୱାରା ଗୋପନୀୟତାର ଆବଶ୍ୟକତା ଆଉ ରହିଲା ନାହିଁ । ଅଧିରଥ ଓ ରାଧା ତୋତେ ପାଳନ କରିଛନ୍ତି ସତ୍ୟ, ମାତ୍ର ତୁ ରାଧାର ଗର୍ଭଜାତ ସନ୍ତାନ ନୋହୁ କିମ୍ବା ଅଧିରଥ ତୋର ଜନ୍ମଦାତା ପିତା ନୁହନ୍ତି । ମୁଁ ତୋର ପିତା ଓ କୁନ୍ତୀ ଦେବୀ ତୋର ଜନ୍ମଦାତ୍ରୀ ଜନନୀ । ଏଣୁ କୁନ୍ତୀ ଦେବୀଙ୍କ ପରାମର୍ଶକୁ ପୁତ୍ର ହିସାବରେ ବିଚାରକୁ ନେବା ତୋର କର୍ତ୍ତବ୍ୟ ।''

ସୂର୍ଯ୍ୟ ଦେବଙ୍କ ସ୍ୱୀକାରୋକ୍ତି ପରେ ମୋ ମନର ଦୃଢତା ବୃଦ୍ଧି ପାଇଲା । ମୁଁ ଅଧିକ ଆଶାନ୍ୱିତ ହୋଇ କହିଲି,- ପୁତ୍ର, ତୁ ମୋ ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠ । ଅନୁଜମାନେ ଭକ୍ତିପୂତ ହୃଦୟରେ ତୋର ପଦବନ୍ଦନା କରିବେ । ଏଣୁ ମୋର ଏ ଆକୁଳ ମିନତି ରକ୍ଷା କରି ମୋତେ ଶାନ୍ତି ପ୍ରଦାନ କର । କୌରବମାନେ କିପରି ସ୍ୱଭାବର ତାହା ତୋତେ ଅବିଦିତ ନାହିଁ । 'ଦୁର୍ଜନ ସଙ୍ଗ ମେଳାୟ'ର ପରିଣତି ଦୁଃଖମୟ ହୋଇଥାଏ । ବର୍ତ୍ତମାନ ତୋର ଭାଇମାନେ ଘୋର ସଂକଟାପନ୍ନ । ଏ ଘଡିସନ୍ଧି ମୁହୂର୍ତ୍ତରେ ତୁ ରକ୍ତର ଆହ୍ୱାନକୁ ଉପେକ୍ଷା କର ନାହିଁ । ଅର୍ଜୁନ ତୋର ସହୋଦର ଭାଇ । ପରିଚୟ ଅଭାବରୁ ଉଭୟେ ଉଭୟଙ୍କର ଶତ୍ରୁ ହୋଇ ଯାଇଛ । ଆଉ ବିଳମ୍ବର ପ୍ରୟୋଜନ ନାହିଁ । ମୁଁ ଲଜ୍ଜା, ଆତ୍ମ ସମ୍ମାନ କିମ୍ବା ନାରୀତ୍ୱ ଉପରେ ଆଦୌ ଗୁରୁତ୍ୱ ଦେବାକୁ ଇଚ୍ଛା କରୁନାହିଁ । ଏକା ମାଆ ପେଟର ଦୁଇଭାଇଙ୍କ ମଧ୍ୟରେ ଅଜ୍ଞତା ବଶତଃ ଶତ୍ରୁତା ବୃଦ୍ଧିକୁ ଅଧିକ ପ୍ରଶ୍ରୟ ଦେବା ଏକାନ୍ତ ଅସହ୍ୟ ହୋଇ ଉଠିଲାଣି । ବର୍ତ୍ତମାନ ମୁଁ ସମଗ୍ର ଦୁନିଆକୁ ଜଣାଇ ଦେବାକୁ ଚାହେଁ- କର୍ଣ୍ଣ ଅଧିରଥର ପୁତ୍ର ନୁହେଁ । ସ୍ୱୟଂ ସହସ୍ର ଦିଧିତି ସୂର୍ଯ୍ୟ ଦେବ ତା'ର ପିତା ଓ ରାଜମାତା କୁନ୍ତୀ ହିଁ ତା'ର ଜନ୍ମଦାତ୍ରୀ । ଏହି ସତ୍ୟକୁ ପ୍ରକାଶ କରିବା ପାଇଁ ମୋତେ ଯେତେ ମୂଲ୍ୟ ଦେବାକୁ ପଡିଲେ ମଧ୍ୟ ମୁଁ ପଛେଇବି ନାହିଁ । କର୍ଣ୍ଣ-ଅର୍ଜୁନ ମଧ୍ୟରେ ଶତ୍ରୁତା ବଦଳରେ ଭ୍ରାତୃତ୍ୱ ମୋର ଏକାନ୍ତ କାମ୍ୟ । ମୁଁ ବିରାମହୀନ ଭାବରେ କହି ଚାଲିଥାଏ ଓ ମୋ ଦୁଇ ଚକ୍ଷୁରୁ ଗଙ୍ଗା-ଯମୁନାର ଅବାରିତ ଧାରା ବକ୍ଷତିନ୍ତାଇ ବହି ଆସୁଥାଏ ।''

କର୍ଣ୍ଣ ମୋ ଆଡକୁ ବିଷର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲା,- ''ମା, ଆପଣଙ୍କ ସ୍ୱୋକ୍ତି ଓ ସୂର୍ଯ୍ୟଦେବଙ୍କ ସ୍ୱୀକୃତିକୁ ଅସ୍ୱୀକାର କରିବାରେ କିଛି ନାହିଁ । ପିତା ମାତାହିଁ ପୁତ୍ରର ସର୍ବଶ୍ରେଷ୍ଠ ଗୁରୁ । ତାଙ୍କ ଆଦେଶ ପାଳନ କରିବା ପୁତ୍ରର କର୍ତ୍ତବ୍ୟ । ମାତ୍ର ମୁଁ ଏହାର ବ୍ୟତିକ୍ରମ ଓ ଏକ ସ୍ୱତନ୍ତ୍ର ପ୍ରାଣୀ ବୋଲି ନିଜକୁ ମନେ କରୁଛି ।

ମୋ କ୍ଷେତ୍ରରେ ଘଟି ଯାଇଥିବା ବିଡମ୍ବନା ମୋତେ ବ୍ୟସ୍ତ, ବିବ୍ରତ ଓ ଯନ୍ତ୍ରଣା କାତର କରିବାରେ ଲାଗିଛି । ନିୟତିର ନିଷ୍ଠୁର ଉପହାସ ସହ୍ୟ କରୁଥିବା ଏକ ବିଡମ୍ବିତ ଜୀବନର ପ୍ରତୀକ ମୁଁ । ଆପଣଙ୍କ ଅନୁରୋଧ ରକ୍ଷାକଲେ ମଧ୍ୟ ଅଧର୍ମ ମୋ ସାଥୀ ଛାଡ଼ିବ ନାହିଁ । ଏହାହିଁ ମୋ ଜୀବନର ବୈଚିତ୍ର୍ୟ ଓ ନିଷ୍ଠୁର ସତ୍ୟ । ଆପଣ ମୋର ଜନ୍ମଦାତ୍ରୀ, ସ୍ୱର୍ଗାଦପୀ ଗରୀୟସୀ ଜନନୀ । ଏ ନୀତିବାକ୍ୟକୁ ମୁଁ କଦାପି ଅସ୍ୱୀକାର କରି ପାରିବି ନାହିଁ । ମାତ୍ର ଗଭୀର ମର୍ମବେଦନା ଭରା କଣ୍ଠରେ କହିବାକୁ ବାଧ୍ୟ ହେଉଛି ଯେ, ସନ୍ତାନକୁ ଜନ୍ମଦେବା ପରେ ଆପଣ ଜନନୀର ଗୁରୁ ଦାୟିତ୍ୱ ପ୍ରତି ଆଖି ବୁଜି ଦେଇଛନ୍ତି । ପୁଣି ଜାଣି ଶୁଣି ଏପରି କରିବାକୁ ବାଧ୍ୟ ହୋଇଛନ୍ତି ମଧ୍ୟ । ସେତେବେଳେ ଆପଣ କୁଳ, ମାନ, ମର୍ଯ୍ୟାଦା, ଲୋକାପବାଦ ଓ ଆଭିଜାତ୍ୟକୁ ଅଗ୍ରାଧିକାର ଦେଇ ବାସ୍ତବତାକୁ ଦୂରେଇ ଦେଇଛନ୍ତି । ଆପଣଙ୍କ ଗୋପନ-ପ୍ରଣୟ ନିନ୍ଦନୀୟ ବା ବନ୍ଦନୀୟ ସେ ସଂପର୍କରେ କିଛି କହିବା ମୋ ଅଧିକାର ବହିର୍ଭୁତ । ପିତା ମାତାଙ୍କ ଚରିତ୍ର ସଂହାର ପୁତ୍ର କନ୍ୟା ମାନଙ୍କ ପକ୍ଷରେ ଗୁରୁତର ଅପରାଧ ଅଟେ । ମାତ୍ର ବିନୟର ସହିତ ଏତିକି ପଚାରୁଛି-ଭୂମିଷ୍ଠ ଶିଶୁଟିର କି ଅପରାଧ ଥିଲା ? ସେ କାହିଁକି ଅକାରଣରେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେଲା ? ଜଣକର ମାନ-ସମ୍ମାନ ଓ ଇଜ୍ଜତକୁ ଲୋକ ଚକ୍ଷୁରେ ନିର୍ମଳ ରଖିବା ପାଇଁ ଏକ ନିଷ୍ପାପ ଶିଶୁକୁ ବଳି ଚଢାଇବା କ'ଣ ପୈଶାଚିକ କାର୍ଯ୍ୟ ବୋଲି ବିବେଚିତ ହେବ ନାହିଁ ? ଆପଣ ସଦ୍ୟ-ଜାତ ସନ୍ତାନକୁ ନଦୀ ସ୍ରୋତରେ ବିସର୍ଜନ କରି ବାସ୍ତବ ସତ୍ୟକୁ ଲୋକ ଲୋଚନରୁ ଦୂରେଇ ରଖିବାକୁ ପଛାଇ ନାହାନ୍ତି । ପ୍ରବହମାନ ଜଳସ୍ରୋତରେ କ୍ଷୁଦ୍ର ଶିଶୁଟିଏ ନିଶ୍ଚୟ ତା'ର ଜୀବନ ସତ୍ତା ହରାଇବ ଓ ଏହି ନିନ୍ଦନୀୟ ଘଟଣା ଆତ୍ମ-ପ୍ରକାଶ କରିବାର ସମ୍ଭାବନା ସବୁଦିନ ପାଇଁ ଲୋକ-ଚକ୍ଷୁର ଅନ୍ତରାଳରେ ସମାଧିସ୍ଥ ହୋଇଯିବ, ଏହାହିଁ ଥିଲା ଆପଣଙ୍କ ତତ୍କାଳୀନ ଚିନ୍ତାଧାରା ।

କହିପାରୁନାହିଁ ମାତା, ଦୁର୍ଭାଗ୍ୟ କି ସୌଭାଗ୍ୟ ବଶରୁ ସେହି ଅବାଞ୍ଛିତ ସନ୍ତାନଟି ବଞ୍ଚିଗଲା । ମରିଯାଇଥିଲେ ତା ସ୍ମୃତି କେଉଁ କାଳରୁ ଆପଣଙ୍କ ମାନସ ପଟରୁ ଅନ୍ତର୍ହିତ ହୋଇ ସାରନ୍ତାଣି । ମାତ୍ର ସେହି ଶିଶୁଟି ଜୀବିତ ଥିବା ଜାଣିବା ପରେ ଆପଣଙ୍କ ମାତୃ-ହୃଦୟର ସଞ୍ଚିତ ସମସ୍ତ ବାତ୍ସଲ୍ୟ ଉଦ୍‌ବେଳିତ ହୋଇ ଆତ୍ମପ୍ରକାଶ କରିବାରେ ଲାଗିଛି ଏବଂ ଆପଣ ସେହି ପୁତ୍ର ପାଇଁ ଯେ କୌଣସି ତ୍ୟାଗ କରିବାକୁ ବର୍ତ୍ତମାନ ପ୍ରସ୍ତୁତ ହୋଇଗଲେଣି ।

ରାଧା ବା ଅଧିରଥଙ୍କ ନାମ ଉଚ୍ଚାରଣ କଲାମାତ୍ରେ ଆପଣଙ୍କ ହୃଦୟ ବ୍ୟଥାତୁର ହୋଇ ଉଠୁଛି । ମାତୃତ୍ୱ ଆର୍ତ୍ତ ଚିତ୍କାର କରୁଛି । ମାତ୍ର ସେଇ ଦୁଇଟି ନାମ ମୋ ତାପିତ ହୃଦୟରେ ଚନ୍ଦନର ଶୀତଳ ପ୍ରଲେପ ବୋଲି ଦେଉଛି । ଅଧିରଥ ମୋତେ ପାଣିରୁ ଛାଣି ଆଣିଥିଲେ । ରାଧା ମୋତେ କୋଳରେ ଧରି ବକ୍ଷର ଅମୃତରେ ମୋର କ୍ଷୁଧା ନିବାରଣ କଲେ । ସେହି ମହିୟସୀ ମହିଳାଙ୍କ ଅକୃତ୍ରିମ ସ୍ନେହ, ଶ୍ରଦ୍ଧା ଓ ବାତ୍ସଲ୍ୟର ସ୍ୱର୍ଗୀୟ ସ୍ପର୍ଶରେ ମୁଁ ମଣିଷ ହୋଇଛି । ଏପରି ଜୀବନ୍ତ ଦେବତାଙ୍କୁ ଅସମ୍ମାନ କରିବା ଘୋର ଅକୃତଜ୍ଞତା ହେବ । ମାତୃ-ସ୍ତନ୍ୟର ଅବମାନନା କରି ମୁଁ ନର୍କଗାମୀ ହେବାକୁ ଇଚ୍ଛା କରୁନାହିଁ ।

ମା, ଦେବକୀ ଓ ଯଶୋଦାଙ୍କ ମଧ୍ୟରେ ଯଶୋଦାହିଁ ବାସ୍ତବ ଜନନୀର କର୍ତ୍ତବ୍ୟ ପାଳନ କରିଥିଲେ । ସନ୍ତାନଟିଏ ଜନ୍ମ ଦେଇ କେହି ଜନନୀର ଗୌରବ ଲାଭ କରି ନଥାନ୍ତି । ଭୂମିଷ୍ଠ ସନ୍ତାନର ଉତ୍ତର-ଦାୟିତ୍ୱ ଅର୍ଥାତ ଲାଳନ-ପାଳନ, ଅଳି, ଅଝଟ ଆଦିକୁ ନିଜ ସୁଖ ବିନିମୟରେ ସହ୍ୟ କରି ପାରିଲେ ନାରୀ ବାସ୍ତବ ଜନନୀ ପଦବାଚ୍ୟ ହୋଇଥାଏ । ଦେବକୀ ଶ୍ରୀକୃଷ୍ଣଙ୍କ ଜନ୍ମଦାତ୍ରୀ । ମାତ୍ର ଜନ୍ମ ପରଠାରୁ ଜନନୀର ଯାବତୀୟ ଦାୟିତ୍ୱ ଗ୍ରହଣ କରିଥିଲେ ମାତା ଯଶୋଦା । ଜନ୍ମର ଅବ୍ୟବହିତ ପରେ ଯଶୋଦା କୃଷ୍ଣଙ୍କୁ ମାତୃ ଉତ୍ସଙ୍ଗର ଉଷ୍ଣତା ପ୍ରଦାନ କରି ବଡ଼ ହେବା ପର୍ଯ୍ୟନ୍ତ ଅନବରତ ତାଙ୍କର ଅଳି ଅର୍ଦ୍ଦଳି ଅକାତରରେ ସହ୍ୟ କରିଥିଲେ । ଏହି ବିଶେଷ କାରଣରୁ ଦୀର୍ଘଦିନ ପରେ କୃଷ୍ଣଙ୍କୁ ଦେଖିବା ମାତ୍ରେ ଯଶୋଦାଙ୍କ ମାତୃହୃଦୟ ବାତ୍ସଲ୍ୟରେ ଉଦ୍‌ବେଳିତ ହୋଇ ଉଠିଲା ଓ ତାଙ୍କ ବକ୍ଷରୁ ସ୍ୱତଃ-ପ୍ରବୃତ ଭାବରେ କ୍ଷୀର ଧାର ଝରି ଆସିଥିଲା । ବର୍ତ୍ତମାନ କହନ୍ତୁ ଶ୍ରୀକୃଷ୍ଣଙ୍କ ପ୍ରକୃତ ଜନନୀ ବୋଲି କାହାକୁ କୁହାଯିବ ? ଯେ ଜନ୍ମ ଦେଇଛି, ନା ଯେ ଜନ୍ମିତର ଉତ୍ତର ଦାୟିତ୍ୱ ଗ୍ରହଣ କରି ତାକୁ ମଣିଷ କରିବାରେ ନିଜକୁ ଉତ୍ସର୍ଗ କରିଦେଇଛି । ଯେ କୌଣସି କାରଣରୁ ହେଉନା କାହିଁକି ଆପଣ ମାତାର କର୍ତ୍ତବ୍ୟ ପାଳନ କରିବାରେ ଅସମର୍ଥ ହୋଇଛନ୍ତି । ଏକଥା ଆପଣ ଅସ୍ୱୀକାର କରି ପାରିବେ ନାହିଁ ।

ମା, ପୁତ୍ରପାଇଁ ମାତାର ତ୍ୟାଗ ଅସୀମ । ଅକୃତ୍ରିମ ସ୍ନେହ ଅସାମାନ୍ୟ ତ୍ୟାଗ ଯୋଗୁ ମାଆ ପୃଥିବୀଠାରୁ ବଡ଼ ବୋଲି କୁହାଯାଇଛି । ବିନୟର ସହିତ ପଚାରୁଛି ରାଧା ଓ ଆପଣଙ୍କ ମଧ୍ୟରୁ କିଏ ମୋତେ ମାଆର ମମତା ଦେଇ ବଞ୍ଚାଇଛି ? ଆଶ୍ଚର୍ଯ୍ୟ ଲାଗୁଛି, ଯେଉଁ ସୂର୍ଯ୍ୟଦେବ ଆଜି ମୋର ଜନ୍ମ ରହସ୍ୟ

ଉଦ୍‌ଘାଟନ କରି ପାରିଲେ, ଏତେ ଦୀର୍ଘକାଳ କାହିଁକି ସେ ମୋର ଉନ୍ନତ ବଂଶ-ପରମ୍ପରା ଓ ଆଭିଜାତ୍ୟକୁ ଗୋପନ ରଖି ମୋତେ ବାରମ୍ବାର ଲାଞ୍ଛିତ ଓ ଅପମାନିତ କରୁଥିଲେ ? ବାଲ୍ୟ କାଳରେ ଅସ୍ତ୍ରଶିକ୍ଷା ଓ ଅସ୍ତ୍ର ପରୀକ୍ଷା ସମୟରେ ମୁଁ ଯେପରି ଅପମାନିତ ଓ ଉପେକ୍ଷିତ ହୋଇଛି, ସେଥିପାଇଁ ଆପଣ ଓ ସୂର୍ଯ୍ୟଦେବ ଉଭୟେ ସମ ପରିମାଣରେ ଦାୟୀ । ବିଶେଷ କରି ଦ୍ରୌପଦୀଙ୍କ ସ୍ୱୟଂବର ସଭାରେ ଧୃଷ୍ଟଦ୍ୟୁମ୍ନ ମୋର ପିତୃ-ପରିଚୟ ପଚାରିବାରେ ମୁଁ ନିତାନ୍ତ ଅସହାୟ ଭାବରେ ଶୂନ୍ୟ ଆକାଶ ଆଡ଼କୁ ଚାହିଁ ରହିଥିଲି । ସେତେବେଳେ ଆଜିର ସୂର୍ଯ୍ୟଦେବ ଆକାଶରେ ବିରାଜମାନ ଥାଇ ମୋର ଏ ଅସହାୟ ଅବସ୍ଥା ଦେଖୁଥିଲେ ମାତ୍ର । ଇଚ୍ଛା କରିଥିଲେ ସେ ମୋର ଏ ଦୟନୀୟ ଅବସ୍ଥା ଚକ୍ଷୁ ପଲକରେ ଦୂର କରିପାରିଥାନ୍ତେ । କେଉଁ ବିଶେଷ କାରଣରୁ ନୀରବ ରହି ସେ ପୁତ୍ରର ଏ ଚରମ ଅପମାନକୁ ଉପଭୋଗ କରୁଥିଲେ ? ଯୁଧିଷ୍ଠିରାଦି କୁନ୍ତୀ-ପୁତ୍ରମାନେ ଯେଉଁ ସୁଖ ସୁବିଧା ଓ ଗୌରବର ଅଧିକାରୀ ହୋଇଛନ୍ତି, ମୁଁ ସେଥିରୁ ବଞ୍ଚିତ ହେଲି କାହିଁକି ? ଆପଣ ଜାଣି ଶୁଣି ଆପଣଙ୍କ ତଥା-କଥିତ ଜ୍ୟେଷ୍ଠ ପୁତ୍ର ପାଇଁ ଏକାନ୍ତ ଭାବରେ ନିର୍ଦ୍ଦୟ ହୋଇ ପଡିଛନ୍ତି । ଅବାଞ୍ଛିତ କର୍ଣ୍ଣ ପାଇଁ ଆପଣଙ୍କ କୋମଳ ମାତୃ-ହୃଦୟ ନିଶ୍ଚୟ ପଥର ପାଲଟି ଯାଇଛି ।

ବହୁଦିନ ବିତି ଗଲାଣି । ବହୁ ଘଟଣା ବି ଘଟି ଗଲାଣି । ଆପଣ କେବେହେଲେ କେଉଁ ଘଟଣାରେ ମୁହଁ ଖୋଲି ନାହାନ୍ତି । ଆଜି ହଠାତ୍ ଆପଣଙ୍କ ହୃଦୟର ମାତୃତ୍ୱ-ବନ୍ୟା କୂଳ-ଲଙ୍ଘନ କରିବାର ଉପକ୍ରମ କଲାଣି । ଏ ଅସମ୍ଭାବିତ ଆକସ୍ମିକ ପରିବର୍ତ୍ତନର ହେତୁ ନିର୍ଣ୍ଣୟ କରିବା ମୋ ପକ୍ଷରେ କଷ୍ଟକର ହୋଇ ପଡିଲାଣି । ବିନମ୍ରତାର ସହିତ ଜଣାଉଛି- ଆପଣଙ୍କ ଏ ଅଶ୍ରୁ ମୋତେ ବିଚଳିତ କରି ପାରିବ ନାହିଁ । ମୁଁ ସର୍ବଦା କର୍ତ୍ତବ୍ୟ ସଚେତନ ଓ ବହୁ ପୂର୍ବରୁ ଗ୍ରହଣ କରିଥିବା ନିଷ୍ପତ୍ତିରେ ଦୃଢ ଓ ଅବିଚଳିତ । ସାମାନ୍ୟ ମୋହ ବା କ୍ଷଣିକ ଦୁର୍ବଳତା ମୋତେ ପଥ-ଭ୍ରଷ୍ଟ ନକରିବା ପାଇଁ ମୁଁ ସତତ ସତର୍କ ରହିବି । ମୁଁ ମୋ ଚରିତ୍ରର ନିର୍ମଳତା ବଜାୟ ରଖିବା ପାଇଁ ସଂକଳ୍ପବଦ୍ଧ । ମହାରାଜା ପଣ୍ଡୁ କିମ୍ବା ଦେବାଧିଦେବଙ୍କ ପୁତ୍ରର ଗୌରବ ଅପେକ୍ଷା ସୂତପୁତ୍ରର ହୀନମନ୍ୟତାକୁ ମୁଁ ସାଦରେ ଗ୍ରହଣ କରିବି । ତାହାହିଁ ମୋର ଯୋଗ୍ୟ ପରିଚୟ ଓ ତହିଁରେ ମୋର ପରମ ପରିତୋଷ ।

ମା, ଦୁର୍ଯ୍ୟୋଧନଙ୍କ ଚରିତ୍ରର ଦୋଷତ୍ରୁଟି ନିର୍ଣ୍ଣୟ କରିବାକୁ ମୁଁ ସମୟ ପାଇନାହିଁ । ଯେଉଁ ଘଡିସନ୍ଧି ମୁହୂର୍ତ୍ତରେ ମୁଁ ଦୁଃଖ, ନିରାଶା, ଅପମାନ ଓ ଆତ୍ମଗ୍ଲାନିରେ ନିଜକୁ ଧିକ୍‌କାର କରୁଥିଲି, ଠିକ୍ ସେହି ମୁହୂର୍ତ୍ତରେ ସେ ଅକୁଣ୍ଠିତ ଚିତ୍ତରେ ମୋତେ ଯେଉଁ ଗୌରବ ଶ୍ରୀମଣ୍ଡିତ କରିଛନ୍ତି ତାହା ବିସ୍ମୃତ ହେବା ମୋ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । ସେହି ମୁହୂର୍ତ୍ତରୁ ହିଁ ମୋ ମନ କୌରବ ମାନଙ୍କ ପ୍ରତି କୃତଜ୍ଞତାରେ ଭରି ଉଠିଛି । ଦୁର୍ଯ୍ୟୋଧନ ଯାହା ହୁଅନ୍ତୁନା କାହିଁକି ମୋ ପ୍ରତି ସେ ଅତ୍ୟନ୍ତ ଉଦାର ଓ ତାଙ୍କ ହୃଦୟର ବିଶାଳତା ଏକାନ୍ତ ପ୍ରଶଂସନୀୟ । ତାଙ୍କ ନିକଟରେ ଆଜୀବନ ଋଣୀ ରହିବା ପାଇଁ ମୁଁ ବଚନବଦ୍ଧ । ପୁଣି କହୁଛି ମା, ତୁମର ଏ ଅଧମ ପୁତ୍ର ହସି ହସି ଜୀବନ ଦେଇ ପାରେ; ମାତ୍ର କୃତଘ୍ନତା କଦାପି କରି ପାରିବ ନାହିଁ । ଉପକାରୀର ପ୍ରତ୍ୟୁପକାର କରିବା ମୋର ଧର୍ମ । ଧର୍ମ ବିଚ୍ୟୁତ ମାନବ ପଶୁଠାରୁ ମଧ୍ୟ ହୀନ ବିବେଚିତ ହୁଏ । ଧର୍ମେଣ ହୀନାଂ ପଶୁଭି ସମାନାଂ ବୋଲି ଶାସ୍ତ୍ରୋକ୍ତି ଅଛି ।

ସମ୍ମୁଖ ସମରରେ ପ୍ରାଣ ବିସର୍ଜନକୁ ମୁଁ ପୌରୁଷ କହି ଗର୍ବ କରିବି । ମାତ୍ର ବିଶ୍ୱାସଘାତକତା କରି ଜୀବନ ଧାରଣ କରିବା ମୋ ପକ୍ଷରେ ମୃତ୍ୟୁଠାରୁ ବଳି ଯନ୍ତ୍ରଣା ଦାୟକ ହୋଇ ଉଠିବ । 'ମାଆ' ପରି ଏକ ସୁଧାଲିପ୍ତ ଶବ୍ଦ ଉଚ୍ଚାରଣ କଲା ବେଳକୁ ମୋର କଣ୍ଠରୋଧ ହୋଇ ଆସୁଛି । ମନର ଚଞ୍ଚଳତା ବୃଦ୍ଧି ପାଇବାରେ ଲାଗିଛି । ଅନେକ କିଛି ପ୍ରକାଶ କରିବା ପାଇଁ ମୁଁ ବ୍ୟଗ୍ର ହୋଇ ପଡିଲାଣି । ହୁଏତ ଜୀବନରେ ପୁଣିଥରେ ମାତୃ-ଦର୍ଶନର ସୌଭାଗ୍ୟ ମିଳିନପାରେ । ମାଆ, ଆପଣଙ୍କ ଲାଗି ମୁଁ ବିନା ଦୋଷରେ ଅନେକ ଦଣ୍ଡ ଭୋଗ କରି ସାରିଛି । ବେଳେବେଳେ ସେହି ଦୁଃଖଦ ମୁହୂର୍ତ୍ତର ଅନୁସ୍ମରଣରେ ମୋର ଅନ୍ତରାତ୍ମା ଚିତ୍କାର କରି ଉଠିଛି । ନୀରବରେ ମର୍ମ-ବେଦନା ସହ୍ୟ କରିବା ବ୍ୟତୀତ ଅନ୍ୟ କିଛି ଉପାୟ ନଥିବାରୁ ମୁଁ ମୂକ ପାଲଟି ଯାଇଛି । ମନେ ପକାନ୍ତୁ ମାତା,- ଯେଉଁଦିନ ଭୀମ ମୋତେ ସୂତପୁତ୍ର କହି କୌଳିକ ବୃତ୍ତିରେ ମନୋନିବେଶ କରିବାକୁ ତାଚ୍ଛିଲ୍ୟ କରିଥିଲା, ସେଦିନ ସେଇ ମୁହୂର୍ତ୍ତରେ ତୁମ ଗର୍ଭଜାତ ସନ୍ତାନ କର୍ଣ୍ଣର ପୁଣିଥରେ ମୃତ୍ୟୁ ହେଲା । ମଣିଷ ଥରେ ମାତ୍ର ମରେ, ମାତ୍ର ବିଡମ୍ବିତ ଭାଗ୍ୟ ମୋତେ ଥର ଥର କରି ମାରିବାରେ ଲାଗିଛି ।

ଯେଉଁ ମାତୃତ୍ୱ, ଯେଉଁ ବାତ୍ସଲ୍ୟ ଆପଣଙ୍କୁ ଆଜି ମୋ ପାଖକୁ ଟାଣି ଆଣିଲା, ସେଇ ମାତୃତ୍ୱ ବଳରେ ଆପଣ ଭୀମର ମୁହଁ ବନ୍ଦ କରି ପାରି ନଥିଲେ କାହିଁକି ? ଏ ପ୍ରଶ୍ନର ଉତ୍ତର ଆପଣ ଦେଇ ପାରିବେ ନାହିଁ ମୁଁ ଜାଣେ, ତଥାପି ମୋ ମନର ବେଦନା ପ୍ରକାଶ ନକରି ରହିପାରିଲି ନାହିଁ । ଉଦାର ଗୁଣରେ ଏ ଅଧମର ଦୋଷ ମାର୍ଜନା କରିବା ପାଇଁ ପ୍ରାର୍ଥନା କରୁଛି ।''

ମୋର କହିବାର କିଛି ନଥିଲା । କେବଳ ନୀରବତା ଅବଲମ୍ବନ ପୂର୍ବକ ସବୁ ଶୁଣି ଯାଉଥାଏ । ତା'ର ଯୁକ୍ତିଯୁକ୍ତ ପ୍ରଶ୍ନର କି ଉତ୍ତର ବା ଦେଇଥାନ୍ତି । ତେଣୁ ତାକୁ କୋଳରେ ଧରି ଅବାରିତ ଅଶ୍ରୁରେ ହିଁ ତା'ର ଉତ୍ତର ଦେଇଥିଲି । ଏକାନ୍ତ ମର୍ମସ୍ପର୍ଶୀ ଓ ଆବେଗପୂର୍ଣ୍ଣ କଣ୍ଠରେ ସେ ତା'ର ବହୁ ଦିନରୁ ପୁଞ୍ଜିଭୂତ ଦୁଃଖକୁ ଅନର୍ଗଳଭାବରେ ପ୍ରକାଶ କରି ଚାଲିଥାଏ । ଠିକ୍ ଅଶାନ୍ତ ସମୁଦ୍ର ବକ୍ଷରୁ ଅଜସ୍ର ଜୁଆର ଉଠି ବେଳାଭୂମିରେ ମଥାପିଟି ପୁଣି ଫେରି ଯାଉଥିବା ପରି ।

ଅଳ୍ପ ସମୟ ରହିଯାଇ ସେ ପୁଣି ଆରମ୍ଭ କଲା-''ମା, ଶ୍ରୀକୃଷ୍ଣ ମୋତେ ସମସ୍ତ କଥା କହି ସାରିଛନ୍ତି । ମୁଁ ମଧ୍ୟ ମୋ ମନକଥା ତାଙ୍କୁ ଜଣାଇ ଦେଇଛି । ଆପଣଙ୍କ ଆଗରେ ସେଇକଥା ଦୋହରାଉଛି ଯେ,- ଅର୍ଜୁନ ମୋର ଏକମାତ୍ର ପ୍ରତିଦ୍ୱନ୍ଦୀ ଓ ପ୍ରଧାନ ଶତ୍ରୁ । ଅନେକ କ୍ଷେତ୍ରରେ ମୁଁ ତାଠାରୁ ଅପମାନିତ ଓ ଅପଦସ୍ଥ ହୋଇଛି । ଆପଣଙ୍କ ଅନ୍ୟ ଚାରିପୁତ୍ରଙ୍କ ମଧ୍ୟରୁ କେହି ଜଣେ ହେଲେ ମୋର ସମକକ୍ଷ ନୁହନ୍ତି । ତେଣୁ ସେମାନଙ୍କ ସହିତ ଯୁଦ୍ଧ କରିବା ମୋ ପକ୍ଷରେ ଅତ୍ୟନ୍ତ ଲଜ୍ଜା ଜନକ ହେବ । ମା,- ମୁଁ ପୁଣିଥରେ ଆପଣଙ୍କ ଆଗରେ ଶପଥ କରି କହୁଛି- ଅର୍ଜୁନ ବ୍ୟତୀତ ତୁମ ଅନ୍ୟ ପୁତ୍ରମାନଙ୍କର କେଶାଗ୍ର ମଧ୍ୟ ସ୍ପର୍ଶ କରିବି ନାହିଁ । ଏ ପର୍ଯ୍ୟନ୍ତ ଯୁଦ୍ଧ ଆରମ୍ଭ ହୋଇନାହିଁ । ତେଣୁ ପରିଣତି ସଂପର୍କରେ କିଛି କହିବା ଅତ୍ୟନ୍ତ ଦୁଃସାଧ୍ୟ । କିନ୍ତୁ ଏକଥା ସତଯେ,- ଯୁଦ୍ଧ ହେଲେ କର୍ଣ୍ଣ ଓ ଅର୍ଜୁନଙ୍କ ମଧ୍ୟରୁ ଜଣକର ନାମ ନିଶ୍ଚୟ ଧରାପୃଷ୍ଠରୁ ସବୁଦିନ ପାଇଁ ଲୁଚିଯିବ । ଦୁଃଖ କରନ୍ତୁ ନାହିଁ । କର୍ଣ୍ଣମଲେ ପାଞ୍ଚ, ଅର୍ଜୁନ ମଲେ ବି ପାଞ୍ଚ । ତଥାପି ମଧ୍ୟ ଆପଣ ପଞ୍ଚ ପାଣ୍ଡବର ଜନନୀ ହୋଇ ରହିବେ ।

କର୍ଣ୍ଣର ଅଭିମାନ, କ୍ରୋଧ ଓ ପ୍ରଚ୍ଛନ୍ନ ବିରକ୍ତି ମୋତେ ଆଦୌ ବିଚଳିତ କରି ପାରି ନଥିଲା । ସ୍ୱକୃତ ପାପ ପାଇଁ ଅନୁଶୋଚନାରେ ଦଗ୍ଧହେବା ମୋର ଭାଗ୍ୟ ଲିପି । ଜୀବନର ଅତି ଗୋପନୀୟତାକୁ ଆଜି ପ୍ରକାଶ କରି କର୍ଣ୍ଣ ମନରେ

ଯେଉଁ ଭାବାନ୍ତର ଆଶା କରିଥିଲି ତାହା ସମ୍ପୂର୍ଣ୍ଣ ବୃଥା ହୋଇ ଯିବାରେ ମୁଁ ଅକଥନୀୟ ଯନ୍ତ୍ରଣା ଜର୍ଜରିତ ହେବାରେ ଲାଗିଲି । ଆଗରୁ ଆଶଙ୍କା କରିଥିବା 'ଜାତି ଯିବ, ପେଟ ପୂରିବ ନାହିଁ' ଭାବନାଟି ସତ୍ୟରେ ପରିଣତ ହେବାରେ ମୁଁ ଏକାନ୍ତ ଭାବରେ ଭାଙ୍ଗି ପଡ଼ିଲି । ତଥାପି ସମଗ୍ର ଜୀବନଟା ଦୁଃଖ ସହି ସହି ଛାତି ମୋର ପଥର ପରି ଟାଣ ହୋଇ ଯାଇଥିଲା । ତେଣୁ ଆଜିର ଏ ଦୁଃଖ ସହିବାକୁ ମୁଁ ପ୍ରସ୍ତୁତ ହୋଇଗଲି । ଆଶା ହଠାତ୍ ନିରାଶାରେ ପରିଣତ ହେଲେ ଯେଉଁ ବ୍ୟଥା ଅନୁଭୂତ ହୁଏ, ମୁଁ ତାହାହିଁ ଅନୁଭବ କରୁଥିଲି ମାତ୍ର ।

କର୍ଣ୍ଣ ପୁରୁଷ । ମାତୃ ହୃଦୟର ବିଶାଳତା, ମମତ୍ୱବୋଧ ସଂପର୍କରେ ତା'ର ଧାରଣା ଆସିବ କୁଆଡୁ ? ''ଆପଣ ପାଞ୍ଚପୁତ୍ରର ଜନନୀ ହୋଇ ରହିବେ''- ଏହାହିଁ ମୋ ପ୍ରାଣରେ କି ପ୍ରକାର ଆଲୋଡନ ସୃଷ୍ଟି କରିଥିବ, ତାହା କଠୋର-ପ୍ରାଣ ଜଣେ ପୁରୁଷ ପକ୍ଷରେ ଅନୁଭବ କରିବା ଏକାନ୍ତ ଅସମ୍ଭବ । ଶତ ପୁତ୍ରର ଜନନୀ ତା'ର ସବୁଠାରୁ ଦୁର୍ବଳ, ରୁଗ୍ଣ ଓ ଅସମର୍ଥ ପିଲାଟିକୁ ମଧ୍ୟ ପାଖରୁ ଅନ୍ତର କରିବା କଥା ଶୁଣିବା ମାତ୍ରେ ଶିହରି ଉଠିଥାଏ । ଫଳ ଅଧିକ ହେଲେ ଗଛ ନଇଁ ପଡିବାର କଷ୍ଟ ସହ୍ୟ କରେ ସିନା, ଫଳଗୁଡ଼ିକୁ ଛିଣ୍ଡାଇ ଫୋପାଡି ଦେବାକୁ ଇଚ୍ଛା କରିନଥାଏ । କର୍ଣ୍ଣର ସେଇ କଥା ପଦକ ମୋ ଅନ୍ତରାତ୍ମାକୁ ସନ୍ତାପିତ କରି ପକାଇଲା ।

ପୁଣି ମନେ ମନେ ଭାବିଲି,- ଯାବତୀୟ ଅନର୍ଥର ମୂଳଉତ୍ସ ମୁଁ । ଜନନୀ ହୋଇ ସଦ୍ୟଜାତ ସନ୍ତାନକୁ କୁମ୍ଭୀର ମୁହଁରେ ଫିଙ୍ଗିଦେଇ ଯେଉଁ ସୁନେଲି ଭବିଷ୍ୟତ କଳ୍ପନା କରିଥିଲି, ମନ୍ଦ ଭାଗ୍ୟକୁ ତାହା ମୋ ଉଦ୍ଦେଶ୍ୟର ପରିପନ୍ଥୀ ହୋଇ ମୋତେ ଉପହାସ କରିବାରେ ଲାଗିଲା । ଅତୀତର ପାପ ଲୁଚି ନରହି ଅଧିକ ଦୀପ୍ତିମନ୍ତ ହୋଇ ଆତ୍ମପ୍ରକାଶ କଲା । ଅନ୍ତରର ଗଭୀରତମ ପ୍ରଦେଶରେ ହୋଇଥିବା କ୍ଷତରେ ପ୍ରଲେପ ଦେବାକୁ ଯାଇ ମୁଁ ତାକୁ ଅଧିକ ଯନ୍ତ୍ରଣା-ଦଗ୍ଧ କରି ପକାଇଲି । ବାସ୍ତବ ସତ୍ୟକୁ ଗୋପନ କରିବାର ହୀନ-ପ୍ରୟାସ କିପରି ଦୁଃଖଦାୟକ ତାହା ମୃତ୍ୟୁପରେ ମଧ୍ୟ ମୁଁ ପାସୋରି ପାରୁ ନାହିଁ ।

ବେଳଗଡି ଯାଉଥାଏ । ସେଥିପ୍ରତି ମୁଁ ଆଦୌ ଧ୍ୟାନ ଦେଇ ପାରି ନଥିଲି । କର୍ଣ୍ଣର ସାନ୍ନିଧ୍ୟ ମୋତେ ଆତ୍ମ-ବିସ୍ମୃତ କରି ପକାଇଥାଏ । କହିବାରତ କିଛି ନଥିଲା, ମୁଁ କେବଳ ତା କଥା ଶୁଣିବାରେ ଲାଗିଥାଏ । ଶେଷକୁ କହିଲି,-

''ବାବୁ, ତୋ ସହିତ ଯୁକ୍ତି କରି କିମ୍ବା ତୋ ପ୍ରଶ୍ନର ଉତ୍ତର ଦେବା ପାଇଁ ମୁଁ ଶ୍ରମ-ସ୍ୱୀକାର କରି ନଥିଲି । ତୋତେ ପାଖରେ ପାଇ ମୁଁ ଆଦୌ ସମୟ ସଚେତନ ହୋଇ ପାରୁନାହିଁ । ଫେରିଯିବାକୁ ଇଚ୍ଛା କଲେ ମଧ୍ୟ ତୋତେ ଛାଡ଼ି ଆଗକୁ ପାଦ ପକାଇ ପାରୁ ନାହିଁ । ତଥାପି ନିଶ୍ଚୟ ଯିବାକୁ ହେବ । ଯିବା ପୂର୍ବରୁ ଶେଷଥର ପାଇଁ ଅନୁରୋଧ କରୁଛି ଯେ, ମାଆର ସମସ୍ତ ଦୋଷ ଭୁଲି ତୁ ମୋ କୋଳକୁ ଫେରିଆ । ଛଅ ପୁଅଙ୍କୁ ଏକାଠି ଦେଖିବାର ସୌଭାଗ୍ୟ ଲାଭ କଲେ ମୁଁ ନିଜକୁ ସଂସାରର ସବୁଠାରୁ ସୁଖୀବୋଲି ଅନୁଭବ କରିବା ସହିତ ଅତୀତର ସମସ୍ତ ଦୁଃଖ ଓ ନିର୍ଯ୍ୟାତନାକୁ ନିମିଷକ ମଧ୍ୟରେ ଭୁଲିଯିବି । ସାରାଜୀବନ ଯେଉଁ ହୃତ୍-ରତ୍ନର ଅଭାବ ମୋତେ ବ୍ୟସ୍ତ ବ୍ୟାକୁଳ କରି ରଖିଥିଲା, ଆଜି ସେହି ଅମୂଲ୍ୟ-ବିଭବର ଅଧିକାରିଣୀ ହୋଇ ମୁଁ ନିଜକୁ ଗୌରବାନ୍ୱିତ ମନେ କରିବି । ଏ ହତଭାଗିନୀ ଜନନୀ ପାଇଁ ଦାନବୀର କର୍ଣ୍ଣ କ'ଣ ଏହି ସାମାନ୍ୟ ଦାନ ଦେଇ ମାଆର ଭିକ୍ଷାଝୁଲି ପୂର୍ଣ୍ଣ କରିବାକୁ କୁଣ୍ଠିତ ହେବେ ?''

କର୍ଣ୍ଣ ମୋ ଆଡ଼କୁ ଏକ ଅର୍ଥପୂର୍ଣ୍ଣ ଗମ୍ଭୀର ଦୃଷ୍ଟି ନିକ୍ଷେପ କରି କହିଲା,- ''ମା ବହୁ ପୂର୍ବରୁ ମୁଁ ଅନେକ କଟୁକଥା କହି ତୁମ ମନରେ ଆଘାତ ଦେଇଛି । ଏବେ ଅଧିକ ସ୍ପଷ୍ଟ କରି ଜଣାଇ ଦେଉଛି ଯେ,- ଯଦି ଆପଣ ପାଣ୍ଡବମାନଙ୍କୁ ନିଷ୍କଣ୍ଟକ ରଖିବାକୁ ଏକାନ୍ତ ଇଚ୍ଛୁକ, ତେବେ ବିନାଦ୍ୱିଧାରେ ମୋ ଜୀବନ ମାଗି ନିଅନ୍ତୁ । ଅବିଳମ୍ବେ ଏହି ଶାଣିତ ଖଡ୍ଗରେ ମୋର ମସ୍ତକକୁ ସ୍କନ୍ଧଚ୍ୟୁତ କରି ଆପଣଙ୍କ ପାଦତଳେ ଅର୍ପଣ କରିଦେବି । ମାତ୍ର କୌରବଙ୍କୁ ତ୍ୟାଗ କରିବା ମୋ ପକ୍ଷରେ ସଂପୂର୍ଣ୍ଣ ଅସମ୍ଭବ । କର୍ଣ୍ଣ ଆପଣଙ୍କ ଗର୍ଭଜାତ ସନ୍ତାନ । କ୍ଷତ୍ରିୟର ଉଷ୍ଣରକ୍ତ ତା'ର ପ୍ରତ୍ୟେକ ଧମନୀରେ ପ୍ରବାହିତ ହେଉଛି । ଆପଣ ବୀର-ପ୍ରସବିନୀ । ବୀର ଜନନୀ । ଆପଣ କ'ଣ ମୋତେ ସତ୍ୟଭ୍ରଷ୍ଟ ହେବା ପାଇଁ ପରାମର୍ଶ ଦେଇ ପାରିବେ ? ଆପଣ କ'ଣ ଆପଣଙ୍କ ସନ୍ତାନର ସମ୍ମାନ ହାନୀରେ ଦୁଃଖ ଅନୁଭବ କରିବେ ନାହିଁ । ହସି ହସି ଜୀବନ ଦେବା ବୀରର ଧର୍ମ । ଧର୍ମଚ୍ୟୁତ ହୋଇ କାପୁରୁଷ ପରି ବଞ୍ଚି ରହିବାକୁ କୌଣସି କ୍ଷତ୍ରିୟ-ସନ୍ତାନ ପସନ୍ଦ କରେ ନାହିଁ । ଆପଣ ମୋର ବଂଶ ପରିଚୟ ପ୍ରଦାନ କରି ଅନୁଗୃହୀତ କରିଛନ୍ତି । ଏଥିପାଇଁ ମୁଁ ଗଭୀର କୃତଜ୍ଞତା ନିବେଦନ କରୁଛି । ସମୟ ଅତିକ୍ରାନ୍ତ ହୋଇ ଆସୁଛି । ବିଳମ୍ବ ନକରି ଆପଣ ପ୍ରତ୍ୟାବର୍ତ୍ତନ କରନ୍ତୁ । ଶେଷରେ ଏତିକି କହୁଛି

ଯଦି ସୌଭାଗ୍ୟକୁ ଜୀବିତ ରହେ ତେବେ ନିଶ୍ଚୟ ଆପଣଙ୍କ ନିକଟକୁ ଫେରିଆସି ମାତୃ-କୋଳର ଉଷ୍ଣତା ଅନୁଭବ କରିବି ।

ମା, ମୁଁ ଅଜ୍ଞାତ ଭାବରେ ଏକ ଅକ୍ଷମଣୀୟ ଅପରାଧ କରି ପକାଇଥିବାରୁ ଗଭୀର ଅନୁତପ୍ତ ଓ ମାନସିକ ଯନ୍ତ୍ରଣା ଜର୍ଜରିତ । ଅଜ୍ଞାନକୃତ ଅପରାଧ ସର୍ବଥା କ୍ଷମଣୀୟ । ଆପଣ ମୋ ପାଇଁ ଦେବୀ ଦ୍ରୌପଦୀଙ୍କୁ କହିବେ,- କର୍ଣ୍ଣର ଅଜ୍ଞାନକୃତ ଅପରାଧ ଓ ଅଶୋଭନୀୟ ଆଚରଣ ପାଇଁ ସେ ଗଭୀର ଅନୁତାପ କରିବା ସଂଗେ ସଂଗେ ସବିନୟ କ୍ଷମା-ପ୍ରାର୍ଥନା କରିଛି । ବର୍ତ୍ତମାନ ଜାଣିଲି, ସେ ମୋର ଭ୍ରାତୃବଧୂ ଓ ଆଦରଣୀୟା । ଅତୀତରେ ମୁଁ ଅଜ୍ଞତା ବଶତଃ ତାଙ୍କ ପ୍ରତି ଯେଉଁ ଅଶାଳୀନ ମନ୍ତବ୍ୟ ଦେଇଛି, ସେଥିପାଇଁ ମୁଁ ଗଭୀର ଭାବରେ ଅନୁତପ୍ତ । ଆଶା କରେ ତାଙ୍କ ପରି ଜଣେ ଉଦାର ହୃଦୟା ମହିଳା ମୋର ଏ ଅଜ୍ଞାନକୃତ ଅପରାଧକୁ ମାର୍ଜନା କରିବାରେ କୁଣ୍ଠିତା ହେବେ ନାହିଁ । ପୁନଶ୍ଚ ଜନନୀର ଆକୁଳ-ଆବେଗକୁ ପ୍ରତ୍ୟାଖ୍ୟାନ କରି ମୁଁ ଆଉ ଏକ ଅପରାଧ କରିଛି, ତେଣୁ ଆପଣଙ୍କ ଠାରୁ ମଧ୍ୟ କ୍ଷମାଭିକ୍ଷା କରେ ।''

ସୂର୍ଯ୍ୟାସ୍ତ ଆସନ୍ନ ପ୍ରାୟ । କର୍ଣ୍ଣ ମୋର ପାଦସ୍ପର୍ଶ କରି ବିଦାୟ ଗ୍ରହଣ କଲାବେଳେ ଗଦ୍‌ଗଦ୍ କଣ୍ଠରେ କହିଲା,- ମା, ନିଜକୁ କୁନ୍ତୀ ପୁତ୍ର ଭାବରେ ପରିଚୟ ଦେଇ ମସ୍ତକ ଉନ୍ନତ କରିବାର ସୌଭାଗ୍ୟ ବୋଧହୁଏ ଆଉ ଏ ଜୀବନରେ ଆସିବ ନାହିଁ । ବିଦାୟ ଜନନୀ- ବିଦାୟ ।''

କର୍ଣ୍ଣ ପଛକୁ ନଚାହିଁ ଚାଲିଗଲା । ମୁଁ ଭଗ୍ନ-ମନୋରଥ ଓ ବେଦନା-ବିଧୁର ହୃଦୟରେ ଉଆସକୁ ଫେରି ଆସିଲି । ଯାହା ଭାବିଥିଲି ତାହା କାର୍ଯ୍ୟକାରୀ ହେଲା ନାହିଁ । ରିକ୍ତ ହସ୍ତରେ ଫେରୁଥିଲା ବେଳେ ନିଜର ଦୁଷ୍କର୍ମକୁ ନିନ୍ଦା କରିବାଛଡ଼ା ମୋ ନିକଟରେ ଅନ୍ୟ କିଛି ଉପାୟ ନଥିଲା । କର୍ଣ୍ଣ ମୋର ଗର୍ଭଜାତ ସନ୍ତାନ । ଆଶାଥିଲା ଯେତେଯାହା ହେଲେବି ସେ ମୋ ଆଖି ଲୁହକୁ ଉପେକ୍ଷା କରି ପାରିବ ନାହିଁ । ମୋ କୋଳକୁ ଫେରି ଆସିଲେ ଅଜାଣତରେ ବଢି ଉଠୁଥିବା ଶତ୍ରୁତା ନିର୍ମଳ ଭ୍ରାତୃତ୍ୱରେ ବିବର୍ତ୍ତିତ ହୋଇଯିବ । ଫଳରେ ଦୁର୍ଯ୍ୟୋଧନର ଗର୍ବ, ଅହଂକାର ଓ ଯୁଦ୍ଧଜୟ କରିବାର ଦୁର୍ବାର ଅହମିକା ବୁଦ୍‌ବୁଦ୍ ପରି ଲୀନ ହୋଇଯିବ । ମୋ ପିଲାମାନଙ୍କ ପ୍ରତି ହୋଇଥିବା ଯାବତୀୟ ଅତ୍ୟାଚାରର ପ୍ରତିଶୋଧ ମୁଁ ନେଇ ପାରିବି । ଦ୍ରୌପଦୀ ଦୁର୍ଯ୍ୟୋଧନର ମୃତ୍ୟୁ ଦେଖି ଅତୀତ

ଲାଞ୍ଛନାର ଦୁଃଖ ପ୍ରଶମିତ କରିବ । ମାତ୍ର ଆଜି ଏ କି ଅଘଟଣ ଘଟିଗଲା ? କର୍ଣ୍ଣ ନିଶ୍ଚୟ କୌରବ ପକ୍ଷ ସମର୍ଥନ କରିବ ବୋଲି ଜଣାଇ ଦେବା ପରେ ମୁଁ ଆଶାର ଯେଉଁ ସମ୍ମୁଚ ଅଟ୍ଟାଳିକା ନିର୍ମାଣ କରିବାର ସ୍ୱପ୍ନରେ ବିଭୋର ହୋଇ ଉଠିଥିଲି, ତାହା ହତାଶାର ବଜ୍ରପାତରେ ଧୂଳିସାତ୍ ହୋଇ ଯିବା ପରି ଅନୁଭବ କଲି ।

ଭୀଷ୍ମ,ଦ୍ରୋଣ, କୃପ ଓ ଅଶ୍ୱତ୍ଥାମା ଆଦି ବୀରମାନେ ପାଣ୍ଡବପ୍ରିୟ । ସେମାନେ କୌରବ ମାନଙ୍କର ଔଦ୍ଧତ୍ୟ ଓ ଗର୍ବସ୍ଫୀତ ବ୍ୟବହାରକୁ ମନେମନେ ଘୃଣା କରୁଥିଲେ । ମୁଁ ଏକା ନୁହେଁ, ବିଦୁରଙ୍କ ପରି ଦୂରଦ୍ରଷ୍ଟା ବ୍ୟକ୍ତି ମଧ ଏହି ମହା ଧନୁର୍ଦ୍ଧରମାନେ କଦାପି ପାଣ୍ଡବଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବେ ନାହିଁ ବୋଲି ଏକ ପ୍ରକାର ସ୍ଥିର ନିଶ୍ଚିତ ହୋଇ ଯାଇଥିଲେ । ମାତ୍ର ଆଜି ସବୁ ବିପର୍ଯ୍ୟସ୍ତ ହୋଇଗଲା । ସମସ୍ତ ଗୁରୁଜନ କୌରବଙ୍କ ପକ୍ଷରେ ଯୁଦ୍ଧ କରିବେ, ଓ ମହାରଥୀ କର୍ଣ୍ଣ କୌରବମାନଙ୍କର ପରାମର୍ଶ ଦାତା ରୂପେ କାର୍ଯ୍ୟକରି ଯଥା ସମୟରେ ସେନାପତିର ଦାୟିତ୍ୱ ମଧ ଗ୍ରହଣ କରିବେ- ଏ କଥା ଶୁଣି ମୋ ମୁଣ୍ଡ ଘୂରିବାରେ ଲାଗିଲା । ମୁଁ ଉତୁଙ୍ଗ ଶିଖରରୁ ଖସି ରସାତଳକୁ ପଶିଗଲା ପରି ଅନୁଭବ କଲି । ଭାବିଲି, କର୍ଣ୍ଣହିଁ ଏ ଯୁଦ୍ଧର ପ୍ରମୁଖ ବ୍ୟକ୍ତି । କର୍ଣ୍ଣର ସହାୟତା ବିନା କୌରବମାନେ ଯୁଦ୍ଧ ପାଇଁ ଅଗ୍ରସର ହେବା ସମ୍ଭବପର ହୋଇନଥାନ୍ତା ।

ସବୁ ଆଶା, ସବୁ ସମ୍ଭାବନା ଅଳୀକ ପ୍ରମାଣିତ ହୋଇଯିବା ଫଳରେ କର୍ଣ୍ଣର ତିକ୍ତତାପୂର୍ଣ୍ଣ ବ୍ୟବହାର ମୋତେ ବ୍ୟଥିତ କରିବାରେ ଲାଗିଲା । ସେ ଦିନର ଅଶ୍ଳୀଳ ଅନୁଭୂତି ବାରମ୍ବାର ମୋତେ ହତାଶା ଓ ମାନସିକ ଅବସାଦ ଗ୍ରସ୍ତ କରି ପକାଇ ଥିଲା । କର୍ଣ୍ଣ ଯଦି ମୋ ଅନୁରୋଧ ପ୍ରତି ଅବହିତ ହୋଇ ଥାଆନ୍ତା, ତେବେ ହୁଏତ ଏ ପ୍ରଳୟଙ୍କରୀ ଯୁଦ୍ଧ ହୋଇ ନଥାନ୍ତା । କିମ୍ବା ହୋଇଥିଲେ ମଧ୍ୟ ମୁଁ ଆଶଙ୍କାର ଘନ କୁହେଳି ମଧ୍ୟରେ ଘାଣ୍ଟି ହେଉନଥାନ୍ତି । ଯାହା ଘଟିବାର ଥିବ ନିଶ୍ଚୟ ଘଟିବ । ଅଘଟଣ ଘଟିବା ପୂର୍ବରୁ ଅଘଟଣ ଆଶଙ୍କାରେ ଅଧିକ ଜର୍ଜରିତ ନହେବା ପାଇଁ ମୁଁ ସେହି ଅଗତିର ଗତି ପରମେଶ୍ୱରଙ୍କ ପାଦ ପଦ୍ମରେ ଶରଣନେଲି ।

ଯୁଦ୍ଧ ଆରମ୍ଭ ହୋଇଗଲା । ମୁଁ ଓ ଦ୍ରୌପଦୀ ଆମ ଶିବିରର ଅନତି ଦୂରରେ ଏକ ସୁରକ୍ଷିତ ସ୍ଥାନରେ ଅବସ୍ଥାନ କଲୁ ।

ପ୍ରଥମ ଦିନ ଭୀଷ୍ମ ସେନାପତି ରୂପେ ଯୁଦ୍ଧ ପରିଚାଳନା କରିବା ଶୁଣି ମୁଁ ଚମକି ପଡିଲି । ବହୁ ପୂର୍ବରୁ ବିଦୂର ଯେଉଁ ସବୁ କଥା କହିଥିଲେ ତାହା ସଂପୂର୍ଣ୍ଣ ମିଥ୍ୟା ପ୍ରମାଣିତ ହୋଇଗଲା । ଭାବିଲି- ଭୀଷ୍ମଙ୍କ ପରି ବିଚାରବନ୍ତ ନ୍ୟାୟ ପରାୟଣ ବ୍ୟକ୍ତି ଅନ୍ୟାୟ ପକ୍ଷ ସମର୍ଥନ କରିବାର କାରଣ କ'ଣ ? କାହିଁକି ସେ ପାଣ୍ଡବମାନଙ୍କୁ ଶତ୍ରୁ ଦୃଷ୍ଟିରେ ଦେଖିଲେ ? କାୟ ମନୋବାକ୍ୟରେ ପାଣ୍ଡବମାନେ ଦିନେ ହେଲେ ତାଙ୍କୁ ଅସମ୍ମାନ କରି ନାହାନ୍ତି । ତଥାପି ଏ ନିଷ୍ଠୁର ବୈରତାର କାରଣ କ'ଣ ? ମୁଁ ଆଉ ଅଧିକ ଭାବି ପାରିଲି ନାହିଁ । ମୋ ଆଶା ବୃକ୍ଷଟି ଉତ୍ତପ୍ତ ଝାଞ୍ଜିପବନରେ ଝାଉଁଳି ପଡ଼ିଲା ପରି ଅନୁଭବ କଲି ।

ମୁଁ ମହାତ୍ମା ଭୀଷ୍ମଙ୍କ ପୁତ୍ରବଧୂ । ସେ ମୋର ପୂଜନୀୟ ତଥା ବନ୍ଦନୀୟ ବ୍ୟକ୍ତି । କେଜାଣି କାହିଁକି ମୁଁ ସେ ମହାପୁରୁଷଙ୍କ ପ୍ରତି ଏକାନ୍ତ ଭାବରେ ଭକ୍ତି-ସମର୍ପିତ ହୋଇ ପାରିନଥିଲି । ହୁଏତ ତା ମୋର ଅଳ୍ପ ବୁଦ୍ଧିର ପରିଚାୟକ ହୋଇପାରେ । ମାତ୍ର ଏକଥା ନିରାଟ ସତ୍ୟଯେ, ସେ ମହାତ୍ମାଙ୍କ ଅନେକ କାର୍ଯ୍ୟକୁ ମୁଁ ଆଦୌ ସହଜ ଭାବରେ ଗ୍ରହଣ କରି ପାରିନଥିଲି । ଅତୀତକୁ ମୁଁ ଧୀରେ ଧୀରେ ଭୁଲି ଯିବାକୁ ଚେଷ୍ଟା କରୁଥିଲି , ହଠାତ୍ ଭୀଷ୍ମଦେବ ମୋ ଆଶା ତରୁ ମୂଳରେ କୁଠାରାଘାତ କରି ମୋ ପିଲାମାନଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବାର ସର୍ବ ପ୍ରଥମ ବ୍ୟକ୍ତି ରୂପେ ଦଣ୍ଡାୟମାନ ହୋଇଥିବା ଶୁଣି ମୋର ସେ ପୂର୍ବ-ଅସନ୍ତୋଷ ପୁଣି ଜାଗ୍ରତ ହୋଇ ଉଠିଲା । ସେ ସବୁରୁ ଅଳ୍ପ କିଛିର ଅବତାରଣା କରିବା ଅପ୍ରାସଙ୍ଗିକ ହେବ ନାହିଁ ।

ଅତି ବିଚାରବନ୍ତ ଭୀଷ୍ମଦେବ କୌରବମାନଙ୍କ ଔଦ୍ଧତ୍ୟ, ଗର୍ବ ଓ ହିଂସା ଜର୍ଜରିତ ନୀଚତାକୁ ଅତ୍ୟନ୍ତ ଘୃଣା କରୁଥିଲେ । ପାଣ୍ଡବମାନଙ୍କ ସରଳ ବ୍ୟବହାର, ସତ୍ୟବାଦିତା ଓ ଲୋଭ ଶୂନ୍ୟତାକୁ ସମଧିକ ମର୍ଯ୍ୟାଦା ପ୍ରଦାନ କରି ତାଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ପ୍ରକାଶ କରିବାରେ ଆଦୌ ତ୍ରୁଟି କରୁ ନଥିଲେ । ଏ ବିଷୟରେ ମୋର କାହିଁକି ଅନ୍ୟ ସମସ୍ତଙ୍କର ଏକ ପ୍ରକାର ଧାରଣା ସୃଷ୍ଟି ହୋଇ ଯାଇଥିବା ବେଳେ ହଠାତ୍ ସେହି ପ୍ରାଣ-ପ୍ରିୟ, ସତ୍ୟବାଦୀ, ନ୍ୟାୟ ପରାୟଣ ପାଣ୍ଡବମାନଙ୍କ ବିରୁଦ୍ଧରେ ଭୀଷ୍ମଦେବ ପ୍ରଥମ-ବ୍ୟକ୍ତି ରୂପେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେବା

ମୋତେ ବିସ୍ମିତ କରିଦେଲା । କୁରୁସଭାରେ ଦ୍ରୌପଦୀ ଲାଞ୍ଛନା କଥା ଆଗରୁ କହିଛି । ମାତ୍ର ତହିଁରେ ଭୀଷ୍ମଙ୍କ ଭୂମିକା ବିଷୟରେ ସବିଶେଷ କହି ତାଙ୍କୁ ନିନ୍ଦିତ କରିବାକୁ ଇଚ୍ଛା କରି ନଥିଲି । ମାତ୍ର ଆଜି ସ୍ୱତଃ ମୋ ମନ ଆନ୍ଦୋଳିତ ହେଉଛି । ଭୀଷ୍ମଙ୍କ ପ୍ରତି ଥିବା ଅଟଳ ବିଶ୍ୱାସ ଓ ଅଚଳା ଭକ୍ତି ଦ୍ରୁତଗତିରେ ମୋ ଠାରୁ ଅନ୍ତର ହୋଇ ଯାଉଛି । ତେଣୁ ଗୁରୁ ନିନ୍ଦା ଗୁରୁତର ପାପ ହେଲେ ମଧ ମୁଁ ସେ ପାପ କରିବାକୁ ଆଦୌ ଇତଃସ୍ତତ ହେଉନାହିଁ । ଶୁଣନ୍ତୁ- ଦ୍ରୌପଦୀ ଏକାନ୍ତ ଅସହାୟ ହୋଇ ଉପସ୍ଥିତ ମହାନ୍ ବ୍ୟକ୍ତିମାନଙ୍କ ଠାରୁ ସାହାଯ୍ୟ ନ ପାଇବାରୁ ଶେଷରେ ମହାମତି ଭୀଷ୍ମଙ୍କ ଶରଣାପନ୍ନ ହୋଇଥିଲା । ଦୁଃଖ ଓ ପରିତାପର ବିଷୟ, ସମସ୍ତ ଶକ୍ତି ସତ୍ତ୍ୱେ ସେ ମହାପୁରୁଷଙ୍କ କୃପା-ସିଂହସନ ଆଦୌ ଟଳିନଥିଲା । ପୁନଶ୍ଚ ବ୍ୟାକୁଳିତା ଦ୍ରୌପଦୀ ନ୍ୟାୟ ପାଇବା ଆଶାରେ ଭୀଷ୍ମଦେବଙ୍କୁ ଯେଉଁ ପ୍ରଶ୍ନ ପଚାରିଥିଲା, ତାହାର ଉତ୍ତର ମଧ୍ୟ ନଦେଇ ସେ ମଥା-ପୋତି ବସି ରହିଥିଲେ । ଏହି ବିଶେଷ ଘଟଣାରେ ଭୀଷ୍ମ ଘୋର ଅନ୍ୟାୟ କଲେ ବୋଲି ଅନେକେ ମତ ଦେଇଥିଲେ । ସେ ଇଚ୍ଛା କରିଥିଲେ ରାଜ-ସଭାରେ ଏ ପ୍ରକାର ଘୃଣ୍ୟ ପରିସ୍ଥିତି ଆଦୌ ସୃଷ୍ଟି ହୋଇ ପାରି ନଥାନ୍ତା । ସବୁଠାରୁ ଆଶ୍ଚର୍ଯ୍ୟର କଥା- ସାମାନ୍ୟ ପଶାଖେଳର ହାରଜିତ୍‌ରେ ପାଣ୍ଡବମାନେ ସର୍ବସ୍ୱ ହରାଇ ବର୍ଷେ ଅଧେ ନୁହେଁ, ତେର ବର୍ଷ କାଳ ବଣରେ ବୁଲିବାର ନିଷ୍ପତ୍ତିକୁ କେଉଁ ସଭ୍ୟ ସମାଜ ଅନୁମୋଦନ କରିପାରେ ? ଏପରି ଘୋର ଅନ୍ୟାୟକୁ ବିରୋଧ କରିବା ଦିଗରେ ମହାମାନ୍ୟ ଭୀଷ୍ମଦେବଙ୍କ ଭୂମିକା ଅତ୍ୟନ୍ତ ନିନ୍ଦନୀୟ ଥିଲାବୋଲି ମୁଁ ମୁକ୍ତ କଣ୍ଠରେ ଘୋଷଣା କରେ । ଶକ୍ତି ସତ୍ତ୍ୱେ ଅନ୍ୟାୟର ପ୍ରତିରୋଧ ନକରିବା ମଧ୍ୟ ପାପ ବୋଲି ଭୀଷ୍ମଦେବ ସଂପୂର୍ଣ୍ଣ ଭୁଲି ଯାଇଥିଲେ ।

ଗୁରୁଜନଙ୍କ ନିନ୍ଦା ନର୍କର ପଥ ସୁଗମ କରିଦିଏ - ଏକଥା ଜାଣି ମଧ୍ୟ ମୁଁ ସେଇ ନିନ୍ଦନୀୟ କାର୍ଯ୍ୟରେ ବ୍ରତୀ ହେଲି । ନକହିଲେ ମଧ୍ୟ ଆପଣମାନେ ଉତ୍ତମ ରୂପେ ଜାଣି ସାରିଲେଣି ଯେ ମୁଁ ଆଦୌ ପବିତ୍ରାତ୍ମା ମହୀୟସୀ ମହିଳା ରୂପେ ମାନ୍ୟତା ପାଇବାକୁ ଯୋଗ୍ୟ ନୁହେଁ । ଜୀବନରେ ବହୁ ପାପ କରିଥିବା ବ୍ୟକ୍ତି ଆଉ ଗୋଟିଏ ପାପ କରିବାକୁ ଦ୍ୱିଧା କରିବାର କାରଣ ନଥାଏ । ଏକଥା ଯେକେହି ସ୍ୱୀକାର କରିବେ ।

ଭୀଷ୍ମ ସେନାପତିର ଦାୟିତ୍ୱ ଗ୍ରହଣ କଲେ । ଆପଣମାନେ ଜାଣନ୍ତି କି ନାହିଁ କର୍ଣ୍ଣର ବ୍ୟବହାର ଭୀଷ୍ମଙ୍କୁ ଆଦୌ ଭଲ ଲାଗୁନଥିଲା ଏବଂ କର୍ଣ୍ଣ ମଧ୍ୟ ଭୀଷ୍ମଙ୍କ ପ୍ରତି ଆଦୌ ବଶଂବଦ ନଥିଲା । ଦ୍ରୋଣ ତାକୁ ଅସ୍ତ୍ର ଶିକ୍ଷାରୁ ବଞ୍ଚିତ କରିଥିବା ଯୋଗୁଁ ତାଙ୍କ ପ୍ରତି ମଧ୍ୟ କର୍ଣ୍ଣର ଆଦୌ ଆନୁଗତ୍ୟ ନଥିଲା । ଏହି କାରଣରୁ ଯୁଦ୍ଧ ଆରମ୍ଭ ହେବାମାତ୍ରେ ସେ ଘୋଷଣା କରିଦେଲା,- ''ଯେପର୍ଯ୍ୟନ୍ତ ଭୀଷ୍ମ ଓ ଦ୍ରୋଣ ଯୁଦ୍ଧ ପରିଚାଳନାର ଦାୟିତ୍ୱରେ ରହିବେ ସେ ପର୍ଯ୍ୟନ୍ତ ମୁଁ ଯୁଦ୍ଧରେ ଯୋଗ ଦେବି ନାହିଁ ।'' ଏକଥା ଶୁଣିବା ପରେ ମୁଁ ଭାବିଲି;- ବୋଧହୁଏ କର୍ଣ୍ଣର ମାନସିକ ପରିବର୍ତ୍ତନ ହୋଇଛି । ଏହିପରି ଅନ୍ୟକିଛି ବାହାନା ଦେଖାଇ ସେ ଯଦି ସଂପୂର୍ଣ୍ଣ ରୂପେ ଯୁଦ୍ଧରୁ ବିରତ ହୁଅନ୍ତା, ତେବେ ମୋର ଚିର-ପୋଷିତ ବାସନା ନିଶ୍ଚୟ ଫଳବତୀ ହୁଅନ୍ତା । ମାତ୍ର ମୁଁ ସେତେବେଳେ ଭୁଲି ଯାଇଥିଲି ଯେ-'ଭାଗ୍ୟ ଫଳୋତି ସର୍ବତ୍ର' । ମୋର କଳ୍ପନା ଅତି ଅଳ୍ପକାଳ ମଧ୍ୟରେ ଅଳୀକ ପ୍ରମାଣିତ ହୋଇ ଯାଇଥିଲା ।

ଦିନକୁ ଦିନ ଯୁଦ୍ଧର ଭୟାବହତା ବୃଦ୍ଧି ପାଇବାରେ ଲାଗିଲା । ପ୍ରତି ମୁହୂର୍ତ୍ତରେ ମୁଁ ଅଜଣା ଆଶଙ୍କାରେ ଶିହରି ଉଠୁଥାଏ । ଖବର ମିଳିଲା- ଭୀଷ୍ମଦେବ ଅର୍ଜୁନର ଶରାଘାତରେ ଭୂପତିତ ହୋଇଛନ୍ତି । ମୃତ୍ୟୁ ତାଙ୍କର ଇଚ୍ଛାଧୀନ ଥିବାରୁ ସେ ଯୁଦ୍ଧଶେଷ ପର୍ଯ୍ୟନ୍ତ ବଞ୍ଚି ରହିବାକୁ ଇଚ୍ଛା ପ୍ରକାଶ କଲେ । ତେଣୁ ଅର୍ଜୁନ ତାଙ୍କ ପ୍ରସ୍ତାବ କ୍ରମେ ଶରମୂନରେ ଏକ ଶଯ୍ୟାରଚନା କରି ଦେଇଥିଲେ । ଶରମୂନ କେବେ ଶଯ୍ୟାରୂପେ ବ୍ୟବହୃତ ହୁଏ ନାହିଁ । କେଜାଣି କାହିଁକି ଭୀଷ୍ମଦେବ ଶରମୂନର ଅସହ୍ୟ ଯନ୍ତ୍ରଣାକୁ ଆଦରି ନେଇଥିଲେ ତାହା ତାଙ୍କୁହିଁ ଜଣା । ହୁଏତ ଅତୀତ ଜୀବନରେ ଘଟିଥିବା ତ୍ରୁଟି ବିଚ୍ୟୁତିର ପ୍ରାୟଶ୍ଚିତ ସ୍ୱରୂପ ସେ ଜାଣିଶୁଣି ଏପରି ଦାରୁଣ କଷ୍ଟ ବରଣ କରିବାକୁ ସ୍ଥିର କରିଥିଲେ ।

ବିଗତ ଦିନର ବହୁ ସ୍ମୃତି ମୋତେ ଅଭିଭୂତ କରି ପକାଇଲା । ଭୀଷ୍ମଙ୍କ ଉଦ୍ଦେଶ୍ୟରେ ବିନମ୍ର ପ୍ରଣତି ନିବେଦନ କରି ମୁଁ ଅନେକ ସମୟ ତାଙ୍କ ମହନୀୟତା, ଉଲ୍ଲେଖନୀୟ ତ୍ୟାଗ ଓ ଅଟଳ ପିତୃ-ଭକ୍ତି ସ୍ମରଣ କରିବାରେ ନିବିଷ୍ଟ ରହିଥିଲି ।

ଭୀଷ୍ମଙ୍କ ପତନ ପରେ ପରେ ମହାଧନୁର୍ଦ୍ଧର ଅମିତ ପରାକ୍ରମଶାଳୀ ଅଜେୟ ବୀର-ପୁଙ୍ଗବ ଦ୍ରୋଣଙ୍କ ପତନ ସମ୍ବାଦରେ ମୁଁ ଚମକି ପଡ଼ିଲି । ଏକ ଅଜଣା ଆଶଙ୍କାରେ ମୋର ସମଗ୍ର ଶରୀର କମ୍ପି ଉଠିଲା । ଦ୍ରୋଣଙ୍କ ମୃତ୍ୟୁ

ପାଇଁ ନୁହେଁ- ତାଙ୍କ ପରବର୍ତ୍ତୀ ସେନାପତି ଭୂମିକାରେ ଅବତୀର୍ଣ୍ଣ ହେବା ବ୍ୟକ୍ତି କିଏ, ଏହି ଚିନ୍ତାରେ ମୁଁ ଅସ୍ଥିର ହୋଇ ଉଠିଲି । କର୍ଣ୍ଣର ସେଇ ଦୃପ୍ତ ଉଦ୍‌ଘୋଷଣ ମୋର ମନେ ପଡିଗଲା- ''ଯେ ପର୍ଯ୍ୟନ୍ତ ଭୀଷ୍ମ ଓ ଦ୍ରୋଣ ସେନାପତି ରହିଥିବେ, ସେ ପର୍ଯ୍ୟନ୍ତ ମୁଁ ଯୁଦ୍ଧରେ ଅସ୍ତ୍ର-ଧାରଣ କରିବି ନାହିଁ ।'' ହାୟ, ବର୍ତ୍ତମାନ କିଏ ସେନାପତିର ଦାୟିତ୍ୱ ଗ୍ରହଣ କରିବ ? ଏଇ ଚିନ୍ତା ମୋତେ ଅସ୍ଥିର କରି ପକାଇଲା । ମୁଁ ଆଉ ଅଧିକ ଚିନ୍ତା କରି ନପାରି ନୀରବରେ ବସି ରହିଲି । ଚତୁର୍ଦ୍ଦିଗ ମୋତେ ଅନ୍ଧକାରମୟ ଦେଖାଗଲା । ଏବେ କର୍ଣ୍ଣହିଁ ସେନାପତିର ଦାୟିତ୍ୱ ଗ୍ରହଣ କରିବ- ଏହା ମୋତେ ଜଳଜଳ ହୋଇ ଦେଖାଗଲା ।

ମୋ ଆଶଙ୍କା ସତ୍ୟରେ ପରିଣତ ହେଲା । କର୍ଣ୍ଣହେଲା କୌରବ ବାହିନୀର ସେନାପତି । ଅଜଣା ଭୀତି ମୋ ହୃଦୟ-ପଞ୍ଜରକୁ ଅସ୍ଥିର କରି ପକାଇବାରେ ଲାଗିଲା । ମୁଁ ଯୁଦ୍ଧର ଫଳାଫଳ ଅବଗତ ହେବା ପାଇଁ ଏକାନ୍ତ ଉତ୍କଣ୍ଠିତ ହୋଇ ଉଠିଲି ।

ହଠାତ୍ ଭୀମପୁତ୍ର ହିଡିମ୍ବା ନନ୍ଦନ ଘଟୋତ୍କଚ ଯୁଦ୍ଧରେ ଅବତୀର୍ଣ୍ଣ ହେଲା । ଏହି ଅସୁରବୀର ପ୍ରବଳ ପରାକ୍ରାନ୍ତ ଓ ମାୟାବୀ ଥିବାରୁ କୌରବ ସୈନ୍ୟମାନଙ୍କୁ ଚତୁରତାର ସହିତ ହତ୍ୟା କରିବାରେ ଲାଗିଲା - ଅଥଚ ତାକୁ କେହି ଦେଖିବାକୁ ପାଉ ନଥିଲେ । ଅତ୍ୟନ୍ତ ଆତଙ୍କିତ ହୋଇ କୌରବ ସୈନ୍ୟ ଛତ୍ରଭଙ୍ଗ ଦେବାରେ ଦୁର୍ଯ୍ୟୋଧନ ଶଙ୍କାକୁଳ ହୋଇ ପଡିଲେ । ସେ ବ୍ୟସ୍ତ ବିବ୍ରତ ହୋଇ ଏ ମାୟାବୀ ଅସୁରକୁ ତୁରନ୍ତ ହତ୍ୟା କରିବା ପାଇଁ କର୍ଣ୍ଣଙ୍କୁ ବାରମ୍ବାର ଅନୁରୋଧ କଲେ ।

କର୍ଣ୍ଣ ଦେଖିଲା- ଘଟୋତ୍କଚର ନିଧନହିଁ କୌରବ ସେନାଙ୍କ ମଧ୍ୟରେ ନୂତନ ଉତ୍ସାହ ସୃଷ୍ଟି କରିବାର ଏକମାତ୍ର ଉପାୟ । ମାତ୍ର ଅସୁରଟା ଏପରି ମାୟାବୀଯେ ତାକୁ ତୁରନ୍ତ ହତ୍ୟା କରିବା ସହଜସାଧ୍ୟ ନଥିଲା । ତେଣୁ ସେ ଉପାୟାନ୍ତର ନଦେଖି ଇନ୍ଦ୍ର-ଦତ୍ତ ଅସ୍ତ୍ର ପ୍ରୟୋଗ ଦ୍ୱାରା ଅସୁରକୁ ବଧ କରିଥିଲା । କର୍ଣ୍ଣକୁ ଇନ୍ଦ୍ରଙ୍କ ଅସ୍ତ୍ରଦାନ କଥା ଶୁଣିଲେ ମନରେ ସନ୍ଦେହ ସୃଷ୍ଟିହେବା କଥା । କାରଣ ଇନ୍ଦ୍ରହିଁ କର୍ଣ୍ଣକୁ ହୀନ-ବୀର୍ଯ୍ୟ କରିବା ଉଦ୍ଦେଶ୍ୟରେ ଛଳନାର ଆଶ୍ରୟ ନେଇଥିଲେ । ପୁଣି ସେହି ଇନ୍ଦ୍ର କର୍ଣ୍ଣର ସୁରକ୍ଷା ପାଇଁ ଦିବ୍ୟାସ୍ତ୍ର ପ୍ରଦାନ କରିବା ଏକାନ୍ତ ହାସ୍ୟାସ୍ପଦ ମନେ ହେବା ସ୍ୱାଭାବିକ । ଏହା ''ଗୋଇଠା ମାରି ବିଷ୍ଟୁ ହେବା'' ପରି ଏକ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ଯଦି କର୍ଣ୍ଣ ପ୍ରତି ଇନ୍ଦ୍ରଙ୍କର ଦରଦ ଥିଲା, ତେବେ ତାକୁ ହୀନ-ବଳ କରାଇ ପ୍ରକାରାନ୍ତରେ ତାହାର ମୃତ୍ୟୁ-ପଥ ସୁଗମ କରିବାର ଆବଶ୍ୟକତା ଥିଲା କେଉଁଠି ? ଅନୁମାନ କରାଯାଏ

କର୍ଣ୍ଣର ଅତୁଳନୀୟ ଦାନରେ କ୍ଷଣକ ପାଇଁ ମୁଗ୍ଧ ହୋଇ ଇନ୍ଦ୍ର ଏକ ଦିବ୍ୟାସ୍ତ୍ର ପ୍ରଦାନ କରି ପଳାଇଥିଲେ । ମାତ୍ର କର୍ଣ୍ଣର ନିଧନହିଁ ତାଙ୍କର ଏକମାତ୍ର କାମନା ଥିଲା ।

ପୁନଶ୍ଚ-ଅନ୍ୟ ଏକ ସନ୍ଦେହ ଆପେ ଆପେ ମୋତେ ବ୍ୟଥିତ କରୁଥିଲା । କର୍ଣ୍ଣ ସୂର୍ଯ୍ୟତନୟ । ଅର୍ଜୁନ ଇନ୍ଦ୍ରଙ୍କ ଔରସ ଜାତ । ଇନ୍ଦ୍ର ସ୍ୱୀୟ ପୁତ୍ର ଅର୍ଜୁନର ପ୍ରତିଷ୍ଠା ବୃଦ୍ଧି ପାଇଁ ଯାହା କରିଥିଲେ, ତାହା ସୂର୍ଯ୍ୟଙ୍କୁ ଅବିଦିତ ନଥିବ । ତଥାପି ସେ ଇନ୍ଦ୍ରଙ୍କର ଏତାଦୃଶ ଅନ୍ୟାୟ ଆଚରଣର ପ୍ରତିବାଦ ନକରିବାର କାରଣ କ'ଣ ? ସେ କ'ଣ ଇନ୍ଦ୍ରଙ୍କୁ ଖୁବ୍ ଭୟ କରୁଥିଲେ ? ଏହି ଜଟିଳ ପ୍ରଶ୍ନଟି ଏ ପର୍ଯ୍ୟନ୍ତ ମୋ ପକ୍ଷରେ ଅସମାହିତ ହୋଇ ରହିଯାଇଛି ।

ମୋର ଏଇ ଉକ୍ତିରୁ ଅନେକେ ମନେ କରୁଥିବେ ଯେ ମୁଁ ଅର୍ଜୁନ ଠାରୁ କର୍ଣ୍ଣକୁ ପ୍ରାଧାନ୍ୟ ଦେଇଛି ଓ କର୍ଣ୍ଣର ଜୀବନ-ପ୍ରତି ମୁଁ ଅଧିକ ସମ୍ବେଦନଶୀଳ ହୋଇ ଉଠିଛି । ମାତ୍ର ତା ଆଦୌ ନୁହେଁ । ତୁଳସୀ ପତ୍ରରେ ସାନ ବଡ଼ର ବିଚାର ନଥିବା ପରି ମୁଁ କର୍ଣ୍ଣ ଓ ଅର୍ଜୁନ ମଧ୍ୟରେ କାହାକୁ ହେଲେ ନ୍ୟୂନ ମନେ କରି ପାରିବି ନାହିଁ । ଉଭୟେ ଶତ୍ରୁତା ଭୁଲି ଭ୍ରାତୃତ୍ୱର ପବିତ୍ର ବନ୍ଧନରେ ବାନ୍ଧି ହୁଅନ୍ତୁ, ସେମାନଙ୍କ ହସ ଖୁସିରେ ମୋ ଅନ୍ତରର ଶୂନ୍ୟସ୍ଥାନ ପୂର୍ଣ୍ଣ ହୋଇଯାଉ ଏହାହିଁ ମୋର ଐକାନ୍ତିକ କାମନା ଥିଲା । ମାତ୍ର ମୁଁ ନାଚାର ଥିଲି । ଭାବିବା ବ୍ୟତୀତ ଅନ୍ୟ କିଛି କରିବା ମୋ ଶକ୍ତିର ବହିର୍ଭୂତ ଥିଲା ।

ଘଟୋତ୍କଚ ବଧ ପରେ କୌରବ ଶିବିର ହର୍ଷ-ମୁଖର ହୋଇ ଉଠିଲା ଓ ସେ ଦିନ ପାଇଁ ଯୁଦ୍ଧ ବିରତି ଘୋଷଣା କରି ଦିଆଗଲା ।

ଏହାର ପରବର୍ତ୍ତୀ ଦିନ ମୋ ଆଶଙ୍କାର ଶେଷଦିନ ଥିଲା । କର୍ଣ୍ଣ ଓ ଅର୍ଜୁନ ପରସ୍ପରର ମୁହାଁ ମୁହିଁ ହୋଇ ଯୁଦ୍ଧ କରିବେ । ଏକ ମାଆ ପେଟର ଦୁଇଭାଇଙ୍କ ମଧ୍ୟରେ ସଂଘର୍ଷର କଳ୍ପନା କରି ମୁଁ ଥରି ଉଠୁଥାଏ । ଏହି ଭୟଙ୍କର ଯୁଦ୍ଧରେ ଉଭୟ ବୀରଙ୍କ ମଧ୍ୟରୁ ଜଣକର ଜୀବନାବସାନ ନିଶ୍ଚୟ ହେବ,- ଏଇ କଥା ଭାବିଦେବାମାତ୍ରେ ମୋତେ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । ହାୟ, ଏ କି ଦୁର୍ଯ୍ୟୋଗ ଆସି ମୋତେ ବିଦ୍ରୂପ କରିବାରେ ଲାଗିଲା । କର୍ଣ୍ଣ ଅର୍ଜୁନ ଉଭୟେ ମୋ ନିକଟରେ ସମାନ । ମୁଁ କାହାରି ଅନିଷ୍ଟ ଚିନ୍ତା କରି ପାରୁ ନଥାଏ; ମାତ୍ର ଆସନ୍ନ ଯୁଦ୍ଧକୁ ବନ୍ଦ କରିଦେବା ମୋ ଶକ୍ତିର ଅତୀତ ଥିଲା । ଯୁଦ୍ଧର ପରିଣତି ଗୋଟିଏ ଜୀବନର ନିଶ୍ଚିତ ଅବସାନ- ଏଇ କଥା ସ୍ମରଣ କରି ମୁଁ ପାଗଳ ପରି ହୋଇ ଉଠିଥାଏ ।

ନିଜକୁ ଧିକ୍କାର କରି କହିଲି,- ''ଏ ଦୁର୍ଘଟଣା ପାଇଁ ମୁଁ ସଂପୂର୍ଣ୍ଣ ଦାୟୀ। ସ୍ୱକୃତ ପାପର ବିଷମୟ ପରିଣତି ନିଜ ଆଖିରେ ଦେଖି ଜୀବନ୍ତ ଦଗ୍ଧ ହେବାର ଯାତନା ଅନୁଭବ କରିବା ମୋ ଭାଗ୍ୟଲିପି। ଅପେକ୍ଷା କରିବା ବ୍ୟତୀତ ଅଧିକ କିଛି କରିବା ମୋ ଶକ୍ତିର ବହିର୍ଭୁତ ଥିଲା।

ସକାଳରୁ ସଞ୍ଜ ହେଲା। ଯୁଦ୍ଧ ଚାଲିଥାଏ। ମାତ୍ର ଫଳାଫଳ ସଂପର୍କରେ କୌଣସି ସଂବାଦ ନପାଇ ମୁଁ ତ୍ରସ୍ତା ହରିଣୀ ପରି ଆଶଙ୍କା ଜର୍ଜରିତ ହୋଇ ଥରୁକୁ ଥର ଶିହରି ଉଠୁଥାଏ। ଜାଗ୍ରତ ଅବସ୍ଥାରେ ବିଭତ୍ସ ସ୍ୱପ୍ନ ଦେଖି ଚମକି ପଡୁଥାଏ। ଆଖି ବୁଜି ଦେବା ମାତ୍ରେ ମୋତେ ଅନେକ ଅସମ୍ଭବ କଥା ଦେଖାଯାଏ। ମୁଁ ଏହିପରି ଅବସ୍ଥାରେ ଛଟପଟ ହେଉଥିବା ବେଳେ ହଠାତ୍ ଅର୍ଜୁନ ଘର ଭିତରକୁ ପଶିଆସି କହିଲା,- ''ମା, ଶୁଣ, ଆଜି ସେ ଉଦ୍ଧତ କର୍ଣ୍ଣର ମୁହଁ ସବୁଦିନ ପାଇଁ ବନ୍ଦ କରି ଦେଇ ଆସିଛି। ସେ ଆଉ ପଦଟିଏ କଥା ମଧ୍ୟ କହି ପାରିବ ନାହିଁ। ଆଜିଠାରୁ କୌରବମାନେ ଗଭୀର ଚିନ୍ତାରେ ବୁଡିଯିବେ ନିଶ୍ଚୟ। ସେମାନଙ୍କ ସର୍ବଶେଷ ସହାୟ କର୍ଣ୍ଣ ଆଉ ଏ ଧରାଧାମରେ ନାହାନ୍ତି,- ଏଇ କଥା ସ୍ମରଣ କଲା ମାତ୍ରେ ଦୁର୍ଯ୍ୟୋଧନର ହୃତ୍‌ସ୍ପନ୍ଦନ ବନ୍ଦ ହୋଇ ଆସିବ।'' ପରେ ପରେ ସେ ଦ୍ରୌପଦୀଙ୍କୁ ଟାଣି ନେଇ କହିଲା,- ''ଆରେ, ଏଠାରେ ବସିଛ କାହିଁକି ? ଶୀଘ୍ର ମୋ ସହିତ ଯୁଦ୍ଧ କ୍ଷେତ୍ରକୁ ଚାଲ। ଶୁଣିଛ କି ନାହିଁ,- ଯେଉଁ ଉଦ୍ଧତ କର୍ଣ୍ଣ କୁରୁସଭାତଳେ ତୁମକୁ ଗଣ-ଭୋଗ୍ୟା ଗଣିକା କହିବାର ଦୁଃସାହସ କରିଥିଲା, ଦୁର୍ଯ୍ୟୋଧନର କୁତ୍ସିତ ଇଙ୍ଗିତରେ ପୁଲକିତ ହୋଇ ଉଠୁଥିଲା, ଦୁଃଶାସନର ହୀନ କାର୍ଯ୍ୟକୁ ପ୍ରୋତ୍ସାହନ ଦେଉଥିଲା,- ସେହି ମହାବୀର ମହାଦାନୀ କର୍ଣ୍ଣଙ୍କର ସମସ୍ତ ଗର୍ବ, ଅଭିମାନ ଓ ଔଦ୍ଧତ୍ୟକୁ ମୁଁ ଆଜି କୁରୁକ୍ଷେତ୍ର ପ୍ରାଙ୍ଗଣରେ ସବୁ ଦିନପାଇଁ କବର ଦେଇ ଆସିଛି।''

ଅଧିକ କିଛି ଶୁଣିବା ପାଇଁ ମୋର ଧୈର୍ଯ୍ୟ ନଥିଲା, ମୁଁ ସଙ୍ଗେ ସଙ୍ଗେ ଚେତା-ଶୂନ୍ୟ ହୋଇ ତଳେ ପଡିଗଲି। ଅଧିକ ଶୁଣି ପାରିଥିଲେ ହୁଏତ ମୃତ୍ୟୁ ହୋଇ ମୋତେ ମୁକ୍ତି ମିଳି ଯାଇଥାନ୍ତା। ମାତ୍ର ତାହା ହେଲା ନାହିଁ। ଆହୁରି ଅଧିକ କିଛି ଶୁଣିବାକୁ, ଅଧିକ ଦୁଃଖ ଓ ମର୍ମ-ବେଦନାରେ ଛଟପଟ ହେବା ପାଇଁ ମୁଁ ବଞ୍ଚିଗଲି। ପିଲାମାନେ ଓ ଦ୍ରୌପଦୀ ମୋ ପାଖରେ ଆତଙ୍କିତ ହୋଇ ବସି ରହିଥାନ୍ତି। କେହି କିଛି ପଚାରିବାକୁ ସାହସ ମଧ୍ୟ କରୁ ନଥାନ୍ତି। ଅଳ୍ପ ସମୟ ପୂର୍ବର ହର୍ଷ ଉଲ୍ଲାସ ବିଷାଦ ବାଦଲରେ ଘୋଡେଇ ହୋଇ ପଡ଼ିଥିଲା।

ମୋର ଏ ଆକସ୍ମିକ ଅବସନ୍ନତାର କାରଣ ସଂପର୍କରେ ସମସ୍ତେ ସନ୍ଦୀହାନ ହୋଇ ଉଠିଥାନ୍ତି । କେହି କାହାକୁ କିଛି କହୁ ନଥିଲେ ମଧ୍ୟ ସମସ୍ତଙ୍କ ମନରେ ସେଇ ଗୋଟିଏ ପ୍ରଶ୍ନ- କର୍ଣ୍ଣର ନିଧନ ସଂବାଦରେ ଆନନ୍ଦିତ ହେବା ପରିବର୍ତ୍ତେ ହଠାତ୍ ମାଆ ଏପରି ସଞ୍ଜ୍ଞାହୀନ ହୋଇ ପଡିଲେ କାହିଁକି ? ଚିନ୍ତା କରିବାକୁ ଆଉ ବେଳ ନଥିଲା । ଦ୍ରୌପଦୀକୁ ମୋ ପାଖରେ ରଖିଦେଇ ସମସ୍ତେ ପରଦିନର ପ୍ରସ୍ତୁତି ପାଇଁ ଚାଲିଗଲେ ।

ଶେଷ ଆଡକୁ ଯୁଦ୍ଧର ଗତି କ୍ରମେ କ୍ଷୀଣ ହୋଇ ଆସିଲା । ପ୍ରତ୍ୟହ ଅସୁମାରୀ ବୀର ରଣ-ଯଜ୍ଞରେ ନିଜ ଜୀବନକୁ ଆହୁତି ଦେବାରେ ଲାଗିଥାନ୍ତି । କ୍ରମେ କ୍ରମେ ଭାରତ ମାତାର କୋଳ ବୀରଶୂନ୍ୟ ହୋଇ ଯାଉଥାଏ । ବହୁ ପୂର୍ବରୁ ଦୁର୍ଯ୍ୟୋଧନର ଭାଇମାନେ ଏ ସଂସାରରୁ ବିଦାୟ ନେଇ ସାରିଥାନ୍ତି । ବାକି ରହିଥାଏ, କୁରୁ କୁଳାଙ୍ଗାର ଦୁର୍ଯ୍ୟୋଧନ । କୁରୁବଂଶର ଶେଷ ଦୀପଶିଖା ରୂପେ ଏହି ଦୀପ୍ତ ଜ୍ୟୋତିଟି ସବୁଦିନ ପାଇଁ ନିର୍ବାପିତ ହେବାର ସମୟ ଉପସ୍ଥିତ ହୋଇ ଗଲା । ଭୀମ ଓ ଦୁର୍ଯ୍ୟୋଧନ ମଧ୍ୟରେ ସର୍ବଶେଷ ଯୁଦ୍ଧ ଆରମ୍ଭ ହୋଇଗଲା । ଓହୋ, କି ଭୀଷଣ ସେ ସମରର ଦୃଶ୍ୟ ! ଦୂରରୁ ଦେଖିଲେ ମନେ ହେଉଥିଲା, ସତେକି ଦୁଇଟି ପର୍ବତ ପରସ୍ପର ସହିତ ପିଟି ହୋଇ ଯାଉଛନ୍ତି । ଉଭୟ ଯୋଦ୍ଧାଙ୍କ ଗର୍ଜନ ମେଘ ଘଡଘଡିପରି ଶୁଣା ଯାଉଥାଏ । ରଣ ଭୂମି ଓ ତାହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ରହି ରହି ଥରି ଉଠୁଥାଏ । ଉଭୟଙ୍କ ଗଦାରୁ ନିର୍ଗତ ସ୍ଫୁଲିଙ୍ଗ ଚାରିଆଡ଼େ ବିଚ୍ଛୁରିତ ହୋଇପଡୁଥାଏ । ଏହିପରି ଅନେକ ସମୟ ଧରି ଯୁଦ୍ଧ ଅବାରିତ ଗତିରେ ଚାଲିଲା । ଭୀମର କ୍ରୋଧ ବହୁ ଗୁଣିତ ହୋଇ ଉଠିବାରୁ ସେ ଦୁର୍ଯ୍ୟୋଧନର ଜାନୁକୁ ଲକ୍ଷ୍ୟ କରି ଗଦାରେ ଏପରି ପ୍ରହାର କଲାଯେ ସେ ତଳେ କଚାଡି ହୋଇପଡି ଆର୍ତ୍ତ ଚିତ୍କାର କରିବାରେ ଲାଗିଲା । ଏହି ସମୟରେ ଭୀମ କହି ଉଠିଲା,- ‘‘ହେ ମହାମାନୀ ହସ୍ତିନା ସମ୍ରାଟ, ଦିଗ୍‌ବୀଜୟୀ ବୀର, ପାଣ୍ଡବମାନଙ୍କର ଅକୃତ୍ରିମ ବନ୍ଧୁ ମାନୀ ଦୁର୍ଯ୍ୟୋଧନ ! ମୋ କଥା ଗୁଡ଼ିକ ମନ ଦେଇ ଶୁଣିବାକୁ ଅନୁରୋଧ କରୁଛି । ଅଧିକ ବିଳମ୍ବ ହେଲେ ହୁଏତ ତୁମେ ଆଦୌ

କିଛି ଶୁଣି ପାରିବ ନାହିଁ । ନଶୁଣିଲେ ମୋ ମନରେ ଗଭୀର ଦୁଃଖ ରହିଯିବ । ପ୍ରଥମେ ଶୁଣ- ହେ ମହାମାନୀ ଦୁର୍ଯ୍ୟୋଧନ, ତୁମକୁ କିଏ କେବେ ହସ୍ତିନା ସିଂହାସନରେ ଅଭିଷିକ୍ତ କରିଥିଲା ? ଅନ୍ଧରାଜାକୁ ମୋହର ରୂପେ ବ୍ୟବହାର କରି ତୁମେ ଗୋଟାକ ପରେ ଗୋଟାଏ କବର ଖୋଳିବାରେ ଲାଗିଗଲ । ଶ୍ରୀକୃଷ୍ଣ ତୁମକୁ ବୁଝାଇବାକୁ ଯାଇଥିବା କଥା ନିଶ୍ଚୟ ମନେ ଥିବ ଏବଂ ଆହୁରି ମନେଥିବ ଯେ ତୁମେ ତାଙ୍କୁ ଅପମାନିତ କରି ରିକ୍ତ ହସ୍ତରେ ଫେରାଇ ଦେଇ କହିଥିଲ ନାଁ ପାଣ୍ଡବମାନଙ୍କ ଭାଗ୍ୟରେ ଭିକ୍ଷାନ୍ନ ବ୍ୟତୀତ ରାଜ-ଭୋଗ ସ୍ୱପ୍ନ ହେବା ନିଶ୍ଚିତ । ବୃଥାଚେଷ୍ଟା କରନାହିଁ କୃଷ୍ଣ । ବିନାଯୁଦ୍ଧେ ନଦେବି ମୁଁ ସୂଚ୍ୟଗ୍ର ମେଦିନୀ ।'' ଏହାହିଁ ଥିଲା ତୁମର ଶ୍ରୀକୃଷ୍ଣଙ୍କ ହାତରେ ପାଣ୍ଡବମାନଙ୍କୁ ଶେଷବାର୍ତ୍ତା । ଏବେ ତ ଫଳାଫଳ ତୁମ ଇଚ୍ଛା ଅନୁରୂପ ହୋଇଗଲା । ପାଣ୍ଡବମାନେ ଧରାପୃଷ୍ଠରୁ ସବୁଦିନ ପାଇଁ ନିଶ୍ଚିହ୍ନ ହୋଇଗଲେ । ନିଷ୍କଣ୍ଟକ ସମ୍ରାଟ ହେବାର ସ୍ୱପ୍ନ ତୁମର ସାର୍ଥକ ହେଲା । ପଛକୁ ଚାହିଁ ଦେଖ- ତୁମ ଆଜ୍ଞାକାରୀ ଭାଇମାନେ ସେମାନଙ୍କର ଧର୍ମ-ପତ୍ନୀମାନଙ୍କ ଗହଣରେ ତୁମକୁ ଅଭ୍ୟର୍ଥନା ଜଣାଇବା ପାଇଁ ଆଗେଇ ଆସୁଛନ୍ତି । ଧିକ୍ ତୁମର ପୌରୁଷ, ଶତଧିକ୍ ତୁମର ଗର୍ବ ଓ ଅଭିମାନକୁ । ମନେଥିବ ଦିନେ ତୁମେ ହସି ହସି କହିଥିଲ- ଜାନାମି ଧର୍ମଂ ନଚମେ ପ୍ରବୃତ୍ତି ଜାନାମ୍ୟଧର୍ମଂ ନଚମେ ନିବୃତ୍ତି । କଥାରେ ଅଛି ବୁଡିଗଲା ଗୋଡ ତଳକୁ ତଳକୁ । ଜୀବନଟା ଯାକ ଅନ୍ୟାୟ, ଅନୀତି ଓ ଅଧର୍ମକୁ ଆଶ୍ରୟ କରି ତୁମେ ସତ୍ୟ ଓ ନ୍ୟାୟର କଣ୍ଠରୋଧ କରିବାକୁ ଚେଷ୍ଟା କରି ଆସିଛ । ତେଣୁ ଧର୍ମପ୍ରତି ତୁମର ପ୍ରବୃତ୍ତି ଆସିଥାନ୍ତା କିପରି ? ଯାହାର ଧର୍ମ ଓ ନ୍ୟାୟ ପ୍ରତି ପ୍ରବୃତ୍ତି ନଥାଏ, ତା'ର ପରିଣତି ତୁମ ପରି ହେବା ଶାସ୍ତ୍ର ସମ୍ମତ । ଯେଉଁ ଅନ୍ୟାୟ ଓ ଅଧର୍ମ ତୁମକୁ ଅମୃତ ତୁଲ୍ୟ ପ୍ରୀତିପ୍ରଦ ବୋଧ ହେଉଥିଲା, ସେହି ଅଧର୍ମ ବିଷରୂପେ ଆତ୍ମ ପ୍ରକାଶ କରି ତୁମ ହୃଦୟକୁ ଜର୍ଜରିତ କରି ପକାଉଥିବ ।

ପୁଣିଥରେ ତୁମ ଅତୀତ ଅପକର୍ମ ଓ ସେ ସଂପର୍କରେ ମୋ ପ୍ରତିଜ୍ଞା ସ୍ମରଣ କରାଇ ଦେଇ ତୁମପରି ଉପକାରୀ ବନ୍ଧୁ ସ୍ୱଜନଙ୍କ ନିକଟରୁ ବିଦାୟ ନେବି । ମନେ ପକାଅ, ସେ ଦିନ କୁରୁସଭା ତଳର ବିଭତ୍ସ ଆନନ୍ଦର ଅନୁଭୂତି । ଦୁଃଶାସନ ଅନ୍ତଃପୁରରୁ ଦ୍ରୌପଦୀଙ୍କ କେଶ ଆକର୍ଷଣ କରି ସଭାକୁ ଟାଣି ଆଣିବାର ନଗ୍ନଦୃଶ୍ୟ ବହୁ ଉପଭୋଗ୍ୟ ହୋଇଥିଲା ନିଶ୍ଚୟ । ତୁମେ ମାତୃ-ସମା ଦ୍ରୌପଦୀଙ୍କୁ

ବେଶ୍ୟା କହିବାକୁ ଟିକିଏ ହେଲେ ସଙ୍କୋଚ ମଧ୍ୟ କରି ନଥିଲ । ପୁନଶ୍ଚ ତାଙ୍କୁ ତୁମ କଳଙ୍କିତ ଜାନୁରେ ବସାଇବାର କୁତ୍ସିତ ଇଙ୍ଗିତ ଦେବାରେ ତୁମେ ଏକ ବିଭତ୍ସ ଆନନ୍ଦରେ ଆତ୍ମହରା ହୋଇ ଉଠିଥିଲ । ଆହୁରି ମନେ ପକାଇ ଦେଉଛି- ତୁମର ଓ ତୁମ ଅନୁଗତ ଅନୁଜ ଦୁଃଶାସନର ଅପକର୍ମ ପାଇଁ ମୁଁ ପ୍ରଥମେ ପ୍ରତିଜ୍ଞା କରିଥିଲି- ଦ୍ରୌପଦୀଙ୍କ କେଶ ସେପର୍ଯ୍ୟନ୍ତ ଉନ୍ମୁକ୍ତ ରହିବ, ଯେ ପର୍ଯ୍ୟନ୍ତ ମୁଁ ପାପୀ ଦୁଃଶାସନ ଛାତିର ଉଷ୍ଣ ରକ୍ତରେ ସେହି ମୁକ୍ତ କେଶ ଗୁଚ୍ଛକୁ ସିକ୍ତ ନକରିଛି । ମୋର ଏ ପ୍ରତିଜ୍ଞା ମୁଁ ବହୁପୂର୍ବରୁ ପୂରଣ କରି ସାରିଛି । ମାତ୍ର ତୁମ ପ୍ରତି କରିଥିବା ପ୍ରତିଜ୍ଞା ପୂରଣରେ ସାମାନ୍ୟ ବିଳମ୍ବ ଘଟିଥିବାରୁ କ୍ଷମା ଚାହୁଛି । ସେ ଦିନ ମୁଁ କହିଥିଲି- ମାତୃ-ସମା ଦ୍ରୌପଦୀଙ୍କୁ ତୁ ତୋ ଜାନୁରେ ବସାଇବାର କୁତ୍ସିତ ଇଙ୍ଗିତ କରିଥିବାରୁ ମୁଁ ସେ ଜାନୁକୁ ଗଦା ପ୍ରହାରରେ ଚୂର୍ଣ୍ଣ ବିଚୂର୍ଣ୍ଣ କରି ଦେବି । ସେ ପ୍ରତିଜ୍ଞା ମଧ୍ୟ ମୁଁ ପୂରଣ କରିଛି କି ନାହିଁ ତୁମେ କହିବ । ଦୁଃଖ ଲାଗୁଛି- ଦୁଃଶାସନର ବକ୍ଷ ରକ୍ତରେ ପାଞ୍ଚାଳୀଙ୍କ ବେଣୀ ବନ୍ଧନର ଦୃଶ୍ୟ କୁରୁକ୍ଷେତ୍ର ରଣାଙ୍ଗନ ମଧ୍ୟରେ ହଜାର ହଜାର ଯୋଦ୍ଧୃବର୍ଗ ଉପଭୋଗ କରିଥିଲେ । ମାତ୍ର ଅନ୍ତିମ ପ୍ରତିଜ୍ଞା ପୂରଣ ସମୟରେ ଏ ରଣକ୍ଷେତ୍ର ଯୋଦ୍ଧା, ସେନାପତି ଓ ସୈନ୍ୟ ଶୂନ୍ୟ ହୋଇ ପଡ଼ିଛି । ରହିଛନ୍ତି କେବଳ ଶ୍ୱାନ, ଶୃଗାଳ ଓ ଗୃଧ୍ରମାନେ ତୁମ ରାଜକୀୟ ସୁସ୍ୱାଦୁ ମାଂସ ଲୋଭରେ । ସେମାନଙ୍କ ସଂଖ୍ୟା ମଧ୍ୟ ନଗଣ୍ୟ ନୁହେ । ମୁଁ ଯାହା କହିଥିଲି, ତାହା କାର୍ଯ୍ୟରେ ପରିଣତ କରି ଦେଖାଇ ଦେଇଛି; ମାତ୍ର ତୁମ ଦୁର୍ବାର-ବାସନା ସବୁଦିନ ପାଇଁ ବାସନାରେହିଁ ରହିଗଲା । ଆଉ ଅଧିକ କହିବା ଅନାବଶ୍ୟକ ମନେକରେ । ଅପେକ୍ଷାରତ ମାଂସ ଲୋଭୀ ଶ୍ୱାନ, ଶୃଗାଳ ମାନଙ୍କୁ ଅଧିକ ସମୟ ଅଟକାଇ ରଖିବା ମଧ୍ୟ ଅନ୍ୟାୟ ହେବ । ବିଦାୟ-ବିଦାୟ- ବିଦାୟ ।

ମହାଭାରତ ଯୁଦ୍ଧର ଶେଷ ଯବନିକା ପତନ ହୋଇଗଲା । ମୁଁ ସ୍ୱସ୍ଥତା ଅନୁଭବ କଲି ସତ; ମାତ୍ର ଅନ୍ତରର ବ୍ୟଥା ଊଣା ହେବା ପରିବର୍ତ୍ତେ ଦିନୁଦିନ ବଢ଼ିବାରେ ଲାଗିଲା । ମାତ୍ର ଅଠରଟି ଦିନ ମଧ୍ୟରେ ଯୁଦ୍ଧର ପରିସମାପ୍ତି ଘଟିଲା ସିନା, ଭାରତ ମାତାର କୋଳ ବୀରଶୂନ୍ୟ ହୋଇଗଲା । ପୁତ୍ରଶୋକାତୁରା ଅସୁମାରୀ ଜନନୀ ଏବଂ ସ୍ୱାମୀ ବିୟୋଗ-ବିଧୂରା ରମଣୀଙ୍କ ହୃଦୟ-ବିଦାରକ ଆର୍ତ୍ତ ଚିତ୍କାର ସମଗ୍ର ଭାରତ ଭୂଖଣ୍ଡକୁ ପ୍ରତିଧ୍ୱନିତ କରି ପକାଇଲା । କେତେ ପରିବାର ସର୍ବସ୍ୱ ହରାଇ ଦାଣ୍ଡର ଭିକାରୀ ପାଲଟି ଗଲେ । ଯୁଗେ ଯୁଗେ ସ୍ୱୟଂ

ପରମେଶ୍ୱର ଧର୍ମର ସୁରକ୍ଷା ପାଇଁ ମର୍ତ୍ତ୍ୟକୁ ଓହ୍ଲାଇ ଆସୁଥିବା କଥା ପ୍ରମାଣିତ ହୋଇଗଲା । ମହାଭାରତ ଯୁଦ୍ଧ ଏକାନ୍ତ ଭାବରେ ଏକ ଧର୍ମ-ଯୁଦ୍ଧ ଥିଲା । ଏଥିରେ ନ୍ୟାୟ ଅନ୍ୟାୟକୁ ଅତି ନିଷ୍ଠୁର ଭାବରେ ହତ୍ୟା କରି ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ'' ର ଯଥାର୍ଥତା ପ୍ରତିପାଦିତ କରି ଦେଇଥିଲା ।

ଯୁଦ୍ଧ ଚାଲିଥିବା ସମୟରେ ଶ୍ରୀକୃଷ୍ଣ ଅତ୍ୟନ୍ତ ନିପୁଣତାର ସହିତ ପାଣ୍ଡବମାନଙ୍କୁ ବିଭିନ୍ନ ପରାମର୍ଶ ଦେଇ ଆସୁଥିଲେ । ମୋ ଜୀବନର ଗୋପନ କାହାଣୀ ଶ୍ରୀକୃଷ୍ଣ ଓ ବ୍ୟାସଦେବଙ୍କୁ ଅଜଣା ନଥିଲା । ଏହି ଗୋପନୀୟତାକୁ ଯୁଦ୍ଧର ପରିସମାପ୍ତି ପର୍ଯ୍ୟନ୍ତ ଅପ୍ରକାଶିତ ରଖି ଧର୍ମ-ଯୁଦ୍ଧର ମହାନ ପ୍ରବାହକୁ ସାଗର ସଂଗମ ପର୍ଯ୍ୟନ୍ତ ପ୍ରବାହିତ କରି ନେବାରେ ଶ୍ରୀକୃଷ୍ଣ ଯେଉଁ ଅସାଧାରଣ ଧୈର୍ଯ୍ୟର ପରିଚୟ ଦେଇଥିଲେ, ତାହା ଏକାନ୍ତ ପ୍ରଣିଧାନ ଯୋଗ୍ୟ । ଶ୍ରୀକୃଷ୍ଣଙ୍କର ସାମାନ୍ୟତମ ଦୁର୍ବଳତା ପ୍ରକାଶ ପାଇଥିଲେ ଯୁଦ୍ଧର ଗତି ଭିନ୍ନ ମୋଡ ନେବାର ସମ୍ଭାବନାକୁ ଅସ୍ୱୀକାର କରିହୁଏ ନାହିଁ ।

ଅପେକ୍ଷାର ଅନ୍ତ ହୋଇ ଯାଇଛି । ଆଉ ବିଳମ୍ବ କରିବା ଅନାବଶ୍ୟକ । ତେଣୁ ଶ୍ରୀକୃଷ୍ଣ କର୍ଣ୍ଣଙ୍କ ପ୍ରକୃତ ପରିଚୟ ପ୍ରଦାନ କରି ପାଣ୍ଡବମାନଙ୍କୁ ବିସ୍ମୟ ବିମୂଢ଼ କରି ପକାଇ ଥିଲେ । ଯୁଧିଷ୍ଠିର କହିଲା,- '' ହେ ଚକ୍ରଧାରୀ, ତୁମରି ଲାଗି ଆମେ ଏ ଯୁଦ୍ଧରେ ପରାଜୟ ବରଣ କରିଛୁ । ଧର୍ମରକ୍ଷାର ଦ୍ୱାହି ଦେଇ ଆମେ ଘୋର ଅଧର୍ମ କରି ସାରିଲୁଣି । ବାସ୍ତବତା ଆମ୍ଭ ନିକଟରେ ଏକାନ୍ତ ଅଜ୍ଞାତ ଥିଲେ ମଧ୍ୟ ଆମେ ନିଜକୁ ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ କରି ପାରୁ ନାହୁଁ । ହେ କୃଷ୍ଣ, ଆମେ ତୁମକୁ ଏକାନ୍ତ ଆପଣାର ମନେ କରି ଜୀବନ ସମର୍ପଣ କରିଦେବାକୁ ପ୍ରସ୍ତୁତ ଥିଲୁ । ମାତ୍ର ତୁମେ ଏପରି କପଟାଚରଣ କରି ଆମକୁ ନର୍କର ଅତଳ ଗୌହରକୁ ଠେଲି ଦେବାର କାରଣ କ'ଣ ? ପୂର୍ବରୁ ଏ ଘଟଣାର କ୍ଷୀଣ ସୂଚ଼ନା ପାଇଥିଲେ ଆମେ ସହୋଦର ହତ୍ୟା ପରି ଏକ ଜଘନ୍ୟ ପାପରୁ ନିଜକୁ ରକ୍ଷା କରି ପାରିଥାନ୍ତୁ । ମହାରଥୀ, ମହାବୀର କର୍ଣ୍ଣ ମାତା କୁନ୍ତୀଙ୍କର ଜ୍ୟେଷ୍ଠ ସନ୍ତାନ ଓ ହସ୍ତିନା ରାଜ ସିଂହାସନର ଉପଯୁକ୍ତ ଦାୟାଦ । ତୁମେ ଅତ୍ୟନ୍ତ କପଟୀ ଓ ନିଷ୍ଠୁର ବୋଲି ଜାଣି ଆମେ ଗଭୀର ଭାବରେ ଅନୁତପ୍ତ । ଆମ ପାପର ପ୍ରାୟଶ୍ଚିତ ନାହିଁ । ଆମକୁ ରୌରବରେ ମଧ୍ୟ ସ୍ଥାନ ମିଳିବା ଅସମ୍ଭବ ମନେ ହେଲାଣି । ଆମ ବିଚାରରେ ତୁମେ ହିଁ କର୍ଣ୍ଣଙ୍କର ପ୍ରକୃତ ହତ୍ୟାକାରୀ । ସମସ୍ତଙ୍କୁ

ଅନ୍ଧାରରେ ରଖି ତୁମେ ତୁମ ମନ୍ଦ ଉଦ୍ଦେଶ୍ୟ ଅତ୍ୟନ୍ତ ଚତୁରତାର ସହିତ ସଂପନ୍ନ କରିଦେଲ ।''

ଧୀର ଓ ଅବିଚଳିତ ଭାବରେ ଯୁଧିଷ୍ଠିରର କଥା ଗୁଡ଼ିକ ଶୁଣିବାପରେ ଶ୍ରୀକୃଷ୍ଣ କହିଲେ,- ''ଧୈର୍ଯ୍ୟ ଧରି ଅପେକ୍ଷା କର ଓ ମୋ କଥା ମନ ଦେଇ ଶୁଣ । ତା'ପରେ ଯାହା ଇଚ୍ଛା ମନ୍ତବ୍ୟ ଦେଇପାର । ତୁମ୍ଭେମାନେ ନ୍ୟାୟର ପୁନଃ ସଂସ୍ଥାପନା ପାଇଁ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମରତ ଥିଲ । ଏ ସଂଗ୍ରାମ କୌଣସି ବ୍ୟକ୍ତି ବିଶେଷ ପାଇଁ ଉଦ୍ଦିଷ୍ଟ ନଥିଲା । ଯେ ଅନ୍ୟାୟ ପଥରେ ଗତି କରିଛି, ସେ ନ୍ୟାୟର ଖଡ୍ଗାଘାତରେ ନିଶ୍ଚୟ ଶେଷ ପାଇଯିବ । କୌଣସି ଶକ୍ତି ନ୍ୟାୟର ଗତିରୋଧ କରିବାକୁ ସମର୍ଥ ହେବ ନାହିଁ । ଏହା ଚିରନ୍ତନ ସତ୍ୟ । ସୃଷ୍ଟି ପରିଚାଳନାର ବାଗ୍‌ଡୋର କେବଳ ନିୟତିର କର୍ତ୍ତୃତ୍ୱାଧୀନ । ତେଣୁ ପୃଥିବୀରେ ଏପରି କୌଣସି ବ୍ୟକ୍ତି ବା ଶକ୍ତି ନାହିଁ ଯେକି ନିୟତିକୁ ନିଜ ଇଚ୍ଛା ଅନୁସାରେ ନିୟନ୍ତ୍ରଣ କରି ପାରିବ । କର୍ଣ୍ଣ ସୂର୍ଯ୍ୟ ତନୟ । ସୂର୍ଯ୍ୟସମ ମହା ତେଜୋଦୀପ୍ତ, ଅମିତ ବିକ୍ରମଶାଳୀ ଅଦ୍ୱିତୀୟ ଧନୁର୍ଦ୍ଧର । ମାତ୍ର ସେ ଅତ୍ୟନ୍ତ ଦୁର୍ବିନୀତ ଓ ଗର୍ବୀ । ତା'ର ସ୍ପର୍ଦ୍ଧିତ ବାକ୍ୟବାଣ ଅନ୍ୟର ଅନ୍ତରକୁ କ୍ଷତାକ୍ତ କରି ପକାଏ । ସ୍ଥିତ-ପ୍ରଜ୍ଞ ପିତାମହ ଭୀଷ୍ମଦେବ ଏହି କାରଣରୁ କର୍ଣ୍ଣ ସହିତ ବାକ୍ୟାଳାପ ମଧ୍ୟ ବନ୍ଦ କରି ଦେଇଥିବା କଥା ସମସ୍ତେ ଜାଣନ୍ତି । ସେ ତା'ର ସମ ପ୍ରକୃତିର ବ୍ୟକ୍ତି ଦୁର୍ଯ୍ୟୋଧନର ବନ୍ଧୁତ୍ୱ ସ୍ୱୀକାର ପୂର୍ବକ କୌରବ ମାନଙ୍କର ଯାବତୀୟ ଅନ୍ୟାୟ ଓ କୂଟକପଟ ପୂର୍ଣ୍ଣ ନିନ୍ଦନୀୟ କାର୍ଯ୍ୟକୁ ଅବିଚାରିତ ସମର୍ଥନ ଓ ସହଯୋଗ ଦେବାରେ ଆଦୌ କୁଣ୍ଠିତ ହୋଇ ନଥିଲା । ମାତା କୁନ୍ତୀ ଓ ମୁଁ ନିଜେ କର୍ଣ୍ଣକୁ ତା'ର ସମସ୍ତ ଅତୀତ କାହାଣୀ ସ୍ପଷ୍ଟ ଭାବରେ ଅବଗତ କରାଇ ଦେବା ସହିତ ଅନ୍ୟାୟ ପକ୍ଷ ତ୍ୟାଗ କରିବାକୁ ବହୁ ପରାମର୍ଶ ଦେଇଥିଲୁ । ମାତା କୁନ୍ତୀଙ୍କର ଆକୁଳ ଆବେଦନକୁ ସେ ଅତି ନିଷ୍ଠୁର ଭାବରେ ପ୍ରତ୍ୟାଖ୍ୟାନ କରି ଦେଲା । ଯାବତୀୟ ସତ୍-ପରାମର୍ଶ ଓ ହୃଦୟର ବ୍ୟଥା ନିବେଦନ ତା ନିକଟରେ ନିତାନ୍ତ ମୂଲ୍ୟହୀନ ହୋଇ ପଡିଲା । ତେଣୁ ତା'ର ଏ ଶୋଚନୀୟ ପରିଣତି ପାଇଁ ଅନ୍ୟ କାହାକୁ ଦୋଷ ଦେବା ଉଚିତ ହେବ ନାହିଁ । ଦୁର୍ଜନ ସଙ୍ଗ ମେଳାୟ ଅକାଳେ ମୃତ୍ୟୁ ଲକ୍ଷଣ ଉକ୍ତିଟି ପ୍ରମାଣିତ ହୋଇଗଲା ।

ମାତା କୁନ୍ତୀଙ୍କର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିବା ପରେ ତା'ର

ଭାବାନ୍ତର ହୋଇଛି । ତେଣୁ ଶେଷ ମୁହୂର୍ତ୍ତରେ ସେ କହିଛି- ମା, ମୁଁ ଅର୍ଜୁନ ବ୍ୟତୀତ ଅନ୍ୟ ଭାଇମାନଙ୍କର କେଶାଗ୍ର ମଧ୍ୟ ସ୍ପର୍ଶ କରିବି ନାହିଁ । ଯୁଦ୍ଧପରେ ମଧ୍ୟ ତୁମେ ସେହି ପାଞ୍ଚପୁତ୍ରର ଜନନୀ ହୋଇ ରହିବ । ପୁଣି କହିଥିଲା- କୁରୁ ସଭାରେ ଦେବୀ ଦ୍ରୌପଦୀଙ୍କୁ ଅଶାଳୀନ ମନ୍ତବ୍ୟରେ ଜର୍ଜରିତ କରି ସେ ତୀବ୍ର ମାନସିକ ଯନ୍ତ୍ରଣା ଅନୁଭବ କରୁଛି । ମୋର ଏହି ଅଜ୍ଞାନକୃତ ଅପରାଧକୁ ଉଦାର ହୃଦୟରେ କ୍ଷମା ଦେବାକୁ ଏକାନ୍ତ ଅନୁରୋଧ ।''

ଏସବୁ ଶୁଣିବାପରେ ପୁଅମାନେ ମୋତେ ଭର୍ତ୍ସନା କରିବାରେ ଲାଗିଲେ । ଯୁଧିଷ୍ଠିର ଅତ୍ୟନ୍ତ କ୍ଷୁବ୍ଧ ହୋଇ କହିଲା, ''ମା, ତୁମେ ଏ କ'ଣ କରିଦେଲ ? ଜାଣିଶୁଣି ତୁମ ପିଲାମାନଙ୍କୁ ନର୍କକୁ ଠେଲି ଦେଲସିନା ! କେବଳ ତୁମରି ଲାଗି ଆମେ ଭ୍ରାତୃହତ୍ୟା ପରି ଏକ ଜଘନ୍ୟ ଅପରାଧ କରି ମଧ୍ୟ ବିଭସ୍ସ ଆନନ୍ଦରେ ଅଧୀର ହୋଇ ଉଠିଥିଲୁ । ଧିକ୍ ଆମର ବୀରତ୍ୱକୁ, ଶତଧିକ୍ ଆମର ଏ ତଥାକଥିତ ବିଜୟ ଗୌରବର ଅନ୍ତଃସାର ଶୂନ୍ୟ ଅହମିକାକୁ । ମା, ନାରୀଜାତି ସତ୍ୟକୁ ଏପରି ଗୋପନ ରଖନ୍ତି ବୋଲି ମୋର ଆଦୌ ଧାରଣା ନଥିଲା । ଆମ ଆଗରେ ସତ୍ୟ-ଘଟଣାଟିକୁ ଗୋପନ ରଖି ତୁମେ ଆମ ପ୍ରତି ଘୋର ଅବିଚାର କରିଛ । ତୁମେ ତୁମ ପୁତ୍ରମାନଙ୍କୁ ଏ ପର୍ଯ୍ୟନ୍ତ ଚିହ୍ନି ପାରି ନଥିବା ଜାଣି ମୁଁ ଅତ୍ୟନ୍ତ ମର୍ମାହତ । ଯେତେ ଯାହାହେଲେ ମଧ୍ୟ ମୁଁ ଆଉ ଶାନ୍ତି ପାଇ ପାରିବି ନାହିଁ । ଅତୀତର ଅପକର୍ମମାନ ସ୍ମରଣ କରି ମୁଁ ପାଗଳ ହୋଇଯିବି । ମୁଁ ନିଜକୁ ଆଦୌ କ୍ଷମା କରିପାରୁ ନାହିଁ । ମା, ମହାମତି କର୍ଣ୍ଣଙ୍କ ପାଦବନ୍ଦନା କରିବା ପରିବର୍ତ୍ତେ ଆମେ ବାରମ୍ବାର ଅତି ନିଷ୍ଠୁର ବାକ୍ୟ ପ୍ରୟୋଗ କରି ତାଙ୍କ ହୃଦୟକୁ ଅତ୍ୟନ୍ତ ଅନ୍ୟାୟ ଭାବରେ ବ୍ୟଥାତୁର କରି ପକାଇଛୁ । କ'ଣ କହିବି, ଅତୀତର ସମସ୍ତ କଥା ମୋ ପ୍ରାଣକୁ ସନ୍ତାପିତ କରିବାରେ ଲାଗିଛି । ମୁଁ ନିଜକୁ ସ୍ଥିର ରଖିବା ଆଉ ସମ୍ଭବ ହେଉନାହିଁ । ମା, ମହା ଧନୁର୍ଦ୍ଧର, ଅସୀମ ପରାକ୍ରମଶାଳୀ ଦେବ କୁମାର କର୍ଣ୍ଣଙ୍କୁ ଭୀମ ଅତି ତାଚ୍ଛଲ୍ୟ ଭରା କଣ୍ଠରେ କହିଥିଲା,- ''ହେ ସୂତପୁତ୍ର । ଅଶ୍ୱ ଚାଳନା କ୍ଷତ୍ରିୟକୁ ଶୋଭାପାଏ । ତୁମେ ଅଯଥାରେ ନିଜର କୌଳିକ ବୃତ୍ତି ଘାସ କାଟିବା ଛାଡି ଅଶ୍ୱ ଚାଳନାର ସ୍ୱପ୍ନ ଦେଖନାହିଁ ।

ପୁନଶ୍ଚ ସ୍ୱୟଂବର ସଭାରେ କୃଷ୍ଣା ଅତି କଠୋର ଭାଷାରେ ଘୋଷଣା କଲେ,- ''କର୍ଣ୍ଣ ଲକ୍ଷ୍ୟ ଭେଦରେ କୃତକାର୍ଯ୍ୟ ହେଲେ ମଧ୍ୟ ସେ ରାଜକୁମାର

ନୁହନ୍ତି, ଏକ ସୂତପୁତ୍ର ମାତ୍ର । ତେଣୁ ମୁଁ କଦାପି ସୂତପୁତ୍ର ଗଳାରେ ବରଣମାଳା ପିନ୍ଧାଇବି ନାହିଁ ।'' ମୁଁ ଲକ୍ଷ୍ୟ କରିଛି ମା, କର୍ଣ୍ଣ ଅତ୍ୟନ୍ତ ବିମର୍ଷ, ଅତ୍ୟନ୍ତ ଅସହାୟ ଓ ଏକାନ୍ତ ନିରୁପାୟ ହୋଇ ଶୂନ୍ୟକୁ ଚାହିଁ ରହିଥିଲେ । ବିନା ଦୋଷରେ ତାଙ୍କୁ ଆମେ ବାରମ୍ବାର ଅପମାନିତ କରିଛୁ । ଏ ସବୁ ସମ୍ଭବ ହୋଇ ପାରିଲା କେବଳ ତୁମ ବଜ୍ର-କଠୋର ହୃଦୟ ଯୋଗୁଁ ।

କର୍ଣ୍ଣଙ୍କ ସହିତ ତୁମର ଏକାନ୍ତ ଆଲୋଚନା ସଂପର୍କରେ ଆମେ ସଂପୂର୍ଣ୍ଣ ଅଜ୍ଞାତ ଥିଲୁ । ବିଶେଷ କରି କପଟୀ ଶ୍ରୀକୃଷ୍ଣ ଆମ୍ଭମାନଙ୍କୁ ଜାଣି ଶୁଣି ଅନ୍ଧାରରେ ରଖିଥିଲେ । ତାଙ୍କ ଲାଗି ଓ ଆପଣଙ୍କ ଲାଗି ମଧ୍ୟ ଆମେ ଗୁରୁତର ପାପ-ଭାର ମୁଣ୍ଡରେ ବହନ କରି ବଞ୍ଚି ରହିବୁ । ଦୁନିଆ ଆମକୁ ଭ୍ରାତୃହନ୍ତା, ସ୍ୱାର୍ଥପର ଆଦି ଶବ୍ଦରେ ଧିକ୍କାର କରିବ । ଆଜି ଆମେ ବିଜୟ ଆନନ୍ଦ ଅନୁଭବ କରିବା ଅବସରରେ ପରାଜୟର ଗ୍ଲାନି ଅନୁଭବ କରିବାକୁ ବାଧ୍ୟ ହୋଇ ପଡିଲୁଣି ।''

ଏହି ସମୟରେ ଶ୍ରୀକୃଷ୍ଣ ଦାର୍ଶନିକ ଯୁକ୍ତି ଉପସ୍ଥାପନ ପୂର୍ବକ କହିଲେ,- ଭବିତବ୍ୟ ହିଁ ଅବଶ୍ୟ ଘଟିବ । ନିୟତିର ଗତିରୋଧ କରିବାର ଶକ୍ତି ମନୁଷ୍ୟତ ଛାର, ଦେବତା ମାନଙ୍କ ପକ୍ଷରେ ମଧ୍ୟ ଅସମ୍ଭବ । ଅତୀତର ଅନୁଶୋଚନା ଅନଳରେ ଉଜ୍ଜ୍ୱଳ ଭବିଷ୍ୟତକୁ ନଷ୍ଟ କରି ପକାଇବା ବିଜ୍ଞତା ନୁହେଁ । ଏ ଧର୍ମ ଯୁଦ୍ଧରେ ଅନ୍ୟାୟ ଉପରେ ନ୍ୟାୟର ବିଜୟ ହୋଇଛି । ଅତୀତକୁ ଭୁଲିଯାଇ ସମସ୍ତେ ବର୍ତ୍ତମାନ ପାଇଁ ପ୍ରସ୍ତୁତ ହୁଅ ।'' କୃଷ୍ଣଙ୍କ ସମ୍ମୁଖରେ କେହି କିଛି କହିବାକୁ ସାହସ କରିନଥିଲେ । ମାତ୍ର ଯୁଧିଷ୍ଠିର ସ୍ଥିର ନହୋଇ କହିଲା,- ହେ କୃଷ୍ଣ ! ତୁମେ ଓ ମାଆ ସମାନ ଭାବରେ ଦୋଷୀ ହୋଇ ଆମ ଭାଇମାନଙ୍କ ପ୍ରତି ଘୋର ଅବିଚାର କରିଛ । ବାସ୍ତବ ସତ୍ୟକୁ ଗୋପନ ରଖି ତୁମେ ଦୁହେଁ ଆମକୁ ଜାଣି ଶୁଣି ପାପର ଆବର୍ତ୍ତ ଆଡ଼କୁ ଠେଲି ଦେଇଛ । ଏଥିପାଇଁ ମୁଁ ଓ ଭାଇମାନେ ଜୀବନ ସାରା ଅନୁତାପାନଳରେ ତିଳ ତିଳ ହୋଇ ଦଗ୍ଧ ହେବୁ । ତୁମେ ଆମ ଜୀବନର ସୁଖଶାନ୍ତି ହରଣ କରି ନେଇଛ । ଧାରଣା ଥିଲା ସ୍ତ୍ରୀଲୋକମାନେ କୌଣସି କଥା ଗୋପନ ରଖି ପାରନ୍ତି ନାହିଁ । ମାତ୍ର ଆଜି ତାହା ଭୁଲ ପ୍ରମାଣିତ ହୋଇଗଲା । ସତ୍ୟକୁ ଦୀର୍ଘକାଳ ଗୋପନ ରଖିବାର ପରିଣତି ଆମ୍ଭମାନଙ୍କ ପାଇଁ ବିଷମୟ ହୋଇ ଉଠିଲା । ଯଥା ସମୟରେ ଏହି ସତ୍ୟ ଉଦ୍‌ଘାଟିତ ହୋଇଥିଲେ ଭାରତର ଇତିହାସ ବଦଳି ଯାଇଥାନ୍ତା । ତେଣୁ ମୁଁ ଅଭିଶାପ ଦେଉଛି ଆଜିଠାରୁ ନାରୀମାନେ କୌଣସି କଥା ଗୋପନୀୟ ରଖି ପାରିବେ ନାହିଁ ।''

ମୁଁ କିଛି କହିବା ଅବସ୍ଥାରେ ନଥାଏ । ସମସ୍ତେ ମୋତେ ପଦେ ପଦେ ଭର୍ତ୍ସନା କରିବାରେ ଲାଗିଥାନ୍ତି । କୂପ-ମଣ୍ଡୁକ ପରି ମୁଁ ସମସ୍ତଙ୍କ ଆଘାତ ନୀରବରେ ସହ୍ୟ କରିବାକୁ ବାଧ୍ୟ ହେଉଥାଏ । ମୋର ଅସହାୟ ଅବସ୍ଥା ପିଲାମାନଙ୍କ ମନରେ ଭାବାନ୍ତର ସୃଷ୍ଟି କଲା । ବହି ଯାଉଥିବା ଧାର ଧାର ଲୁହ ଦେଖି ସେମାନେ ହଠାତ୍ ନୀରବ ରହିଗଲେ । ବୋଧହୁଏ ନିଜ ମାଆକୁ ଆଉ ଅଧିକ ଧିକ୍କାର କରିବାକୁ କେହି ଉଚିତ ମନେ କଲେ ନାହିଁ ।

ମୋ ପାଖରୁ ସମସ୍ତେ ଅଳ୍ପ ଦୂରକୁ ଯାଇ ଶ୍ରୀକୃଷ୍ଣଙ୍କ ସହିତ କିଛି ଆଲୋଚନା କରୁଥିବାର ଦେଖିଲି । ଆଲୋଚନା ଶେଷ କରି ପିଲାମାନେ ମୋ ପାଖକୁ ଆସି କହିଲେ,- ''ମା, ପଛକଥା ସବୁ ପାସୋରି ଦେବାରେ ହିଁ ମଙ୍ଗଳ । ଅତ୍ୟନ୍ତ ବ୍ୟଥାତୁର ହୋଇ ଆମେ ମନ ଇଚ୍ଛା ବହୁ କଟୁକଥା କହି ତୁମକୁ କଷ୍ଟ ଦେଇଛୁ । ସଂପୂର୍ଣ୍ଣ ନୀରବ ରହିଥିଲେ ମଧ ତୁମ ଅନ୍ତରର ବେଦନା ଆମକୁ ଅଛପା ରହିନାହିଁ । ଚିନ୍ତା ତ୍ୟାଗ କରି ଆସ । ବର୍ତ୍ତମାନ ଠାରୁ ଆମକୁ ଅନେକ କିଛି କରିବାକୁ ହେବ । ବିଳମ୍ବର ପ୍ରୟୋଜନ ନାହିଁ । ଏବେ ଆମେ ରାଜଧାନୀକୁ ଯାତ୍ରା କରିବା । ସେଠାରେ ମୃତବ୍ୟକ୍ତିମାନଙ୍କ ପାଇଁ ଅନେକ ବିଧି-ବିଧାନ ସଂପନ୍ନ କରାଯିବ ।''

ରାଜଧାନୀରେ ପହଞ୍ଚିବା ପରେ ପ୍ରଥମେ କୃଷ୍ଣ ଗାନ୍ଧାରୀଙ୍କୁ ସାକ୍ଷାତ କରିବାକୁ ଗଲା । ମୁଁ ତା ସାଥୀରେ ଯାଇଥାଏ । ଗାନ୍ଧାରୀ କୃଷ୍ଣାଙ୍କୁ ଆଲିଙ୍ଗନ କରି ଅତି ବ୍ୟାକୁଳ ଭାବରେ ରୋଦନ କରିବାରେ ଲାଗିଲେ । ସେ ବ୍ୟାକୁଳତାର ଅନ୍ତ ନଥାଏ । ମଣିଷ କଥା କ'ଣ କହିବି, ଗାନ୍ଧାରୀଙ୍କ ମର୍ମଭେଦୀ ବିଳାପରେ ଗଛଲତା ମଧ୍ୟ ବ୍ୟଥିତ ହୋଇ ଉଠୁଥିବା ପରି ମନେ ହେଲା । ମୁଁ କାଠ-ପିତୁଳା ପରି ସେଇ କରୁଣ ଦୃଶ୍ୟ ଦେଖୁଥାଏ । ଦୁହେଁ ଦୁହିଁଙ୍କ ହୃଦୟର ଅସରନ୍ତି ଦୁଃଖକୁ ଅଶ୍ରୁ ଆକାରରେ ବୁହାଇ ଚାଲିଥାନ୍ତି । ଶତପୁତ୍ରର ଜନନୀ ଗାନ୍ଧାରୀଙ୍କ କୋଳ ଆଜି ସନ୍ତାନ-ଶୂନ୍ୟ । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଯାଉଥାଏ । ଶହେ ପୁଅଙ୍କୁ ହରାଇଥିବା ମାଆକୁ କୌଣସି ପ୍ରକାରେ ବୋଧ କରାଯିବା ସମ୍ଭବ ନୁହେଁ । ଠିକ୍ ପାଞ୍ଚାଳୀର ଅବସ୍ଥା ମଧ୍ୟ ଅନୁରୂପ ଦୟନୀୟ । ନିଷ୍ଠୁର ହୃଦୟ ଅଶ୍ୱତ୍ଥାମା ଅତ୍ୟନ୍ତ ଅତର୍କିତ ଭାବରେ ଚୋରପରି ଆସି ଦ୍ରୌପଦୀର ନିଦ୍ରିତ ପଞ୍ଚ-ପୁତ୍ରଙ୍କୁ ହତ୍ୟା କରିବା ଫଳରେ ଦ୍ରୌପଦୀ ମଧ୍ୟ ଗାନ୍ଧାରୀଙ୍କ ପରି ସନ୍ତାନ ଶୂନ୍ୟ ହୋଇ ପୁତ୍ର-

ଶୋକ ଲାଗି ଅକଥନୀୟ ଯନ୍ତ୍ରଣାରେ ଛଟପଟ ହେଉଥିଲା । ଆଜି ପାଞ୍ଚାଳୀ ଓ ଗାନ୍ଧାରୀ ସମଦଶାପନ୍ନ । କେହି କାହାକୁ ଆଶ୍ୱାସନା ଦେବାର ଅବକାଶ ନାହିଁ । ଦୁଇଟି ଦୁଃଖିନୀ ଜନନୀଙ୍କର ଶୋଚନୀୟ ଅବସ୍ଥା ସନ୍ଦର୍ଶନରେ ମୁଁ ଅତ୍ୟନ୍ତ ବ୍ୟଥିତ ହୋଇ ଉଠିଲି । ତେଣୁ ମୁଁ ଅନ୍ୟତ୍ର ଚାଲି ଯାଇ ଉଦ୍‌ଗତ ଅଶ୍ରୁକୁ ଲୁଚାଇବାକୁ ଚେଷ୍ଟା କଲି । ସେମାନଙ୍କ ଆଗରେ ବ୍ୟାକୁଳତା ପ୍ରକାଶ କରି ତାଙ୍କ ଦୁଃଖକୁ ବହୁଗୁଣିତ କରିବାକୁ ମୁଁ ଇଚ୍ଛା କରୁ ନଥିଲି ।

ଅଳ୍ପ ସମୟ ବ୍ୟବଧାନ ପରେ ବ୍ୟାସଦେବ ଆସି କହିଲେ,- ''ଯୁଦ୍ଧରେ ନିହତ ସମସ୍ତ ବ୍ୟକ୍ତି ବୀର-ଗତି ଲାଭ କରି ସ୍ୱର୍ଗରେ ଅବସ୍ଥାନ କଲେଣି । ଏଣୁ ବିଧାନ ଅନୁସାରେ ଆନୁସଙ୍ଗିକ କାର୍ଯ୍ୟ ସମାପନ ପାଇଁ ତତ୍ପର ହେବା ଉଚିତ ।''

ଦଶାହ, ପିଣ୍ଡଦାନ ଆଦି ଯଥାବିଧି ସମାହିତ ହେଲା । ଦିନ ପରେ ଦିନ ଗଡି ଚାଲିଥାଏ । ସମୟ ଅତୀତକୁ ଭୁଲାଇ ଦେଲା । ଆଗକୁ କ'ଣ କରିବାକୁ ହେବ, ସେ ସଂପର୍କରେ ଆମେ ଅଧିକ ସଚେତନ ହୋଇ ପଡ଼ିଲୁ । ଏବେ ଯୁଧିଷ୍ଠିର ହେବ ରାଜା ଓ ମୁଁ ରାଜମାତାର ଗୌରବର ଅଧିକାରିଣୀ ହୋଇ ପରମ-ପରିତୋଷ ଲାଭ କରିବି । ଅତୀତର ଯାବତୀୟ ଦୁଃଖ, କଷ୍ଟ ଓ ନିର୍ଯ୍ୟାତନା ଭୁଲି ମୁଁ ଏକ ନୂତନ ରାଜକୀୟ ଜୀବନର ଅୟମାରମ୍ଭ କରିବି,- ସମସ୍ତଙ୍କର ଏପରି ଧାରଣା ହେବା ସ୍ୱାଭାବିକ । ମାତ୍ର ବିଗତ ଭୟାବହ ଯୁଦ୍ଧର ବିଭୀଷିକା,ଅଗଣିତ ମୂଲ୍ୟବାନ ଜୀବନର ଅବସାନ, ଲକ୍ଷ ଲକ୍ଷ ସଦ୍ୟ ବିଧବା ମାନଙ୍କର ବୁକୁଫଟା ଆର୍ତ୍ତ ଚିତ୍କାର, ସର୍ବୋପରି ଦ୍ରୌପଦୀର ପଞ୍ଚପୁତ୍ରଙ୍କ ଶୋଚନୀୟ ମୃତ୍ୟୁ ସାଙ୍ଗକୁ ସୁଭଦ୍ରାର ଗଣ୍ଠିଧନ ଅଭିମନ୍ୟୁ, ହିଡ଼ିମ୍ବା ତନୟ ଘଟୋତ୍କଚ ଏବଂ ବେଲାବାଳୀର ସୁଯୋଗ୍ୟ ସନ୍ତାନ ବେଲାଳସେନର ଦୁଃଖ ଦାୟକ ମୃତ୍ୟୁ ଘଟଣା ମୋ ମନରେ ଗଭୀର କ୍ଷତ ସୃଷ୍ଟି କରିଥାଏ । ସେ କ୍ଷତକୁ ଆରୋଗ୍ୟ କରିବାର କୌଣସି ଔଷଧ ବା ପ୍ରଲେପ ନାହିଁ ଜାଣି ମୁଁ ଜୀବନ-ପ୍ରତି ଅତ୍ୟନ୍ତ ବୀତସ୍ପୃହ ହୋଇ ପଡ଼ିଥିଲି । ଭୋଗ ଅପେକ୍ଷା ତ୍ୟାଗକୁ ହିଁ ମୁଁ ଅଗ୍ରାଧିକାର ଦେଇଥିଲି ।

ଯୁଧିଷ୍ଠିର ରାଜା ହେଲା । ମୁଁ ହେଲି ରାଜମାତା । ଦୁଃଖ ସାଗରରେ ଉବୁଟୁବୁ ହେଉଥିବା ଦେଢଶୁର ଓ ଶାଶୁ-ପ୍ରତିମ ଗାନ୍ଧାରୀଙ୍କର ସେବା ଶୁଶ୍ରୂଷାରେ ମୁଁ ମନ ପ୍ରାଣ ଢାଳି ଦେଲି । ମୋର ଦୁଇ ବୋହୂ ମଧ୍ୟ ଅକୁଣ୍ଠିତ ଚିତ୍ତରେ ସେ ଦୁହିଁଙ୍କର ସେବା-ନିଯୁକ୍ତ ରହିଥାନ୍ତି ଓ ସାମାନ୍ୟତମ ଅସୁବିଧା ନହେବା ପାଇଁ ସର୍ବଦା ସତର୍କ ଦୃଷ୍ଟି ରଖିଥାନ୍ତି । ଦୁଃଖର କଥା ଯେତେ ଚେଷ୍ଟା କଲେ ମଧ୍ୟ ଦେଢଶୁର ବା ଦେବୀ ଗାନ୍ଧାରୀ କେହି ଆମ ସେବାରେ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ମୋର ଓ ମୋ ପିଲାମାନଙ୍କର ଅକୃତ୍ରିମ ଭକ୍ତି,ଶ୍ରଦ୍ଧା, ଆଦର ଆଦି ଅନ୍ଧ ରାଜାଙ୍କ ହୃଦୟରେ ସାମାନ୍ୟତମ ରେଖାପାତ କରିନଥିଲା । ଦେଢଶୁରଙ୍କ ନୀଚତା ଓ ହିଂସା ଜର୍ଜରିତ ହୃଦୟକୁ ସନ୍ତୁଷ୍ଟ କରିବାରେ ଆମେ ଅସଫଳ ହେଲୁ । ସମସ୍ତ ଚେଷ୍ଟା ବିଫଳ ହେବା ଦେଖି ସୁଲଭ-କୋପ ଭୀମ ବେଳେ ବେଳେ ବିରକ୍ତି-ପୂର୍ଣ୍ଣ କଟୁ-ମନ୍ତବ୍ୟ ଦେଉଥିବା ଘଟଣା ମୋତେ ଅବିଦିତ ନଥିଲା । ଏଥିରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଅତ୍ୟନ୍ତ କଷ୍ଟ ଅନୁଭବ କରୁଥିଲେ, ଏକଥା ମଧ୍ୟ ମୁଁ ଜାଣେ । ସେଥିପାଇଁ ଭୀମକୁ ବାରମ୍ବାର ସତର୍କ କରାଇ ଦେବା ସତ୍ତ୍ୱେ ସେ କାହାରି କଥାରେ କର୍ଣ୍ଣପାତ କରୁନଥାଏ । ରାଜଭବନରୁ ଆମେ ଯେଉଁ ସୁଖଶାନ୍ତି ଓ ଆନନ୍ଦ ଉପଭୋଗର ସ୍ୱପ୍ନ ଦେଖୁଥିଲୁ ତାହା ଆଦୌ ସମ୍ଭବ ହୋଇ ପାରିନଥିଲା ।

ଏହିପରି ଅଶାନ୍ତି ମଧ୍ୟରେ କିଛିକାଳ କଟିଗଲା । ଦିନେ ଜାଣିବାକୁ ପାଇଲି- ଦେଢଶୁର, ଗାନ୍ଧାରୀ ଓ ବିଦୂର ଏକତ୍ର ରାଜପୁରୀ ତ୍ୟାଗକରି ତପସ୍ୟା ନିମନ୍ତେ ବନଗମନ କରିବାର ସିଦ୍ଧାନ୍ତ ଗ୍ରହଣ କରିଛନ୍ତି । ମୁଁ ମଧ୍ୟ ସେମାନଙ୍କ ସହିତ ଯିବା ପାଇଁ ସ୍ଥିର କରିନେଲି । ମୋ ନିଷ୍ପତ୍ତି ସଂପର୍କରେ ଅବଗତ ହେବାମାତ୍ରେ ପିଲାମାନେ ଅତ୍ୟନ୍ତ ବିଚଳିତ ହୋଇ ଉଠିଲେ । ସମସ୍ତେ ସମ-ସ୍ୱରରେ ଏପ୍ରକାର ନିଷ୍ପତ୍ତିର ଦୃଢ ବିରୋଧ କରିବା ସହିତ ଏ ବୟସରେ କଷ୍ଟ ଦାୟକ ବନ-ବାସ ସମୀଚୀନ ନୁହେଁ ବୋଲି କହିଥିଲେ । ପାଞ୍ଚପୁଅ-ଦୁଇ ବୋହୂଙ୍କ ସ୍ନେହ,ମମତା ଓ ଆଦରକୁ ଉପେକ୍ଷା ନକଲେ ମୁଁ ମୋ ସଂକଳ୍ପରେ ସଫଳ-କାମ ହୋଇ ପାରିବି ନାହିଁ ଜାଣି, ମୋ ନିଷ୍ପତ୍ତି ଆଦୌ ପରିବର୍ତ୍ତନ କରିବି ନାହିଁ ବୋଲି ଦୃଢ କଣ୍ଠରେ ଜଣାଇ ଦେଲି । ପିଲାମାନେ ଅଧିକ କିଛି କହିବାକୁ ଉଚିତ ମନେ କରି ନଥିଲେ ।

ଆମେ ସମସ୍ତେ ରାଜଭବନରୁ ଅରଣ୍ୟ ଅଭିମୁଖେ ଯାତ୍ରା କରି କିଛିଦିନ ପରେ ଗଙ୍ଗାନଦୀ କୂଳରେ ଏକ ପର୍ଣ୍ଣକୁଟୀର ନିର୍ମାଣକରି ଅବସ୍ଥାନ କଲୁ । ବହୁ ସାଧୁ, ସନ୍ନ୍ୟାସୀ, ମୁନୀ ଓ ଋଷି ଆମକୁ ସାକ୍ଷାତ କରିବାକୁ ଆସିଲେ । ଆମକୁ ପର୍ଣ୍ଣକୁଟୀରରେ ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ମହାରାଜ କହିଲେ,- ''ଏଥିରେ ବିସ୍ମିତ ହେବାର କିଛି ନାହିଁ । ଭୋଗପରେ ତ୍ୟାଗ ଓ ରାଜତ୍ୱ ଶେଷରେ ବାନପ୍ରସ୍ଥହିଁ ଆମର ପରମ୍ପରା । ଆମ୍ଭମାନଙ୍କର ସୁଖଭୋଗର ଅବଧି ସମାପ୍ତ ହୋଇ ଯାଇଛି । ଏଣିକି କୁଟୀର ନିବାସ, କୁଶ-ଶଯ୍ୟା, ଯଜ୍ଞ ଓ ତପଶ୍ଚରଣ ଆଦି ଦୈନନ୍ଦିନ କାର୍ଯ୍ୟରୂପେ ବିବେଚିତ ହେବ । ଏହାହିଁ ଭାରତୀୟ ସଂସ୍କୃତିର ମହାନତା । ସମବେତ ଋଷିଗଣ ମହାରାଜାଙ୍କୁ ଆଶୀର୍ବାଦ ପ୍ରଦାନ କରି ବିଦାୟ ଗ୍ରହଣ କରିଥିଲେ ।

ମୁଁ ପ୍ରତ୍ୟହ ଗାନ୍ଧାରୀଙ୍କ ପରିଚର୍ଯ୍ୟାରେ ମନୋନିବେଶ କରିଥାଏ । ତାଙ୍କ ସ୍ନାନ, ଭୋଜନ କଥା ବୁଝିବା ପରେ ଶୟନ ପାଇଁ କୁଶଶଯ୍ୟା ରଚନା କରି ନିଦ୍ରା ଆସିବା ପର୍ଯ୍ୟନ୍ତ ପାଦସେବା କରୁଥାଏ ।

କିଛିଦିନ ପରେ ଆମେ ମହର୍ଷି ଦ୍ୱୈପାୟନଙ୍କ ଆଶ୍ରମକୁ ଯାଇ ସେଠାରେ ଦୀକ୍ଷା ଗ୍ରହଣ କଲୁ । ସେଠାରେ ବହୁ ମୁନୀ ଋଷିଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରି ଜୀବନକୁ ଧନ୍ୟ ମନେ କରିଥିଲୁ ।

ଦିନପରେ ଦିନ ଗଡି ଚାଲିଥାଏ । ଦିନେ ହଠାତ୍ ଯୁଧିଷ୍ଠିର ଅନ୍ୟ ଭାଇମାନଙ୍କ ସହିତ ଆସି ଆମ ଆଶ୍ରମରେ ଉପସ୍ଥିତ ହୋଇଗଲା । ସେମାନଙ୍କୁ ଦେଖିବା ମାତ୍ରେ ଅତୀତର ଯାବତୀୟ ସ୍ମୃତି ମୋ ମାନସ ପଟରେ ଉଦ୍‌ଭାସିତ ହୋଇ ଉଠିଲା । ଚାହୁଁ ଚାହୁଁ ମୋର ଦୀର୍ଘଦିନର ସାଧନା, ସଂଯମ, ମାନସିକ ଦୃଢତା ଆଦି ସନ୍ନ୍ୟାସିନୀର ସକଳ ଆଚରଣ ନିମିଷକ ମଧ୍ୟରେ ଲୋପ ପାଇଯିବାରେ ଲାଗିଲା । ମୁଁ ପୁଣି ଅତୀତର ହସ୍ତିନା-ନିବାସ ଅନୁଭୂତିକୁ ସ୍ମରଣ କରି ସ୍ୱପ୍ନ-ବିଭୋର ହୋଇ ଉଠିଲି । ହଠାତ୍ ଶତଶୃଙ୍ଗ ପର୍ବତର ଅରଣ୍ୟବାସ, ମହାରାଜାଙ୍କ ସହିତ ବନ-ବିହାର ଓ ପିଲାମାନଙ୍କ ଜନ୍ମ ବୃତ୍ତାନ୍ତ ଆଦିର ଅନୁସ୍ମରଣରେ ମୋର ତନୁ ମନ ଉଲ୍ଲସିତ ହୋଇ ଉଠିଲା । ପରମୁହୂର୍ତ୍ତରେ ଚିନ୍ତା କରି ଦେଖିଲି ଏପରି ମୋହାଚ୍ଛନ୍ନ ହେବା ଜଣେ ସନ୍ନ୍ୟାସିନୀକୁ ଶୋଭାପାଏ ନାହିଁ । ତେଣୁ ଅତିକଷ୍ଟରେ ନିଜକୁ ଆୟତ୍ତାଧୀନ କରିବାକୁ ଚେଷ୍ଟା କରିଥିଲି ।

ସେହିଦିନ ମୁଁ ପ୍ରଥମଥର ପାଇଁ ଅନୁଭବକୁ ଆଣିଲି- ସାଂସାରିକ ବନ୍ଧନ କେଡ଼େ ମହନୀୟ, ପ୍ରୀତିପ୍ରଦ ଓ ଆନନ୍ଦ ଦାୟକ ସତେ ! ତା' ତୁଳନାରେ ସନ୍ନ୍ୟାସିନୀର ଜୀବନ ଅତ୍ୟନ୍ତ ଶୁଷ୍କ, କଠୋର ଓ ପ୍ରାଣହୀନ ପରି ପ୍ରତୀୟମାନ ହୋଇଥିଲା । ବହୁ କଷ୍ଟରେ ମୁଁ ପୁଣି ପ୍ରକୃତିସ୍ଥ ହୋଇଥିଲି । କିଛି ସମୟ ପିଲାମାନଙ୍କ ସହିତ ବାକ୍ୟାଳାପ କରି ମୁଁ ପ୍ରଭୂତ ଆତ୍ମ-ସନ୍ତୋଷ ଲାଭ କଲି । କେହି ମୋ ପାଖଛାଡି ଫେରିଯିବାକୁ ଇଚ୍ଛା କରୁ ନଥିଲେ । ଆମ ଭିତରେ ଦୀର୍ଘ ସମୟ ଭାବ-ବିନିମୟ, ଆଳାପ ଆଲୋଚନା ଓ ପ୍ରୀତିପ୍ରଦ ସମ୍ଭାଷଣ ଅବ୍ୟାହତ ରହିଥିଲା । କର୍ତ୍ତବ୍ୟ ଅନୁରୋଧରେ ପିଲାମାନେ ହସ୍ତିନା ଫେରିଯିବାପାଇଁ ଉଦ୍ୟତ ହେଲେ । ସତ କହୁଛି-ତାଙ୍କୁ ପାଖରୁ ଅନ୍ତର କରିବାକୁ ମୋର ଆଦୌ ଇଚ୍ଛା ହେଉ ନଥାଏ । ମୁଁ ଜଣ ଜଣକୁ କୋଳାଗ୍ରତ କରି ଆଉଁଶିବାରେ ଲାଗିଲି । ଅଧିକ ବାସନା-ପ୍ରବଣ ହେବା ଅନୁଚିତ ଭାବି ପିଲାମାନଙ୍କୁ ବିଦାୟ ଦେଲି । ସେତେବେଳେ ଦେଖିଛି ପ୍ରତ୍ୟେକଙ୍କର ଚକ୍ଷୁ ଅଶ୍ରୁ-ସଜଳହୋଇ ଉଠିଥିଲା ।

ଆମେ ବ୍ୟାସଙ୍କ ଆଶ୍ରମ ତ୍ୟାଗ କରି ଅନ୍ୟତ୍ର ଅବସ୍ଥାନ କରୁଥାଉ । ହଠାତ୍ ବନାଗ୍ନି ପ୍ରଜ୍ଜ୍ୱଳିତ ହୋଇ ତୀବ୍ର ଗତିରେ ଆମ୍ଭମାନଙ୍କ ଆଡକୁ ମାଡି ଆସିଲା । ଚାହୁଁ ଚାହୁଁ ଏହି ପ୍ରଳୟଙ୍କରୀ ଦାବାନଳ ଚତୁର୍ଦ୍ଦିଗକୁ ଏପରି ପରିବ୍ୟାପ୍ତ ହୋଇ ଉଠିଲା ଯେ ଆମେ ଆତ୍ମରକ୍ଷା କରିବାକୁ ସମୟ ମଧ୍ୟ ପାଇ ପାରିନଥିଲୁ । ଭୟ-କାତର ହୃଦୟରେ କେବଳ ମୃତ୍ୟୁକୁ ଅପେକ୍ଷା କରିବା ଛଡା ଆମର ଅନ୍ୟ ଉପାୟ ନଥିଲା । ଅଗ୍ନିଦେବଙ୍କ ଲେଲିହାନ ଶିଖା ଆମ ସମସ୍ତଙ୍କୁ ନିମିଷକ ମଧ୍ୟରେ ଭସ୍ମ କରି ଦେଇଥିଲା । ଏଇଠି ମୋ ଜୀବନର ସୁଖ-ଦୁଃଖ, ଆନନ୍ଦ-ବିଷାଦ ମିଶା ଦୀର୍ଘ ଅଭିନୟର ଯବନିକା ପତନ ହେଲା ।

ଦେଖନ୍ତୁ, ପ୍ରଭାତ ହେବାକୁ ଆଉ ଅଳ୍ପ ସମୟ ମାତ୍ର ଅଛି । ସୂର୍ଯ୍ୟୋଦୟ ପୂର୍ବରୁ ମୋତେ ଆପଣମାନଙ୍କ ସାନ୍ନିଧ୍ୟ ତ୍ୟାଗ କରିବାକୁ ହେବ । ମୁଁ ଜୀବନର ସମସ୍ତ କାହାଣୀ ଆପଣମାନଙ୍କ ଆଗରେ ନିଃସଙ୍କୋଚ ପ୍ରକାଶ କରିଛି । ଏପରି କି ଭାବାବେଗରେ ଗୋଟିଏ କଥାକୁ ବାରମ୍ବାର କହି ପକାଇ ଆପଣମାନଙ୍କ

ମନରେ ହୁଏତ ବିରକ୍ତି ସୃଷ୍ଟି କରିଥିବି । ସେଥିପାଇଁ ମୋତେ କ୍ଷମା ଦେବାକୁ ଅନୁରୋଧ । ମାତ୍ର ଏତେ ଦୀର୍ଘ ସମୟ ଆପଣମାନେ ନିବିଷ୍ଟ ଚିତ୍ତରେ ମୋ ଜୀବନୀକୁ ମନ-ପ୍ରାଣ ଦେଇ ଶୁଣୁଥିବା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଛି ।

ମୁଁ କୁମାରୀ ଅବସ୍ଥାରେ ସନ୍ତାନଟିଏ ଜନ୍ମଦେଇ ତାକୁ ହତ୍ୟା କରି ଦେଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱାମୀଙ୍କ ବର୍ତ୍ତମାନରେ ବିଭିନ୍ନ ପର-ପୁରୁଷଙ୍କ ସହିତ ମିଳିତ ହୋଇ ସନ୍ତାନ-ସମ୍ଭବା ହୋଇ ପାରିଛି । ମୁଁ ସ୍ୱାମୀଙ୍କ ଅନୁମତି ଓ ଅନୁରୋଧ କ୍ରମେ ଅନ୍ୟ ପୁରୁଷଙ୍କୁ ଦେହଦାନ କରିଥିଲେ ମଧ୍ୟ ପାଣ୍ଡବମାନଙ୍କୁ ଜାରଜ ବୋଲି ଶ୍ଳୋକ ରଚନା କରାଯାଇଛି କାହିଁକି ? **''ପାଣ୍ଡବା ଜାରଜାଶ୍ଚ ।'** ଜାରଜ ସନ୍ତାନମାନଙ୍କର ଜନନୀ ଗୁଣବତୀ ବା ମହନୀୟା ହୋଇ ପାରିଲେ- ନାରୀତ୍ୱ ଏବଂ ସତୀତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିବା ମହୀୟସୀ ମହିଳା ମାନଙ୍କୁ କି ବିଶେଷଣ ଦ୍ୱାରା ସମ୍ବୋଧନ କରାଯିବ ? ମୋ ନାମ ସ୍ମରଣ କରି ମାନବ-ସମାଜ ମହାପାପରୁ ମୁକ୍ତିଲାଭ କରିବା କଥା ଲେଖା ଯାଇଛି । ତାହାହିଁ ମୋତେ ସର୍ବଦା ସନ୍ଦେହାଚ୍ଛନ୍ନ କରି ରଖିଛି- ମୃତ୍ୟୁପରେ ମଧ୍ୟ । କେଉଁ ବିଶେଷ କାରଣରୁ ମୋର ପୁଣ୍ୟଭାଗ ଏତେ ଅଧିକ ହୋଇ ଯାଇଛି, ତାହା ଜାଣିବାର ଉପାୟ ଖୋଜି ପାଉନାହିଁ । ଏ ସବୁର ତାତ୍ତ୍ୱିକ ଆଲୋଚନା ଓ ସିଦ୍ଧାନ୍ତ ଗ୍ରହଣ ଆପଣମାନଙ୍କର ଦାୟିତ୍ୱ ।

ମୋ ଜୀବନର ପାପ, ପୁଣ୍ୟ, ଧର୍ମ ଓ ଅଧର୍ମର ସମସ୍ତ ଇତିବୃତ୍ତ ପ୍ରକାଶ କରିବାକୁ ମୁଁ ଆଦୌ ଦ୍ୱିଧା କରିନାହିଁ । ତେଣୁ ମୁଁ ଏକ ପବିତ୍ରାତ୍ମା, ବନ୍ଦନୀୟା ନାରୀ ଚରିତ୍ର କି ନୁହେଁ ସେ କଥା ଆପଣମାନେ ବିଚାର କରିବେ ।

ଆଉ ଅଧିକ ଅପେକ୍ଷା କରିବା ସମ୍ଭବପର ନୁହେଁ ।

ତେଣୁ ଆପଣମାନଙ୍କ ନିକଟରୁ ବିଦାୟ ଗ୍ରହଣ କରୁଛି ।

ବିଦାୟ - ବିଦାୟ ....

ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ ।





ଜନ୍ମ - ୧୯୧୯ ମସିହା
ଚାକିରିକାଳ ୧୯୩୫ ରୁ ୧୯୮୦

ଶ୍ରୀ କାଶୀନାଥ ନାୟକ (ଲେଖକ)

ଲେଖକ ତାଙ୍କ ଦୀର୍ଘ କର୍ମମୟ ଜୀବନର ଅଧିକାଂଶ ସମୟ ଛୋଟ ଛୋଟ ପିଲାମାନଙ୍କ ଗହଣରେ ଅତିବାହିତ କରିଛନ୍ତି ।

୧୯୫୫ ମସିହାରେ ସେ ପାଠ୍ୟ-ପୁସ୍ତକ ରଚନାରେ ବ୍ରତୀ ହେଲେ । ତାଙ୍କ ରଚିତ ବହୁ ପାଠ୍ୟ-ପୁସ୍ତକ ମଧ୍ୟରୁ ୧୪ ଖଣ୍ଡ ବିଭିନ୍ନ ଶ୍ରେଣୀ ପାଇଁ ସରକାରୀ ମଞ୍ଜୁରୀ ଲାଭ କରିଥିଲା ।

ପାଠ୍ୟ ପୁସ୍ତକ ସହିତ ସେ ଅନେକ ଶିଶୁ-ସାହିତ୍ୟ ମଧ୍ୟ ରଚନା କରିଛନ୍ତି । ତନ୍ମଧ୍ୟରୁ ଏ ପର୍ଯ୍ୟନ୍ତ ୧୨ ଖଣ୍ଡ ପୁସ୍ତକ ଆକାରରେ ମୁଦ୍ରିତ ଓ ପ୍ରକାଶିତ ହୋଇଛି ।

୧୯୬୨ ମସିହାରେ ସେ ରାଷ୍ଟ୍ରପତି ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

**'ମହାପ୍ରୟାଣ'** ରଚନା ପରେ ଏହି ପୁସ୍ତକଟି ଲେଖକଙ୍କର ବୟସ୍କ ବ୍ୟକ୍ତିମାନଙ୍କ ପାଇଁ ଦ୍ୱିତୀୟ ମୁଦ୍ରିତ ପୁସ୍ତକ ଅଟେ ।

ବୟସାଧିକ୍ୟ ସତ୍ତ୍ୱେ ସେ ଏବେ ବି ନିୟମିତ ଲେଖାଲେଖିରେ ସମୟ ଅତିବାହିତ କରୁଛନ୍ତି ।

-ପ୍ରକାଶକ-


**ନିମ୍ନ ଠିକଣାରେ ପୁସ୍ତକଟି ପାଇଁ ଯୋଗାଯୋଗ କରନ୍ତୁ**

ଠିକଣା : ସାମନ୍ତରାୟପୁର, ପ୍ଲଟ ନଂ. ୫୨୪

(ବରୋଦାବ୍ୟାଙ୍କ ପାର୍ଶ୍ୱରେ)

ଭୁବନେଶ୍ୱର

ଫୋନ୍ ନଂ ୪୩୩୨୧୪, ୪୬୫୪୬୯